# ଶ୍ରେଷ୍ଠ ଏକାଙ୍କିକା

ଗୋପାଳ ଛୋଟରାୟ



ଚତୁରଙ୍ଗୀ ପ୍ରକାଶନୀ
ଭୁବନେଶ୍ୱର

# ଶ୍ରେଷ୍ଠ ଏକାଙ୍କିକା

ଲେଖକ :
ଗୋପାଳ ଛୋଟରାୟ

ପ୍ରଥମ ପ୍ରକାଶ :
ଅପ୍ରେଲ୍-୧୯୯୧

ପ୍ରକାଶକ :
**ଚତୁରଙ୍ଗ ପ୍ରକାଶନୀ**
ଭୁବନେଶ୍ୱର-୯

ପ୍ରଚ୍ଛଦ ଶିଳ୍ପୀ :
ମନସ୍ ସେନ୍

ମୁଦ୍ରଣ :
**କଳିଙ୍ଗ ମୁଦ୍ରଣୀ**
ନିମଚଉଡ଼ି, କଟକ-୨

**ପରିବେଷକ :**




ସି-୧୭, ବାଣିଜ୍ୟ ଭବନ
ୟୁନିଟ୍-୨
ଭୁବନେଶ୍ୱର-୯

ମୂଲ୍ୟ : ଚାଳିଶି ଟଙ୍କା

# SRESTHA EKANKIKA

Author :
**Gopal Chhotray**

First Edition :
April-1991

Publisher :
**Chaturanga Prakasani**
Bhubaneswar-9

Cover Design :
**Manis Sen**

Printed at :
**Kalinga Mudrani**
Neemchouri, Cuttack-2

Distributer :
**Granthalaya**
C-17, Banijya Bahawan
Unit-2
Bhubaneswar-9

Rupees **Forty only**

# ଉତ୍ସର୍ଗ

ଭେଷଜ ବିଶାରଦ

ଡକ୍ଟର ବିଭୂତି ଭୂଷଣ ତ୍ରିପାଠୀ, ଏମ୍. ଡି.

ସହୃଦୟେଷୁ...

ଗୋପାଳ ଛୋଟରାୟ

# ସୂଚୀପତ୍ର

## ଚରିତ୍ର

| | | |
|---|---|---|
| ଆନନ୍ଦ | : | କଲେଜ ଛାତ୍ର |
| ସୁକାନ୍ତ | : | କଲେଜ ଛାତ୍ର—ଆନନ୍ଦର ବନ୍ଧୁ |
| ସଦାଶିବ | : | ମଧ୍ୟବିତ୍ତ ଗୃହସ୍ଥ—ମଧ୍ୟବୟସ୍କ |
| ଡାକ୍ତର | : | ସଦାଶିବଙ୍କ ସମବୟସ୍କ ବନ୍ଧୁ |
| ରାଧାମୋହନ | : | ଆନନ୍ଦର ପିତା |
| ପାର୍ବତୀ | : | ସଦାଶିବଙ୍କ ସ୍ତ୍ରୀ |
| ନନ୍ଦୁ | | ସଦାଶିବଙ୍କ ଝିଅ—କଲେଜ ଛାତ୍ରୀ |

[ କଲେଜ ଛାତ୍ରାବାସର ଗୋଟିଏ ଜଣକିଆ କୋଠରି ।
କୋଠରିରେ ରହେ ସୁକାନ୍ତ । ସେଦିନ ରବିବାର । ସମସ୍ତ
ପୂର୍ବାହ୍ଣ । ଗଭୀର ଚିନ୍ତାମଗ୍ନ ଅବସ୍ଥାରେ ଚୌକିରେ ବସିଚ ।]

ଆନନ୍ଦ : ( ବାହାରୁ କବାଟରେ ଆଘାତ କରି ) ମୁଁ ଭିତରକୁ ଆସିପାରେ କି ?
···ଭିତରକୁ ଆସିପାରେ ?

ସୁକାନ୍ତ : କିଏ ?

ଆନନ୍ଦ : ମୁଁ ।

ସୁକାନ୍ତ : ଓ, ଆନନ୍ଦ···

ଆନନ୍ଦ : ଭିତରକୁ ପ୍ରବେଶ କରିପାରେ ?

ସୁକାନ୍ତ : ନା ।

( ସଙ୍ଗେ ସଙ୍ଗେ ଦରଜା ଠେଲି ଆନନ୍ଦ ଭିତରକୁ ଆସିଲା ).

ଆନନ୍ଦ : କାହିଁକି 'ନାଁ' ?

ସୁକାନ୍ତ : ଭିତରୁ ଶିକୁଳି ବନ୍ଦ କରିଦେବା ମୋର ଉଚିତ ଥିଲା ।

ଆନନ୍ଦ : ଶିକୁଳି ବନ୍ଦ ନ ଥିବା ଅବସ୍ଥାରେ ଏ ପ୍ରଶ୍ନ ଉଠୁନି ।

ସୁକାନ୍ତ : ତେବେ ଦୟାକରି ତୁ ବାହାରକୁ ଚାଲି—ମୁଁ ଶିକୁଳିଟା ଦେଇଦିଏ ।

ଆନନ୍ଦ : ଆଉ ତୁ ଭିତରେ ଥାଇ କାହାର ଦର୍ଶନ ଲାଭ କରିବୁ ? ସକ୍ରେଟିସ୍ ?
ପ୍ଲେଟୋ ? କେଣ୍ଟ ? ଶଙ୍କରାଚାର୍ଯ୍ୟ ନା ମୋହନମୋହନ ସେନାପତି ?

ସୁକାନ୍ତ : ଦର୍ଶନର କଥା ନୁହେଁ ଆନନ୍ଦ, ମୁଁ ଗୋଟାଏ ପ୍ରବନ୍ଧ ଲେଖିବାର ଉପକ୍ରମ
କରୁଚି ।

ଆନନ୍ଦ : ଆଚ୍ଛା ସୁକାନ୍ତ, ପ୍ରବନ୍ଧ ଲେଖିବା ପାଇଁ ଭଗବାନ୍ ଏକା ତୋତେଇ କ'ଣ
ମଥା ଦେଇଛନ୍ତି ?

ସୁକାନ୍ତ : ଏଥିରେ ମଥାର ଆଦୌ ଦରକାର ନାହିଁ—ଦରକାର ହୃଦୟର ।

ଆନନ୍ଦ : ଶୁଣ ସୁକାନ୍ତ ! ତୁ, ମାନେ ଶ୍ରୀ ସୁକାନ୍ତ କାନୁନ୍‌ଗୋ, ଦର୍ଶନ ଶାସ୍ତ୍ରରେ
ଏମ୍. ଏ. ପଢ଼ୁଚୁ । ତୋତେ ଦେଖି ମୋର ଏଇଆ ମନେହେଉଚି, ଯିଏ
ଦର୍ଶନ ଶାସ୍ତ୍ର ଉଦ୍ଭାବନ କରିଥିଲେ—ସିଏ କଣ ତୋର ପରି ନିର୍ବୋଧ
ଥିଲେ ? ବିଜ୍ଞାନର ଛାତ୍ର ବୋଲି ମୁଁ କଣ ମୋ ହୃଦୟଟାକୁ ଏସିଡ୍ ପକେଇ
ପୋଡ଼ିଦେଇ··· ?

ସୁକାନ୍ତ : ( ଅନୁଯୋଗ ସ୍ୱରରେ ) ଆନନ୍ଦ···

ଆନନ୍ଦ : ମୋଟେ ଦିବ ନାହିଁ ।···ଖାଲି ଦିବ ନାହିଁ ତ ନୁହେଁ, ଏଇଠି ବସି ତୋ ପ୍ରବନ୍ଧ ଲେଖାରେ ଅଂଶ ଗ୍ରହଣ କରିବ, ଯେମିତି ଅଂଶ ଗ୍ରହଣ କରି ଆସିଚି ତୋ' ଦୁଃଖରେ, ସୁଖରେ, ଯୋଗରେ, ଭୋଗରେ, ଖିଆପିଆ, ନାଚ, ଥିଏଟର ପାର୍ଟି, ପଲିଟିକ୍ସ ଇତ୍ୟାଦି ଇତ୍ୟାଦିରେ । (ବସିଲା) ହଁ, ତୋ ପ୍ରବନ୍ଧର ବିଷୟବସ୍ତୁଟା କଣ ଶୁଣେ ?

ସୁକାନ୍ତ : ବିଷୟବସ୍ତୁ ! ଏକାବେଳକେ ନୂଆ ଆଉ ଅଭୁତ ।

[ ଆନନ୍ଦ ବୁଝିପାରିଲା ସୁକାନ୍ତର ଇଏ ଏକ ନୂଆ ଖିଆଲ । ଏଥିରୁ ଆମୋଦ ଉଠାଇବା ପାଇଁ ସେ ନିଜକୁ ପ୍ରସ୍ତୁତ କରିନେଲା । ]

ଆନନ୍ଦ : କଣ କହିଲୁ ? ନୂଆ ଆଉ ଅଭୁତ ?

ସୁକାନ୍ତ : ହଁ ।

ଆନନ୍ଦ : ଯଥା—"ଚେକା ଚକ୍‌କଣ ଖୋସା ଓ ନାଗଫଣିଆ ପିଜୁ" ?

ସୁକାନ୍ତ : Rot । ତୁ ଏଠୁ ଗଲୁ !

ଆନନ୍ଦ : କାହିଁକି ? ଏମିତିକା ପ୍ରବନ୍ଧ ତ ତୁ ବେଳେବେଳେ ଲେଖୁ । ଏଥର ପୁଣି କଣ ଲେଖୁଚୁ ? "ଶାନ୍ତି ଓ ସବ୍‌ଡେପୁଟି" ?

ସୁକାନ୍ତ : କି ଆଶ୍ଚର୍ଯ୍ୟ ?

ଆନନ୍ଦ : ଆଉ ତେବେ କଣ···"ଦଶଟି ପାଚିଲା ନଖ" ?

ସୁକାନ୍ତ : ନା ।

ଆନନ୍ଦ : ତେବେ···"ଦୁଇଟି ଗ୍ରୁମୁଦାନ୍ତ ?"

ସୁକାନ୍ତ : ନା । (ସୁକାନ୍ତ ବିରକ୍ତ ହୋଇଉଠିଚି)

ଆନନ୍ଦ : ତେବେ କଣ ଶୁଣେ ଭଲା—

ସୁକାନ୍ତ : ଶୁଣିଲେ ହୁଏତ ତୁ ବିଶ୍ୱାସ କରିବୁ ନାହିଁ ।

ଆନନ୍ଦ : ଯଦି ବିଶ୍ୱାସକରେ ?

ସୁକାନ୍ତ : ତେବେ କଳ୍ପନା କରି ପାରିବୁ ନାହିଁ । ତୋ'ର ସେ ଶକ୍ତି ନାହିଁ ।

ଆନନ୍ଦ : ହୁଁ···ତୋ' ପରି ଉଦ୍ଭଟ କଳ୍ପନା ଶକ୍ତି ଯେଉଁମାନଙ୍କର, ସେମାନେ ହୁଏତ ଏ ପୃଥିବୀର ଜଞ୍ଜାଳରୁ ଦୂରରେ ରହି ନିରାପଦରେ ଅଛନ୍ତି । ···ହାତ ଯୋଡ଼ୁଚି ଭାଇ ଆଉ ମତେ ଉତ୍କଣ୍ଠାରେ ବୁଡ଼ାଇ ନ ରଖି ପ୍ରବନ୍ଧଟା କଣ କହି ।

ସୁକାନ୍ତ : ନାକ ।

ଆନନ୍ଦ : ନାକ !! ମାନେ—ଏଇ ଦୁଇ ପୁଡ଼ା ବିଶିଷ୍ଟ···

ସୁକାନ୍ତ : ହଁ, ହି ନାକ—ନାସିକା—Nose···

ଆନନ୍ଦ : ଓ ! ନାକ ! ବୁଝିଲି !

ସୁକାନ୍ତ : କଣ ବୁଝିଲୁ ?

ଆନନ୍ଦ : ଏ ଭଳି ପ୍ରବନ୍ଧ ନାଁ ଶୁଣି ଯାହା ବୁଝିବାର କଥା ସେଇଆ ବୁଝିଲି ।

ସୁକାନ୍ତ : ମୁଁ ସେଇଥିପାଇଁ କହୁଥିଲି, ଏଥିରେ ହୃଦସ୍ପର ଦରକାର । ତୋ'ପରି ହୃଦସ୍ପହୀନ ଲୋକ···

ଆନନ୍ଦ : ଟିକିଏ ଶୁଣ ସୁକାନ୍ତ । ନାକ ସହିତ ମଥାର ସମ୍ପର୍କ ରହିପାରେ । କିନ୍ତୁ ନାକ ସହିତ ହୃଦସ୍ପର ଯେ କି ସମ୍ପର୍କ···

ସୁକାନ୍ତ : ଯୁଗ ଯୁଗ ଧରି ସମସ୍ତ ମାନବ ଜାତି ନାକ ପ୍ରତି ଯେଉଁ ଅବହେଳା ଦେଖାଇ ଆସିଛି, ସେ କଥା ତୋ ପରି ହୃଦସ୍ପହୀନ ଲୋକ ବୁଝିବ କେମିତି ?

ଆନନ୍ଦ : (ଟିକିଏ ଚମକିତ ହେଲାଭଳି) ନାକ···ପ୍ରତି···ଅବହେଳା ! ଓହୋ, ବୁଝିଲି, ବୁଝିଲି । ଏହାହିଁ ତେବେ ତୋ ପ୍ରବନ୍ଧର ମୂଳକଥା ?

ସୁକାନ୍ତ : ହଁ ।

ଆନନ୍ଦ : ସତେ ସୁକାନ୍ତ, ମୁଁ—ମୁଁ ଯେମିତି କିଛୁ କଳ୍ପନା କରି ପାରୁନଥିଲି ।

ସୁକାନ୍ତ : ସେଇଥିପାଇଁ କହୁଛି, ବିଦାୟ ନେ ।

ଆନନ୍ଦ : ବିଦାୟ ନେବି ? ନା ଭାଇ, ଏମିତି ଏକ ନୂତନ ପରିକଳ୍ପନାର ସୂଚନା ନପାଇ ମୋର ତ ଯିବାକୁ ଇଚ୍ଛା ହେଉନି ।···ଟିକିଏ ଆଲୋଚନା କର; ହୁଏତ ମୁଁ କିଛି ସାହାଯ୍ୟ କରିପାରେ ।

ସୁକାନ୍ତ : ଆଲୋଚନା ପାଇଁ ବେଳ ନାହିଁ । କାଲି ଭିତରେ ପ୍ରବନ୍ଧଟା ସମ୍ପାଦକଙ୍କ ନିକଟ ନ ପହଞ୍ଚିଲେ ଏ ସଂଖ୍ୟା କାଗଜରେ ଛପା ହୋଇ ପାରିବ ନାହିଁ ।

ଆନନ୍ଦ : ତୁ ବୁଝିପାରୁନୁ । ଆଗେ ବିଶଦ ଭାବରେ ଆଲୋଚନା ହୋଇଗଲେ ଲେଖିବା' ପାଇଁ ଖୁବ୍ କମ୍ ସମୟ ଲାଗିବ ।···କହ, କୋଉଠୁ ଆରମ୍ଭ କରିବୁ ?

ସୁକାନ୍ତ : କବି ଓ କବିତାରୁ ଆରମ୍ଭ । ସେଇ ଭଞ୍ଜଙ୍କ ଯୁଗରୁ ଧରାଯାଉ । ନୀଳୋତ୍ପଳ ନୟନ, କୁନ୍ଦ ଦନ୍ତ, ବିମ୍ବୋଷ୍ଠ, ରକ୍ତ ଜବା ଅଧର, ନୀଳ-ଭୁଜଙ୍ଗ-ଭ୍ରୂ··· ମୁଖମଣ୍ଡଳର ଏଇସବୁ ଅଂଶୀଦାରମାନଙ୍କ ପାଇଁ ଉପମା ପ୍ରୟୋଗରେ କବିମାନେ ଶତମୁଖ ହୋଇଉଠିଛନ୍ତି । କିନ୍ତୁ ସେଇ ମୁଖମଣ୍ଡଳର ଆଉ ଏକ ଅଂଶୀଦାର ନାକ—ଯାହାକୁ ବାଦ୍ ଦେଲେ ମୁଖମଣ୍ଡଳର କଳ୍ପନା ଯୁଦ୍ଧା କରିହେବନାହିଁ, ସେଇ ନାକ ପାଇଁ କବିମାନଙ୍କର ଉପମା କଣ ଜାଣୁ ?

ଆନନ୍ଦ : ଜାଣେ । ଖଣ୍ଡା···ଖଣ୍ଡାଧାର ପରି ନାକ ।

ସୁକାନ୍ତ : କି କଦର୍ଯ୍ୟ କୁତ୍ସିତ ଉପମା କହିଲୁ ? ଏ କବିମାନଙ୍କର ବିଗ୍ଧର-ଶକ୍ତି କଣ ଲୋପପାଇଥିଲା ?

ଆନନ୍ଦ : ଆଶ୍ଚର୍ଯ୍ୟ ସୁକାନ୍ତ ! କି ଗମ୍ଭୀର ତୋର ଚିନ୍ତାଧାରା !

ସୁକାନ୍ତ : ଏମାନଙ୍କ କଥା ଥାଉ, ମହର୍ଷି ବାଲ୍ମୀକି ମଧ୍ୟ ନାକ ପ୍ରତି ଅବିଚାର କରିବାକୁ ଭୁଲି ନାହାନ୍ତି ।

(ବେଳକୁ ବେଳ ଆନନ୍ଦ ଅଧିକରୁ ଅଧିକ ଆମୋଦ ଅନୁଭବ କରୁଥାଏ ।)

ଆନନ୍ଦ : ସତେ ତ ! ରାମାୟଣରେ ନାକର ସ୍ଥାନ କଥା ବିଚାର କଲ ବେଳକୁ ଆମ ଆଖି ଆଗରେ ଆସି ଠିଆ ହୁଏ ଶ୍ରୀମତୀ ସୂର୍ପଣଖା—ଗୋଟାଏ ଅସୁରୁଣୀ । ତା' ପ୍ରେମର ପ୍ରତିଦାନ ଦେବାକୁ ଯାଇଁ ରଘୁପତି ରାମଚନ୍ଦ୍ର ନାକଟାକୁ କଟାଇ ଦେଲେ । ···ଆହା—ହା—

ସୁକାନ୍ତ : ସେଇ କଥା ମୁଁ ବୁଝିପାରୁନି ଆନନ୍ଦ—ଏଥିରେ ସୂର୍ପଣଖାର ନାକ କି ଦୋଷ କରିଥିଲା ? ସେ ହୁଏତ ତା' ଭ୍ରୂଲତା ନଚାଇ—କଟାକ୍ଷ ହାଣି—ଦାନ୍ତରେ ଅଧର ଦଂଶନ କରି କମ୍ପିତ ଅଧର ଓ କୁନ୍ଦଦନ୍ତ ବିକଶିତ କରି ରାମଚନ୍ଦ୍ରଙ୍କୁ ତା'ର ପ୍ରେମ ନିବେଦନ କରିଥିବ । ଏଥିରେ ନାକର ଦୋଷ ରହିଲା କୋଉଠି ?

ଆନନ୍ଦ : ସତେ ସୁକାନ୍ତ; ବିଚାରା ନିରୀହ ନିରପରାଧ ନାକ, ସୂର୍ପଣଖାର ପ୍ରେମ ବ୍ୟାପାରରେ ସେ ନିର୍ଜୀବ ସ୍ଥାଣୁ ପରି ବସି ରହିଥିବ । ଅଥଚ ରାମଚନ୍ଦ୍ର ତା' ନାକଟାକୁ କଟାଇ ଦେଲେ ।

ସୁକାନ୍ତ : ଏହା ସତ୍ତ୍ୱେ ଆଜି ରାମଚନ୍ଦ୍ରଙ୍କୁ ଆଦର୍ଶ ଶାସକ ବୋଲି ସମ୍ମାନ ଦିଆଯାଉଛି ।

ଆନନ୍ଦ : ହାସ୍ତୁ ହାସ୍ତୁ ସୁକାନ୍ତ ! ତୋ' ଚିନ୍ତାଧାରା କି ମୌଳିକ—କି ସମ୍ବେଦନମୟ ! —ହଁ, ଆରବ୍ୟ ଉପନ୍ୟାସର ସେ ନାକ କଥା ତୋର ମନେଅଛି ? ଲୋକଟାର ସମସ୍ତ ଅଙ୍ଗ ଆଉ ଅବୟବ ଥାଉ ଥାଉ ହଠାତ୍ ମାଇଲ୍ ମାଇଲ୍ ଧରି ତା ନାକଟାହିଁ ବଢ଼ିଚାଲିଲା ।

ସୁକାନ୍ତ : ଓଃ ! ସେ ନାକ କଥା ଭାବିଲାବେଳକୁ ମୋ ଦେହ ଶୀତେଇ ଉଠୁଛି ।

ଆନନ୍ଦ : ବାସ୍ତବିକ ! ଏପରି ଗୋଟାଏ ଅସଭ୍ୟ ନାକର କଳ୍ପନା କଲେ ଏ ଯୁଗର ଗୋଟାଏ ସରଳପ୍ରାଣା ତରୁଣୀ ହୁଏତ ଆତଙ୍କରେ ମୂର୍ଚ୍ଛା ଯିବ ।

ସୁକାନ୍ତ : ଏଇ ଆଧୁନିକା ନାରୀମାନେ ତ କିଛି କମ୍ ନୁହନ୍ତି । କି ଅବହେଳିତ ଅବସ୍ଥାରେ ସେମାନେ ନାକକୁ ରଖିଛନ୍ତି କହିଲୁ ? ଓଠପାଇଁ ସେମାନଙ୍କର ଦରକାର ଲିପଷ୍ଟିକ୍, ଦାନ୍ତପାଇଁ ଟୁଥ୍‌ପେଷ୍ଟ—ଗାଲ ପାଇଁ ରୁଜ୍—ଆଖି ପାଇଁ ଅଞ୍ଜନ—କପାଳ ପାଇଁ କୁଙ୍କୁମ । କିନ୍ତୁ ନାକପାଇଁ କଣ ଜାଣୁ—ଗୋଟାଏ ତୀବ୍ର କଡ଼ାଗନ୍ଧଯୁକ୍ତ ରାସାୟନିକ ଦ୍ରବ୍ୟ—ସ୍ମେଲିଂ ସଲ୍ଟ !

ଆନନ୍ଦ : ଧନ୍ୟ ସୁକାନ୍ତ, ଧନ୍ୟ ତୋର ଆବିଷ୍କାର !

ସୁକାନ୍ତ : ହାସ୍ୟରେ ନାକ, ପୁରୁଷ ମଧ୍ୟ ତୋ' ପାଇଁ ସ୍ୱରୂପ । ନାସ୍ତିମୁଖ ଚୁମ୍ବନ ବ୍ୟାପାରରେ ସେ ନାକଟାକୁ ଏକାବେଳକେ ବାଦ୍ ଦେଇଦେଇଛ ।

ଆନନ୍ଦ : ସାଧୁ ସାଧୁ ସୁକାନ୍ତ ! ନାକ ପାଇଁ ତୋର ଏ ଦର୍ଶନବୋଧ···

ସୁକାନ୍ତ : ଖାଲି ଦର୍ଶନ-ବୋଧରେ ମୁଁ ତୃପ୍ତ ନୁହେଁ ଆନନ୍ଦ, ନାକ ଉପରେ ପୁରୁଷ ଓ ନାରୀର ମିଳିତ ଅତ୍ୟାଚାର କବଳରୁ ମୁଁ ତାକୁ ଉଦ୍ଧାର କରିବି । ଏ ଦିଗରେ ମୋର ପ୍ରଥମ ପଦକ୍ଷେପ କଣ ଜାଣୁ ?

ଆନନ୍ଦ : କଣ ?

ସୁକାନ୍ତ : ନାକ ପାଇଁ ଏକ ସୁନ୍ଦର ଓ ଲୋଭନୀୟ ଉପମାର ଆବିଷ୍କାର ।

ଆନନ୍ଦ : କରିବୁ ?

ସୁକାନ୍ତ : ନା, କରିଛି । କବି ଓ କାବ୍ୟର ଚିରଉପେକ୍ଷିତ ନାକ ପାଇଁ ମୁଁ ଏକ ସମ୍ମାନିତ ଆସନ ସୃଷ୍ଟି କରିଛି । ମୋ ସୃଷ୍ଟିରେ ନାକର ଉପମା ଯେମିତି ଅଭିନବ— ସେମିତି ଅଭାବନୀୟ ।

ଆନନ୍ଦ : ଯଥା ?

ସୁକାନ୍ତ : "ବନନାସିକା" ।

ଆନନ୍ଦ : ବନନାସିକା ! ଆହା-ହା ! ଚମତ୍କାର ! ଉପମା ରାଜ୍ୟର ସାମ୍ରାଜ୍ଞୀ ହେବାର ଯୋଗ୍ୟ । ଶବ୍ଦ ଯୋଜନାରେ ବିଶେଷତ୍ୱ ଅଛି । ସରଳ ଅଥଚ ସୁନ୍ଦର । ବନନାସିକା ! ବହୁବ୍ରୀହି ସମାସ—ଅର୍ଥାତ୍ ବନପରି ନାସିକା ଯାହାର ସେ··· (ଟିକିଏ ରହିଯାଇ) ଏଁ ଏ କଣ ହେଲା ! ବନପରି ନାସିକା— ଅର୍ଥାତ୍ ଜଙ୍ଗଲ ପରି । ପ୍ରଥମରୁ ତ ଏ କଥାଟାକୁ ମୁଁ ଠିକ୍ ଧରିପାରି ନଥିଲି ।

ସୁକାନ୍ତ : ଆଃ, ଭୁଲ କରୁଛୁ ଆନନ୍ଦ ! ପ୍ରତ୍ୟେକ କଥାକୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଦେଇ ବିଚାର କଲେ ତ ଚଳିବ ନାହିଁ । ଅବଶ୍ୟ ଏଇଟା ବହୁବ୍ରୀହି ସମାସ; କିନ୍ତୁ ଏଥିରେ ଟିକେ ସୂକ୍ଷ୍ମ ପ୍ରୟୋଗ ରହିଛି ।

ଆନନ୍ଦ : ସମାସ ବ୍ୟାଖ୍ୟା କଲୁ ।

ସୁକାନ୍ତ : ବନବାଳାଙ୍କ ନାସିକା ପରି ନାସିକା ଯାହାର, ସେ ହେଉଛନ୍ତି "ବନନାସିକା"···ଉପମିତ ବହୁବ୍ରୀହି ।

ଆନନ୍ଦ : କିନ୍ତୁ କିଏ ତୋର ଏଇ ବନବାଳା ?

ସୁକାନ୍ତ : ଏ ଦେଶର ବିଖ୍ୟାତ ଚିତ୍ରାଭିନେତ୍ରୀ—ଫିଲ୍ମଷ୍ଟାର୍ । ତାଙ୍କ ନାକଟାହିଁ ତାଙ୍କ ସୌନ୍ଦର୍ଯ୍ୟର ସବୁଠୁ ବଡ଼ ଉପାଦାନ । ହଲିଉଡ୍‌ରେ ଜନ୍ମ ହୋଇଥିଲେ ତାଙ୍କ ନାକ ବହୁ ମୂଲ୍ୟରେ insured ହୋଇପାରିଥାନ୍ତା । ସେଥିପାଇଁ ମୁଁ ଫୁଲ, ଚନ୍ଦ୍ର, ମେଘ, ବିଜୁଳି ପ୍ରଭୃତି ଜଡ଼ ପଦାର୍ଥମାନଙ୍କୁ ବାଦ୍ ଦେଇ ଏଇ ଜୀବନ୍ତ ନାସ୍ତି ଅଙ୍ଗରୁ ମୋର ଉପମା ସଂଗ୍ରହ କରିଛି ।

ଆନନ୍ଦ : ତା' ହେଲେ ଏଣିକି କବିମାନେ କବିତା ଲେଖିଲାବେଳେ ଏଣୀନୟନା, ଚନ୍ଦ୍ରବଦନା ପରି ଲେଖିବେ—"ବନନାସିକା ତୁ ନାସିକା ଫୁଲାଇ, ରୋଷଭରେ ଆଉ ବସନାରେ ।"

ସୁକାନ୍ତ : ଖାଲି କବିମାନେ ନୁହନ୍ତି—ଝିଅମାନେ ମଧ୍ୟ କମଳକାନ୍ତି କିମ୍ବା କନକପ୍ରଭା ପରି ସେମାନଙ୍କର ନାମ ରଖିବେ—ବନନାସିକା । ଏଇ ଧର, ବନନାସିକା ମହାପାତ୍ର । ଆଉ ଅବିବାହିତ ପୁରୁଷମାନେ ଖବରକାଗଜରେ "ପାତ୍ରୀ ଦରକାର" ବିଜ୍ଞାପନ ଦେଲାବେଳେ ବନନାସିକାର ସୁଯୋଗ ନେଇପାରିବେ ।

ଆନନ୍ଦ : ଯୁଗ ଯୁଗ ଧରି ଅବହେଳିତ ଏଇ ନାସିକା ସମସ୍ୟାର ତୁ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଛୁ ସୁକାନ୍ତ । ଏ ଜାତି ତୋର ଏ ଋଣ ଏ ଜନ୍ମରେ ଶୋଧ କରିପାରିବ ନାହିଁ ।

ସୁକାନ୍ତ : ବର୍ତ୍ତମାନ ତା'ହେଲେ ପ୍ରବନ୍ଧଟା ଲେଖାଯାଉ ।

ଆନନ୍ଦ : ପ୍ରବନ୍ଧତ ଲେଖାହେବ, ତା' ପୂର୍ବରୁ "ପାତ୍ରୀ ଦରକାର" ବିଜ୍ଞାପନଟା ଲେଖାଯାଉ ।

ସୁକାନ୍ତ : ବିଜ୍ଞାପନ ? କାହାପାଇଁ ?

ଆନନ୍ଦ : ତୁ ନିଜେ ତ ଏ ପର୍ଯ୍ୟନ୍ତ ବିବାହ କରିନୁ । ତେଣେ ତୋ ବାପା ତୋ ପାଇଁ କନ୍ୟା ଖୋଜିବାରେ ବ୍ୟସ୍ତ ।

ସୁକାନ୍ତ : କିନ୍ତୁ ମୁଁ ତ ଏତେ ଚଞ୍ଚଳ ବିବାହ କରିପାରିବି ନାହିଁ ।

ଆନନ୍ଦ : ବୁଝିଲି । ଆଗେ ତୋ ପାଇଁ ଏକ ବନନାସିକା କନ୍ୟା ଖୋଜି ବାହାର କରିବାକୁ ହବ—ତା' ନହେଲେ ତୋ'ର ଆଦର୍ଶ ରହିବନାହିଁ—ଏଇଆ ନା ?

ସୁକାନ୍ତ : (ରହି ରହି) ହିଁ···

ଆନନ୍ଦ : ସେଇଥିପାଇଁ ମୁଁ କହୁଚି, ଆଜି ବିଜ୍ଞାପନଟା ଦେଇ ଦେ' । ଏକ ସାଥିରେ ଦୁଇଟି କାମ ହେବ । ତୁ ବନନାସିକା କନ୍ୟା ପାଇବୁ—ଆଉ ସେଇ ସାଙ୍ଗେ ସାଙ୍ଗେ ତୋ ଆଦର୍ଶର ପ୍ରଚାର ମଧ୍ୟ ହେବ ।

ସୁକାନ୍ତ : କିନ୍ତୁ···

ଆନନ୍ଦ : ଆଉ "କିନ୍ତୁ"ର ବେଳ ନାହିଁ । ତେଣେ ତୋ ବାପା ଯଦି ତୋ' ପାଇଁ କୋଉଠୁ ଏକ ବେ-ନାସିକା କିମ୍ବା ଗୋନାସିକା କନ୍ୟା ଖୋଜି ଆଣନ୍ତି, ତା' ହେଲେ ତୋ'ର ଏ ଆଦର୍ଶ ଓ ଉପମାକୁ ତୁ ଏ ଜୀବନରେ ଖୋଜି ପାଇବୁନାହିଁ । ଖଣ୍ଡେ କାଗଜ ଦେଲୁ, ମୁ ଲେଖେଁ । ···ହୁଁ (ଲେଖିଲା) ପାତ୍ରୀ ଦରକାର । ଧନୀ ପରିବାରର ଶିକ୍ଷିତ ଓ ସୁନ୍ଦର ପାତ୍ର ପାଇଁ ସମ୍ଭ୍ରାନ୍ତ

କୁଳର ଗୋଟିଏ ସୁନ୍ଦରୀ, ଶିକ୍ଷିତା ଓ ସ୍ୱାସ୍ଥ୍ୟବତୀ ପାତ୍ରୀ ଦରକାର । ଅନ୍ୟାନ୍ୟ ସଦ୍‌ଗୁଣ ସହିତ ପାତ୍ରୀଟି "ବନନାୟିକା" ହେବା ଏକାନ୍ତ ପ୍ରୟୋଜନ । ଫଟୋ ସହିତ ଶୀଘ୍ର ଆବେଦନ କରନ୍ତୁ । ...ବିଶେଷ ଦ୍ରଷ୍ଟବ୍ୟ...(ଲେଖି ଚାଲିଥାଏ)

ସୁକାନ୍ତ : ବିଶେଷ ଦ୍ରଷ୍ଟବ୍ୟ ପୁଣି କଣ ?

ଆନନ୍ଦ : ମୋ'ପରି ଯଦି ବନନାୟିକାର କେହି ଭୁଲ ଅର୍ଥ ବାହାର କରି ବସେ—ସେଇଥି ପାଇଁ ବିଶେଷ ଦ୍ରଷ୍ଟବ୍ୟରେ ବନ-ନାୟିକାର ସମାସ ବ୍ୟାଖ୍ୟା କରି ଦେଇଚି ।...ହଁ, ଏ ବିଜ୍ଞାପନଟା ମୁଁ ଆଜି କାଗଜକୁ ପଠାଇଦଉଚି । ତୋ' ବାପାଙ୍କ ନିକଟକୁ ତୁ ଖଣ୍ଡେ ଚିଠି ଲେଖିଦେ ଯେ ତୋ'ର ମନୋମୀତ ପାତ୍ରୀକୁ ହିଁ ତୁ ବିବାହ କରିବୁ । ଆଚ୍ଛା, ବର୍ତ୍ତମାନ ତୁ ପ୍ରବନ୍ଧ ଲେଖା ଆରମ୍ଭକର । ମୁଁ ଚାଲିଲି ।

(ଆନନ୍ଦର ପ୍ରସ୍ଥାନ)

[ ସଦାଶିବ ବାବୁଙ୍କ କଟକ ସହରସ୍ଥ ବାସଗୃହର ଗୋଟିଏ କୋଠରୀ । ସମୟ—ଅପରାହ୍ଣ । ମଧ୍ୟବୟସ୍କ ସଦାଶିବ ବାବୁ ଗୋଟିଏ ଆରାମ ଚୌକିରେ ବସି ଗୋଟିଏ ମାସିକ ପତ୍ର ପଢୁଥାନ୍ତି । ତାଙ୍କ ସ୍ତ୍ରୀ ପାର୍ବତୀ ଦେଖା ଆସିଲେ । ]

ପାର୍ବତୀ : ନାକରେ ତେଲ ପକେଇ କ'ଣ ଏମିତି ଶୋଇଥିବ ?

ସଦାଶିବ : (ପତ୍ରିକା ବନ୍ଦ କରି ସ୍ତ୍ରୀଙ୍କ ମୁହଁକୁ ଚାହିଁ) ଆଶ୍ଚର୍ଯ୍ୟ ! Co-incidence !

ପାର୍ବତୀ : କଣ ଏମିତି କହୁଚ ମ ?

ସଦାଶିବ : ସ୍ୱୀକାର କରୁଛି Co-incidence ! ତା' ନହେଲେ ମୋ ମନରେ ଖେଳୁଥିବା କଥାଟା ତମ ମନରେ ଆଲୋଡ଼ନ ଆଣନ୍ତା କାହିଁକି ?

ପାର୍ବତୀ : ତମ ନାକ ଆଗରେ ଗୋଟାଏ ବ୍ରଣ ଉଠିଚି ।

ସଦାଶିବ : ବ୍ରଣ ? ହଁ ଉଠିଚି ତ !

ପାର୍ବତୀ : (ଦୀର୍ଘଶ୍ୱାସ ସହ) ଶେଷକୁ ଏ ନାକ ପୁଣି ଆମର ଏମିତି କାଳ ହେଲା ?

ସଦାଶିବ : ଏଁ ! ନାକ ଆମର କାଳ ହେଲା ? କଣ କହୁଚ ତମେ ? ଏଇ ପତ୍ରିକାରେ ନାକ ସମ୍ବନ୍ଧରେ ଗୋଟାଏ ପ୍ରବନ୍ଧ ବାହାରିଚି । ପଢୁ ପଢୁ ବିଚରା ନାକ ପ୍ରତି ମୋ' ପ୍ରାଣରେ ଦରଦ ଭରିଉଠୁଥିଲା । ଅଥଚ ମୋର ନାକ ଉପରେ ବ୍ରଣ ଉଠିଲା ।

ପାର୍ବତୀ : ଓଃ, ତମ ନାକ କଥା ପଚ୍ଛ ନାହିଁମ !
ସଦାଶିବ : ଆଉ କାହା ନାକ ?
ପାର୍ବତୀ : ଆଜ୍ଞା, ବନବାଳା କିଏ ?
ସଦାଶିବ : ବଡ଼ମୁସ୍କିଲ ! କିଓ, ବନବାଳାଙ୍କଠାରେ ତୁମର ଦରକାର କଣ ?
ପାର୍ବତୀ : ଦରକାର ଅଛି । ତମେ କୁହ, ସେ କିଏ ।
ସଦାଶିବ : ସେ ଜଣେ ସିନେମା ଅଭିନେତ୍ରୀ । କଲିକତାରେ ଥା'ନ୍ତି ।
ପାର୍ବତୀ : ତାଙ୍କୁ ଠିକଏ କେମିତି ଦେଖନ୍ତି ।
ସଦାଶିବ : କହୁଚପଛି ସେ କଲିକତାରେ ଥାନ୍ତି ।
ପାର୍ବତୀ : ମଲ, ଲଙ୍କାରେ ଥିଲେ ଲୋକ ଲୋକଙ୍କୁ ଦେଖୁଚ, କଲିକତା କଣ ବଡ଼ କଥା !
ସଦାଶିବ : କି ମୁସ୍କିଲ ! ତାଙ୍କ ଫଟୋ ଦେଖିଲେ ଚଳିବ ?
ପାର୍ବତୀ : ଫଟୋ···କାହିଁ ?
ସଦାଶିବ : ଏଇ, ଏଇ ପତ୍ରିକାରେତ ବାହାରିଚି । (ପତ୍ରିକା ପୃଷ୍ଠା ଓଲଟାଇ) ଏଇ ଦେଖ—ଶ୍ରୀମତୀ ବନବାଳା । କଣ ଦେଖୁଚ ?
ପାର୍ବତୀ : ନାକ ।
ସଦାଶିବ : ନାକ !! ସତେତ—ସମସ୍ତ ଛବିଟାରେ ଶ୍ରୀମତୀଙ୍କର ନାକଟାହିଁ ଦେଖିବାର କଥା ।
ପାର୍ବତୀ : ଉଃ !! ଦେଖିବାର କଥା ! ମନ ହଉଚି ପୋଡ଼ାମୁହିଁ ୀର ନାକଟାକୁ କାଟି ସୂର୍ପଣଖା କରି ଛାଡ଼ିଦିଅନ୍ତି ।
ସଦାଶିବ : କଥା କଣ ? ନାକ ପ୍ରତି ମୋର ସନ୍ଦେହ ଆଉ ତମର ବିରାଗ ? ଆମ ବୁଢ଼ିଙ୍କର ଆଜି ହୋଇଚି କଣ କହତ—ମୁଁ କିଛି ବୁଝିପାରୁନାହିଁ ।
ପାର୍ବତୀ : (ଚିଠି ଖଣ୍ଡେ ଦେଇ) ଏଇ ଚିଠି ପଢ଼, ସବୁ ବୁଝିପାରିବ ।
ସଦାଶିବ : ଚିଠି ? କିଏ ଦେଇଚି ?
ପାର୍ବତୀ : ଶ୍ରୀରାମଚରଣ । ତମ ଝିଅ ବାହାଘର ପାଇଁ ସିଏ ଭଲ୍ଲୋକ ହୋଇଚି । ପଢ଼ ।
ସଦାଶିବ : (ପଢ଼ିଲେ) ଓଁ, ମା' କାଳୀ—ବାଲେଶ୍ୱର—ମାନନୀୟ ସଦାଶିବ ବାବୁ ଜାଣିବେ । ଆପଣଙ୍କ ଝିଅ ନିରୁପମା ପାଇଁ ଗୋଟିଏ ଭଲ ବରପାତ୍ରର ସନ୍ଧାନ ମିଳିଥିଲା; କିନ୍ତୁ ପାତ୍ରଟି କହିଲା ଯେ, ସିଏ ବନବାଳାଙ୍କ ନାକପରି ନାକ ଥିବା ଝିଅକୁ ବିବାହ କରିବ । ତେଣୁ ଏଠି ସମ୍ବନ୍ଧ ଭାଙ୍ଗିଗଲା । ଅନ୍ୟପାତ୍ର ଦେଖୁଚି । ଇତି । ଆପଣଙ୍କର ଶ୍ରୀରାମଚରଣ ।
ପାର୍ବତୀ : ବୁଝିଲ ?
ସଦାଶିବ : ବୁଝିଲି । ମାଙ୍କୁର ନାକ ଠିକଏ ରେପ୍ଟା ।

ପାର୍ବତୀ : ସେଇଥି ପାଇଁ ମୁଁ କହୁଥିଲି, ଏ ନାକ ପୁଣି ଏମିତ କାଳ ହେଲା ?

ସଦାଶିବ : ଏଇ ସାମାନ୍ୟ କଥାକୁ ଏମିତ ଦୁଃଖ ! ଏମିତ ସହଜରେ ଆଖିରେ ଧରା ପଡ଼ିଲା ଭଳିଆ ଚେପ୍‌ଟା ନାକ ନରୁର ନୁହେଁ ।

ପାର୍ବତୀ : ନାଇଁ ନାଇଁ, ସେ ସବୁ ମନରଖା କଥା ନୁହେଁ । ତମେ ଆଜିଠୁ କିଛୁ ଗୋଟାଏ ଉପାୟ କର ।

ସଦାଶିବ : ଉପାୟ ଆଉ କଣ କରିବ ? ନାକ ଉପରେ ଆଉ ଗୋଟିଏ ନାକ ଆଣି ଯୋଡ଼ିବ ?

ପାର୍ବତୀ : ମଲା, ତମେ ନିଜେ ଯାଉନ ବରପାତ୍ର ଖୋଜିବ ।

ସଦାଶିବ : ଆଚ୍ଛା, ମୁଁ ନିଜେ ଖୋଜିବ । ହେଲେ ଏତେ ବ୍ୟସ୍ତ କାହିଁକି ?

ପାର୍ବତୀ : ତମେ ମୋଟେ ବୁଝିପାରୁନ । ଏମିତ ଦେଖୁ ଦେଖୁ ଝିଅ ମୋର ଶେଷକୁ ବାସନ୍ଧ ହୋଇ ରହିବ । ତମେ ଆଉ ହେଳା କରନା । ଖାଲି ଭଦ୍ରଲୋକ ମୁହଁକୁ ଅନାଇଁ ବସିଲେ ଚଳିବନାହିଁ ।

ସଦାଶିବ : କିନ୍ତୁ ମୋ' ନିଜଦ୍ୱାରା କଣ କିଛି ହେଲେ ହୋଇପାରିବ ? ମୁଁ ଯାଏ···

ପାର୍ବତୀ : କୋଉଠିକି ?

ସଦାଶିବ : ଆଉ କୋଉଠିକି ? ମୋର ବନ୍ଧୁ, ଉପଦେଷ୍ଟା ଆଉ ପଥପ୍ରଦର୍ଶକ ଡାକ୍ତର ଜଗନ୍ନାଥଙ୍କ ପାଖକୁ । ସେଇ ଏକମାତ୍ର ଭରସା ।

( ଠିକ୍ ଏତିକିବେଳେ ଡାକ୍ତରଙ୍କ ସ୍ୱର ବାହାରୁ ଶୁଣାଗଲା । )

ଡାକ୍ତର : (ବାହାରୁ) ସଦାଶିବ ଘରେ ଅଛ ? ସଦାଶିବ···

ସଦାଶିବ : ଏଇ ଦେଖିଚ, କଥା ପଡ଼ୁ ପଡ଼ୁ ଡାକ୍ତର ନିଜେ ଆସି ପହଞ୍ଚିଲେଣି । ତମେ ଯାଅ—ଚା'ର ବନ୍ଦୋବସ୍ତ କର ।

( ପାର୍ବତୀ ଚାଲିଗଲେ । ପ୍ରାୟ ସଙ୍ଗେ ସଙ୍ଗେ ଆସିଲେ ଡାକ୍ତର । ସେ ସଦାଶିବଙ୍କ ସମବୟସ୍କ )

ବସ ଡାକ୍ତର ବସ ! ବର୍ତ୍ତମାନ ତମ କଥା ପଡ଼ିଥିଲା ।

ଡାକ୍ତର : ମୋ କଥା କଣ ପଡ଼ିଥିଲା ? ତମର ସବୁ ଭଲ ତ ?

ସଦାଶିବ : ସବୁ ଭଲ ହେଲେ ତମ କଥା ପଡ଼ନ୍ତା କାହିଁକି ?

ଡାକ୍ତର : କଣ ହେଲା ? ନରୁ ବୋଉର ପୁଣି ଡିସ୍‌ପେପ୍‌ସିଆ ?

ସଦାଶିବ : ନା ।

ଡାକ୍ତର : ତେବେ କଣ ତମର ସେଇ ସାଇଟିକା ?

ସଦାଶିବ : ନାଇଁ ବାବୁ, ଆମର କାହାରି କିଛି ହୋଇନ ।

ଡାକ୍ତର : ତେବେ କାହାର କଣ ହୋଇଚ ?

ସଦାଶିବ : ହୋଇଛି ତ ଏକ ସାଂଘାତିକ ରୋଗ ।
ଡାକ୍ତର : ସାଂଘାତିକ ରୋଗ !! କଣ ଟାଇଫଏଡ୍ ନା ନିଉମୋନିଆ ?
ସଦାଶିବ : ନିମୋନିଆ ନୁହେଁ ଡାକ୍ତର—ନୋଜ୍‌ମାନିଆ ।
ଡାକ୍ତର : ନୋଜ୍‌ମାନିଆ !! ସେ' ପୁଣି କି ରୋଗ ?
ସଦାଶିବ : ଅତି ଅଦ୍ଭୁତ ରୋଗ ସେ' ଡାକ୍ତର ।
ଡାକ୍ତର : କାହାକୁ ହୋଇଛି ?
ସଦାଶିବ : ଆମ ଦେଶର ବରପାତ୍ରଗୁଡ଼ାକଙ୍କୁ । ସେଇମାନଙ୍କୁ ନୋଜ୍‌ମାନିଆ ହୋଇଛି ।
ଡାକ୍ତର : ବରପାତ୍ର ! କହା କଥା ତୁମେ କହୁଛ ? ମୁଁ କିଛି ବୁଝିପାରୁନି ।

( ଏତିକବେଳେ ସଦାଶିବଙ୍କ ଝିଅ ନିରୁ ଦୁଇକପ୍ ଚା' ଆଣି ଦେଇଗଲା । )

ସଦାଶିବ : ନିରୁକୁ ଦେଖିଲତ ଡାକ୍ତର ।
ଡାକ୍ତର : ପିଲାଟିଦିନରୁ ଦେଖି ଆସିଚି, ଆଜି ଆଉ ପୁଣି ଦେଖିବି କଣ ?
ସଦାଶିବ : ନିରୁ ଯେ ସୁନ୍ଦରୀ ଏ କଥା ତମେ ନିଶ୍ଚୟ ସ୍ୱୀକାର କରିବ ?
ଡାକ୍ତର : ତାକୁ ଅସୁନ୍ଦରୀ ବୋଲି କହୁଚି କିଏ ?
ସଦାଶିବ : ନିରୁ ଖାଲି ସୁନ୍ଦରୀ ନୁହେଁ—ବୁଦ୍ଧିମତୀ—ସ୍କଲ୍‌ରସିପ୍ ନେଇ ବି. ଏ. ପଢ଼ୁଚି । ରଙ୍ଗ ବାଛିବାକୁ ହବନାହିଁ; ସମସ୍ତ ଘରକରଣା କାମରେ ଧୁରନ୍ଧର ।
ଡାକ୍ତର : ତମର ଆଜି ହୋଇଚି କଣ ସଦାଶିବ ?
ସଦାଶିବ : ତମେ ଜାଣିପାରୁନ କଣ ହୋଇଚି ?
ଡାକ୍ତର : ନା, ଖାଲି ଯାହା ତମର ଏଇ ନାକ···
ସଦାଶିବ : ସେଇ ନାକ ଡାକ୍ତର, ନାକ । ଏତେ ଗୁଣ ଥାଉ ଥାଉ ଦୋଷ ଭିତରେ ନିରୁର ନାକଟା ଟିକିଏ ଚେପ୍‌ଟା ।
ଡାକ୍ତର : ଚେପ୍‌ଟା !! ଅବଶ୍ୟ ସେ ଦୋଷ ତା'ର ଟିକିଏ ରହିଚି ।
ସଦାଶିବ : ଆଉ ସେଇଥିପାଇଁ ବିବାହ ବଜାରରେ ତା'ର ମୂଲ୍ୟ ତଳକୁ ଖସି ଆସୁଚି । ବୁଝିଲ ତ ଏବେ ?
ଡାକ୍ତର : ବୁଝିଲି । ଏଇ ତେବେ ତମ ନୋଜ୍‌ମାନିଆ ?
ସଦାଶିବ : ତମେ କହିଲ ଡାକ୍ତର ଏଇ ସାମାନ୍ୟ କଥା ଯୋଗୁଁ···
ଡାକ୍ତର : ନା ସଦାଶିବ, ଏ ସମାନ୍ୟ କଥା ନୁହେଁ ।

( ଜଣାଚଲା, ଡାକ୍ତର କଥାଟାକୁ ଟିକିଏ ଗୁରୁତର ଭାବେ ଗ୍ରହଣ କରିଚନ୍ତି । )

ସଦାଶିବ : ଡାକ୍ତର !
ଡାକ୍ତର : ତମେ ବୁଝିପାରୁନ ସଦାଶିବ । ଦୋଷଟା ଯେତେବେଳେ ବରପାତ୍ରମାନଙ୍କ

ଆଖିକୁ ଆସିଲଣି, ସେତେବେଳେ ତାକୁ ସାମାନ୍ୟ କାଟ ଦେଇ ଉଚ୍ଚ କରି ଦେଇ ହେବନାହିଁ ।

ସଦାଶିବ : ତେବେ ଉପାୟ ?

ଡାକ୍ତର : ସେଇ କଥା ତ ଭାବୁଚି । ଦାନ୍ତ ଦି'ଟା ବାହାରା ହୋଇଥିଲେ ଉପାଡ଼ି ଦେଇ ପଥର ଦାନ୍ତ ବସାଇ ଦେଇ ହୁଅନ୍ତା କିମ୍ବା ଆଖିରେ ଫୁଲ ପଡ଼ିଥିଲେ ଅପରେସନ୍ ଦ୍ୱାରା ସୁଧାର ନେଇ ହୁଅନ୍ତା । କିନ୍ତୁ ଚେପ୍‌ଟା ନାକକୁ···

ସଦାଶିବ : ତମ ଫିଜିଓଲଜିରେ ଏମିତି କିଛି ଷ୍ଟ୍ରେଚମେଣ୍ଟ ବିଦ୍ୟା ନାହିଁ ଡାକ୍ତର, ଯୋଉଥିରେ ନାକର ଲେଭେଲ୍‌ଟାକୁ ଆହୁରି ଟିକିଏ ଉପରକୁ ଉଠାଇ ଦେଇ ହୁଅନ୍ତା !

ଡାକ୍ତର : କଣ ଯେ ତୁମେ କହ ସଦାଶିବ···

ସଦାଶିବ : ମୋ ଅବସ୍ଥା ତମେ ବୁଝିପାରୁନ । ଜାଣିଶୁଣି ବାପା ସେତେବେଳେ ଗୋଟାଏ ଚେପ୍‌ଟାନାକୀ ଝିଅକୁ ତାଙ୍କ ବୋହୂ କରି ଘରକୁ ଆଣିଲେ । ତାର ଫଳ ଏବେ ମୁଁ ଭୋଗୁଚି । ପେଚା ପେଟରୁ ଶୁଆ ଜନ୍ମ ହେବ କେମିତି ?

ଡାକ୍ତର : ତମ କଥା ଶୁଣି ମଣିଷ ନ ହସି ରହିପାରୁନି ।

ସଦାଶିବ : ତମେ ତମର ହସୁଥାଅ—ମୁଁ କିନ୍ତୁ ଏଠୁ ଘରଦ୍ୱାର ଛାଡ଼ି ଚାଲିଯିବି ।

ଡାକ୍ତର : କୋଉଠିକୁ ଯିବ ?

ସଦାଶିବ : ନେପାଳ । ସେଠି ନିରୁପାଇଁ ବରପାତ୍ର ଅଭାବ ରହିବନାହିଁ ।

ଡାକ୍ତର : ଅଦ୍ଭୁତ ଲୋକ ତମେ ! ଶୁଣ, ତମର ବ୍ୟସ୍ତ ହେବାର ଦରକାର ନାହିଁ । ସବୁ ଠିକ୍ ହୋଇଯିବ । ନିରୁପାଇଁ ମୁଁ ଉପଯୁକ୍ତ ବରପାତ୍ର ଠିକଣା କରିଦେବି ।

ସଦାଶିବ : ସତ କହୁଚ ଡାକ୍ତର, ନିରୁପାଇଁ ଉପଯୁକ୍ତ ପାତ୍ର ମିଳିବେ ?

ଡାକ୍ତର : ମିଳିବେ । କିନ୍ତୁ ଟିକିଏ···

ସଦାଶିବ : କଣ ?

ଡାକ୍ତର : ଟିକିଏ ବ୍ଲାକ୍‌ରେ କାରବାର କରିବାକୁ ପଡ଼ିବ ।

ସଦାଶିବ : ବ୍ଲାକ୍‌ରେ ମାନେ ? ବରପକ୍ଷ କନ୍ୟା ଦେଖିବାକୁ ଆସିଲାବେଳେ ନିରୁର ମୁହଁଟା ଯେମିତି ଟିକିଏ ଅନ୍ଧାରୁଆ ହୋଇ ରହିପାରିବ···

ଡାକ୍ତର : କି ବୋକା ତୁମେ ! ସାରା ଦେଶ ବର୍ତ୍ତମାନ ବ୍ଲାକ୍‌ରେ ଚାଲିଚି, ତମେ କହୁଚ କଣ ନା···

ସଦାଶିବ : ସତେ ଡାକ୍ତର, ତମ ବ୍ଲାକ୍ କାରବାର କଥା ମୁଁ କିଛି ବୁଝିପାରୁନ ।
ଡାକ୍ତର : ଥାଉ । କିଛି ବୁଝିବା ଦରକାର ନାହିଁ । ସେ ବ୍ୟବସ୍ଥା ମୁଁ କରିବି । ...ଆଚ୍ଛା, ମୁଁ ବର୍ତ୍ତମାନ ଉଠେ । ରୋଗୀ ଦେଖି ଯାଉ ଯାଉ ଏତେ ସମୟ ଅଟକିଗଲି ।

( ଡାକ୍ତର ବିଦାୟ ନେଲେ )

ସଦାଶିବ : (ଦୀର୍ଘଶ୍ୱାସସହ) ଭଗବାନ୍ ! ପୃଥିବୀରେ ଏତେ ଭୂମିକମ୍ପ ହଉଛି । ନଟୁର ନାକ ତଳେ ଗୋଟିଏ ଜୋରଟ ଭୂମିକମ୍ପ କରାଇ ତା' ନାକଟାକୁ ଦୁଇ ସେଣ୍ଟିମିଟର୍ ଉପରକୁ ଉଠେଇ ଦେଇ ପାରୁନ ପ୍ରଭୁ !!

[ ସୁକାନ୍ତର ପୂର୍ବର ସେଇ କୋଠରି । ଟେବୁଲ ଉପରେ ଗୁଡ଼ାଏ ଚିଠି ଜମା ହୋଇଛି । ସମୟ ପୂର୍ବାହ୍ନ । ସୁକାନ୍ତକୁ ଦେଖିଲେ ଜଣାଯାଏ ସେ ଯେମିତି ଏକାବେଳକେ ଭାଙ୍ଗିପଡ଼ିଛି । ]

ଆନନ୍ଦ : ମୁଁ ଆଗେ ଚିଠି ଗୁଡ଼ାକ ସଜେଇ ରଖେ—ତା'ପରେ ଗୋଟି ଗୋଟି କରି ପଢ଼ାଯିବ ।
ସୁକାନ୍ତ : କ୍ଷମାକର ଭାଇ ! ଏ ଚିଠି ସବୁକୁ ପଢ଼ିବାର କି ସଜେଇ ରଖିବାର ସ୍ପୃହା ମୋର ଆଉ ନାହିଁ । ସେ ସବୁକୁ ତୁ ଦିଆସିଲିମାରି ଜଳେଇ ଦେ ।
ଆନନ୍ଦ : ଏତିକରେ ତୁ ଧୈର୍ଯ୍ୟ ହରାଇ ବସିଲୁ ? ଗୋଟାଏ ନୂଆ କିଛି କରିବାକୁ ହେଲେ ଏମିତି ଉପହାସ ପରିହାସ ସହିବାକୁ ପଡ଼େ ।
ସୁକାନ୍ତ : କିନ୍ତୁ କି କଦର୍ଯ୍ୟ ମନୋବୃତ୍ତି ଏଇ ଚିଠିଆମାନଙ୍କର ତୁ କହିଲୁ ଆନନ୍ଦ ? ଏସ୍‌ଥେଟିକ୍ ସେନ୍‌ସ କଣ ଏମାନଙ୍କର ଆଦୌ ନାହିଁ ? ନାକ ସମ୍ବନ୍ଧରେ ଏଇ ଦାର୍ଶନିକ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ମୁଁ କି ସାଧ ସାଧନା ନ କରିଛି ! ବଦନସ୍ଥରେ ସାମାନ୍ୟ ଟିକେ ସହାନୁଭୂତି ସୁଦ୍ଧା ମୁଁ କାହାଠୁ ପାଇଲିନ ।

( ସୁକାନ୍ତର ଅଲକ୍ଷ୍ୟରେ ଆନନ୍ଦ ଏଥିରୁ ଆମୋଦ ଅନୁଭବ କରୁଥାଏ । )

ଆନନ୍ଦ : ତା'ର ବେଳ ଆସୁଛି ସୁକାନ୍ତ । ଯେଉଁମାନେ ଆଜି ତୋତେ ବିଦ୍ରୂପ କରୁଚନ୍ତି, ସେମାନଙ୍କର ନିଶ୍ଚୟ କିଛି ଦୁର୍ବଳତା ରହିଛି । ହୁଏତ ସେମାନେ ଚେପ୍‌ଟାନାକୀ, ନାହିଁ ତ ଗ୍ରହଣଖଣ୍ଡୀ । ସେମାନଙ୍କୁ ତୁ ତ କ୍ଷମା କରିବୁ ।
ସୁକାନ୍ତ : କ୍ଷମା ! ଏଇ ସବୁ ଚିଠି ପାଇସାରିଲା ପରେ ? ଅସମ୍ଭବ !! ଏଇ-ଏଇ ଚିଠି ଖଣ୍ଡିକ ତୁ ପଢ଼ିଲୁ !

ଆନନ୍ଦ : (ପଢ଼ିଲା) "ପ୍ରିୟ ସୁକାନ୍ତ ବାବୁ ! ଆମ ପଡ଼ାରେ ଗୋଟିଏ ଝିଅ ଅଛୁ । ତାଙ୍କ ଶୁଣ୍ଠ ଢଅଁଶରେ ଯେଉଁ ନକ୍‌ସା ଦରକାର ହୁଏ, ବଧାତା ଭୁଲରେ ସେଇ ନକ୍‌ସାରେ ତା' ନାକଟିକୁ ଗଢ଼ଚନ୍ତି । ଆପଣ ସବୁ ଅବୟବ ଅପେକ୍ଷା ନାକକୁ ପ୍ରିଫରେନ୍‌ସ ଦେଇଥିବାରୁ ଏଇ ଝିଅଟି କଥା ଆପଣ ସୁବଚ୍ଚର କର ତା'ର ପାଣିଗ୍ରହଣ କରବେ ବୋଲି ମୁଁ ଜାମ୍‌ସେଦ୍‌ପୁର ଓଡ଼ିଆ ନାସ୍ତସଘ ତରଫରୁ ଆପଣଙ୍କୁ ଅନୁରୋଧ କରୁଛ । ଝିଅଟିର ଫଟୋ ଓ ଦରଖାସ୍ତ ଏଥି ସହତ ପଠାଇଲି ।—ଆପଣଙ୍କର ସୁଧା ମହାନ୍ତି ।"

ସୁକାନ୍ତ : ସ୍ୱା'ମରେ ଏମାନଙ୍କୁ କ୍ଷମା କରନାପାଇଁ ତୁ ମତେ କହୁଚୁ ? ଏଇ ସୁଧା ମହାନ୍ତି ନାଁରେ ମୁଁ କେଶ୍ କରବ ।···ଏଇ···ଏ ଚଠି ା ପଢ଼ ।

ଆନନ୍ଦ : (ପଢ଼ିଲା) "ମୁଁ ଜଣେ ପ୍ରାର୍ଥୀ ହେବାକୁ ଚ୍ହେଁ ଏବଂ ମୁଁ ବନନାୟିକା ବୋଲି ମୋର ବିଶ୍ୱାସ । କିନ୍ତୁ ଶ୍ରୀମତୀ ବନବାଳାଙ୍କ ନାକର ମାପଟା ମୁଁ ଜାଣେ ନାହିଁ ବୋଲି ଦରଖାସ୍ତ କରିପାରୁନ । ଦୟାକର ତାଙ୍କଠୁ ମାପଟା ଆଣି ପଠାଇବେ । ଇତ । ଆପଣଙ୍କର ଗୁଣମୁଗ୍‌ଧା—ରମା ଦାସ ।—ପୁନଶ୍ଚ । ଖବରକାଗଜରୁ ଦେଖିଲି ଶ୍ରୀମତୀ ବନବାଳା ବାୟୁପରବର୍ତ୍ତନ ପାଇଁ ତନି ମାସ ସକାଶେ ରାଞ୍ଚି ଯାଇଛନ୍ତି । ମୋର ଅନୁରୋଧ ଆପଣ ନଜେ ରାଞ୍ଚି ଯାଇ ମାପଟା ପଠାନ୍ତୁ । କିନ୍ତୁ ସାବଧାନ, ରାଞ୍ଚି ପାଗଳଖାନାରେ ଆପଣଙ୍କ ସାଙ୍ଗ ସାଥୀମାନଙ୍କ ନିକଟକୁ ଯିବେନାହିଁ । ଆପଣଙ୍କଠାରେ ଆକୃଷ୍ଟ ହୋଇ ସେମାନେ ହୁଏତ ଆପଣଙ୍କୁ ଅଟକାଇ ରଖିବେ ।"

ସୁକାନ୍ତ : ଏ ଚଠି ପଢ଼ି ଲୋକ ପାଗଳ ନ ହୋଇ ରହିପାରେ ? ଆଉ କିଛି ନ ହେଲେ ଟିକଏ ଭଦ୍ରତା ଜ୍ଞାନ ଏଇ ରମା ଦାସଟାର ନାହିଁ !!···ପୁଣି ଦେଖ୍ ଏ ଚଠିଟା—ଇଏ ଜଣକର ନୁହେଁ—ଏକାବେଳକେ ପାଞ୍ଚ ଜଣଙ୍କର !

ଆନନ୍ଦ : (ପଢ଼ିଲା) "ଆପଣଙ୍କ ପ୍ରବନ୍ଧ ଓ ବିଜ୍ଞାପନ ପଢ଼ିଲୁ । ନାକ ସମ୍ବନ୍ଧରେ ଆପଣଙ୍କର ଗଭୀର ଗବେଷଣା ପାଇଁ ଆପଣଙ୍କୁ ନାକରେ Doctorate ବା ନାୟିକାଗୃଧ୍ନି ଉପାଧିରେ ଭୂଷିତ କରବା ପାଇଁ ଆମେମାନେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରବା ସଙ୍ଗେ ସଙ୍ଗେ ଆପଣଙ୍କର ବିରାଟ ବ୍ୟକ୍ତିତ୍ୱ ପ୍ରତ ଆମମାନଙ୍କର ସମ୍ମିଳିତ ନାସିକା କୁଞ୍ଚନ ଜଣାଇଲୁ । ଗ୍ରହଣ କର ବାଧିତ କରିବାହେବେ । ଇତ । ମିନତ, ଆରତ, ପ୍ରଣତ, ସୁମତ, ବନତ ।"

ସୁକାନ୍ତ : ଥାଉ ଆନନ୍ଦ, ବନ୍ଦକର, ଆଉ ପଢ଼ନା । ସେ ସବୁ ଚଠି ମତେ ଦେ— ମୁଁ ଏଇକ୍ଷଣି ନିଆଁ ଲଗେଇ ପୋଡ଼ିଦିଏ ।

( କବାଟରେ ଠକ୍ ଠକ୍ ଶବ୍ଦ )

ଆନନ୍ଦ : କିଏ ଡାକୁଚି ?

ସୁକାନ୍ତ : ମୁଁ ଦେଖୁଚି ।

( କବାଟ ଖୋଲି ବାହାରକୁ ଗଲା । )

ଆନନ୍ଦ : (ମନକୁମନ ହସି) ଏଇଥର ବୋଧହୁଏ ତୋ ପାଗଳାମିର ଶେଷ ହେବ ସୁକାନ୍ତ । ଭଗବାନ ! ଆଉ ଏମିତି ଦଶ ପାଞ୍ଚ ଝଣ୍ଟ ଚିଠି ଆସୁ । (ସୁକାନ୍ତ ଫେରିଲା) ସେ କଣ ?

ସୁକାନ୍ତ : ଖଣ୍ଡେ ରେଜେଷ୍ଟ୍ରି ଚିଠି ?

ଆନନ୍ଦ : କିଏ ଦେଇଚି ?

ସୁକାନ୍ତ : ଶ୍ରୀମତୀ ବନବାଳା ଦେବୀ ସ୍ୱୟଂ ।

ଆନନ୍ଦ : ବନବାଳା ଦେବୀ !! କଣ ଲେଖିଚନ୍ତି । ଖୋଲିକରି ପଢ଼ ।

ସୁକାନ୍ତ : ପଢ଼ିବାର ସାହସ ମୋର ଆଉ ନାହିଁ ଆନନ୍ଦ ।

ଆନନ୍ଦ : ଆଚ୍ଛା ମତେ ଦେ, ମୁଁ ପଢ଼େ ।

ସୁକାନ୍ତ : ତୁ ପଢ଼ିବୁ, ଆଚ୍ଛା ନେ, ପଢ଼ । କିନ୍ତୁ ଏଠି ନୁହେଁ—ତୋ' ଘରକୁ ଯା— ସେଇଠି ପଢ଼ିବୁ ।

ଆନନ୍ଦ : ତୁ ଏତେ ଡରୁଚୁ କାହିଁକି ? ମୁଁ ଆଗେ ଖୋଲିକରି ଦେଖେଁ, ଚିଠିରେ କଣ ଅଛି ।

ସୁକାନ୍ତ : ନା ଭାଇ, ତୋତେ ଅନୁନୟ କରୁଚି ଏ ଚିଠି ନେଇ ତୁ ଏଠୁ ଯା'—ଯା' ଆନନ୍ଦ—ସେ ଚିଠିରେ ଯାହା ଲେଖା ଅଛି ମୁଁ ଜାଣେ । ମୁଁ ତାକୁ ଆଦୌ ପଢ଼ିବନାହିଁ, ଏ ଚିଠି ନେଇ ତୁ ଏଠୁ ଯା ।

( ଏକପ୍ରକାର ଜୋର୍ କରି ଆନନ୍ଦକୁ ସେଠୁ ତଡ଼ିଦେଇ ନିଜେ କବାଟ ବନ୍ଦ କରି ଖଟ ଉପରେ ଶୋଇପଡ଼ିଲା । )

[ ସଦାଶିବଙ୍କର ପୂର୍ବର ସେଇ ଘର । ସୁନ୍ଦର ଭାବେ ସଜ୍ଜିତ । ଡାକ୍ତର ଆସିଲେ । ]

ସଦାଶିବ : ଆସ ଡାକ୍ତର !

ଡାକ୍ତର : ତମର ସବୁ ready ତ ?

ସଦାଶିବ : ହଁ, ସବୁ ଠିକ୍ ହୋଇଯାଇଚି ।

ଡାକ୍ତର : ଏଇ ଘରେ ସେମାନେ ବସିବେ ତ ? ଭଲ···ଭଲ ସଜାହୋଇଚି ।

ସଦାଶିବ : ସେମାନେ କଏ କଏ ଆସିବେ ?
ଡାକ୍ତର : ମୋଟେ ଦୁଇଜଣ—ବରକର୍ତ୍ତା ଓ ବରର ଜଣେ ବନ୍ଧୁ ।
ସଦାଶିବ : ନିଜେ ବର ଆସିବ ନାହିଁ ?
ଡାକ୍ତର : ନା, କର୍ତ୍ତାଙ୍କ ଖୁଜିରେ ବରର ଖୁଜି । ଆଚ୍ଛା, ନିରୁ କାହିଁ ?
ସଦାଶିବ : ଆଜି ସକାଳଠୁ ଖାଲି କାନ୍ଦୁଛି ।
ଡାକ୍ତର : କାନ୍ଦୁଚି ? କାହିଁକି ?
ସଦାଶିବ : କଚ୍ଛି ପିଲା ତ ନୁହେଁ—ମୋ ଅବସ୍ଥା ସେ ବୁଝି ପାରୁଚି । ସେଇ ଦୁଃଖରେ···
ଡାକ୍ତର : ନା ନା, ତାକୁ ମନାକରିଦିଅ—ସେମାନଙ୍କ ପାଖରେ ଯେମିତି ନ କାନ୍ଦେ । ହଁ, ସେମାନଙ୍କର ଆସିବାର ବେଳ ପ୍ରାୟ ହୋଇଗଲା—ନିରୁ ଲୁଗାପଟା ପିନ୍ଧି ସାରିଚନ୍ତି ?
ସଦାଶିବ : ସେ ସବୁ କାମ ସରିଚି; କିନ୍ତୁ ଡାକ୍ତର, ତମ ବ୍ଲାକ୍ କଥାଟା କଣ ମୁଁ ତ ଜାଣିପାରିଲିନାହିଁ ।
ଡାକ୍ତର : ସେଇ କଥା କହୁଚି ।
ସଦାଶିବ : କୁହ ।
ଡାକ୍ତର : ଏଇ ଚଷମା—( ପକେଟରୁ ଗୋଟିଏ ଚଷମା ବାହାରକଲେ )
ସଦାଶିବ : ଚଷମା ! କଣ ହେବ ?
ଡାକ୍ତର : ନିରୁ ପିନ୍ଧିବ ।
ସଦାଶିବ : ନିରୁ ଚଷମା ପିନ୍ଧିବ—କାହିଁକି ? ତା' ନାକ ସିନା ଟିକିଏ ଚେପ୍ଟା, କିନ୍ତୁ ଆଖିତ ଖରାପ ନୁହେଁ !
ଡାକ୍ତର : ଆଖିର କଥା ନୁହେଁ । ଏଇଠାରେ ମୋଟେ ପାଓ୍ୱାର ନାହିଁ ।
ସଦାଶିବ : ତେବେ ପିନ୍ଧିବ କାହିଁକି ?
ଡାକ୍ତର : ଏଇତ ବ୍ଲାକ୍ !! ଏ ଚଷମାଟା ପିନ୍ଧିଲେ ତା' ନାକର ଚେପ୍ଟା ଅଂଶ ଅନେକଟା ଢାଙ୍କି ହୋଇଯିବ ।
ସଦାଶିବ : (ଖୁସିରେ) ସତରେ ଡାକ୍ତର ଖୁବ ଭଲ ଉପାୟଟିଏ ବାହାର କରିଚ । ହେଲେ, ନିରୁ ଯଦି ରାଜି ନହୁଏ ?
ଡାକ୍ତର : ଆଃ—ରାଜି କରାଇବାକୁ ହେବ । ତମ ଝିଅ ସେ, ଏଇ ସାମାନ୍ୟ କଥାରେ ତାକୁ ତମେ ରାଜି ନ କରାଇଲେ ଚଳିବ କେମିତି ? ତା ଛଡ଼ା ଚଷମା ଦେବା ତ ଏବେ ଝିଅମାନଙ୍କର ଗୋଟାଏ ଫେସନ୍ । ତମେଯାଅ, ତାକୁ ଚଷମାଟା ପିନ୍ଧାଅ—ମୁଁ ତେଣେ ସେମାନଙ୍କ ଅପେକ୍ଷାରେ ବାହାରେ ରହୁଚି । ( ଡାକ୍ତର ବାହାରକୁ ଗଲେ )

ସଦାଶିବ : ହରହେ—ବିପଦ ବାରଣ—ତମେଇ ଭରସା । ହଇଓ, କୁଆଡ଼େ ଗଲ ?
( ପାର୍ବତୀ ଆସିଲେ )

ପାର୍ବତୀ : କଣ କହୁଚ ?

ସଦାଶିବ : ଆସ । (ଡାକିଲେ) ନରୁ—ନରୁ । (ନରୁ ଆସିଲା)

ନରୁ : କଣ ବାପା ?

ସଦାଶିବ : କାନ୍ଦୁଥିଲୁ ତ ?

ନରୁ : କାନ୍ଦିବ କାହିଁକି ?

ସଦାଶିବ : ଏଇତ, ଏ ଯାଏଁ ଲୁହର ଦାଗ ଲିଭିନି । ଛି, ମା ! ଯାହା ହେଉଚି ତୋର ଭଲ ପାଇଁତ ହେଉଚି । ଏଇ ଶାଢ଼ିଟି ପିନ୍ଧିଛୁ ତ । ହଁ ମା—ଏ ଶାଢ଼ିଟି ତତେ ବେଶ୍ ଦେଖାଯାଏ । କାହା ଭାଗ୍ୟରେ ଅଛୁ କେଜାଣି···ତୋ ପରି ରତ୍ନକୁ ତା' ଘରକୁ ନେବ !

ନରୁ : ମତେ ଆଉ କଣ କହିବ ବାପା ?

ସଦାଶିବ : ହଁ ମା—ଏଇ ଚଷମାଟା—କେମିତି ହୋଇଚି କହିଲୁ ? ତୋ ପସନ୍ଦକୁ ଆସୁଚି ? (ନରୁ ଚଷମା ନେଲା)

ନରୁ : ଭଲ ହୋଇଚି ତ—ସୁନ୍ଦର ହୋଲଡ୍ ଗୋଲଡ୍ ଫ୍ରେମ୍ ! କାହାର ଏ ଚଷମା ? ବୋଉର ? ବୋଉ ଆଖି କଣ ଖରାପ ହେଲାଣି ?

ପାର୍ବତୀ : ମୋ ଆଖି କାହିଁକି ଖରାପ ହେବ ? ତୋ'ର ବାପାଙ୍କ ଆଖି ଖରାପ ହୋଇଥିବ । ହଇଓ, ତମର ପାଇଁ ଏ ଚଷମା ଆସିଚି ? ତମ ଆଖି କଣ···

ସଦାଶିବ : ଓହୋ—କାହାର ଆଖି ଖରାପ ହୋଇନି—ଆଖି ପାଇଁ ଏ ଚଷମା ଆସିନାହିଁ । ତୁ କହିଲୁ ନରୁ, ତୋ' ମନକୁ ଏ ଚଷମାଟା ପାଉଚି କି ନାହିଁ ?

ନରୁ : କହିଲି ତ, ଚଷମାଟା ବେଶ୍ ସୁନ୍ଦର ହୋଇଚି ।

ସଦାଶିବ : ଟିକିଏ ପିନ୍ଧିକରି ଦେଖିଲୁ ମା—ତୋ' ମୁହଁକୁ କେମିତି ଦେଖା ଯାଉଛୁ । ( ନରୁ ଚଷମା ପିନ୍ଧିଲା । ) ବାଃ—ବାଃ—ବାଃ—କି ସୁନ୍ଦର ! ଦେଖୁଚ ପାର୍ବତୀ, ଚଷମାଟା ନରୁକୁ କି ସୁନ୍ଦର ମାନୁଚି ! ଥାଉ ମା, ଥାଉ—ପିନ୍ଧିଥା ।

ନରୁ : ପିନ୍ଧିଥିବ ? କାହିଁକି ବାବା ? ମୁଁ ଚଷମାଟା କାହିଁକି ପିନ୍ଧିବି ?

ସଦାଶିବ : କାହିଁକି ଆଉ କଣ ? ଆଖିକି ସୁନ୍ଦର ଦିଶିଲା, ପିନ୍ଧିବୁ । ଆଜି କାଲି ତ ଇଏ ଗୋଟାଏ ଫେସନ୍ ହେଲାଣି । ସେମାନେ ଆସି ଦେଖିବେ ମୋ ଝିଅ କେମିତି ଚଷମା ଦେଇଚି !

ନରୁ : ମୁଁ ବୁଝିଛି ବାପା ତମର ଉଦ୍ଦେଶ୍ୟ—
ସଦାଶିବ : ତୁ ଯେବେ ବୁଝିଥାଉ ମା—ମୋର ଆଉ କଣ କହିବାର ଅଛି ?
ନରୁ : ଏମିତି ଭାବରେ ଏ ସବୁ ପାଗଳାମିକୁ ପ୍ରଶ୍ରୟ ନ ଦେଲେ କଣ ଚଳନ୍ତା ନାହିଁ ?
ସଦାଶିବ : ଦେଖ୍ ମା, ତୋର ଶିକ୍ଷା ଅଛି, ବୁଦ୍ଧି ଅଛି । ଜୋର୍‌କରି କୌଣସି କାମ ମୁଁ କରାଇ ନେବାକୁ ଚାହେଁନା ।
ଡାକ୍ତର : ( ବାହାରୁ ) ସଦାଶିବବାବୁ !
ସଦାଶିବ : ଏଇ ସେମାନେ ଆସିଗଲେ । …ହରହେ, ବିପଦବାରଣ…

[ ପାର୍ବତୀ ଓ ନରୁ ଭିତରକୁ ଚାଲିଗଲେ । ଟିକିଏ ପରେ ଡାକ୍ତରଙ୍କ ସହିତ ଆସିଲେ ରାଧାମୋହନ ଓ ଆନନ୍ଦ । ]

ଡାକ୍ତର : ସଦାଶିବ, ଏଇ ହରଚନ୍ଦ୍ର ପିତରଲା ରାଧାମୋହନ ବାବୁ…
ସଦାଶିବ : ନମସ୍କାର ଆଜ୍ଞା !
ରାଧାମୋହନ : ନମସ୍କାର…ନମସ୍କାର ।
ସଦାଶିବ : ଆସନ୍ତୁ ଆଜ୍ଞା—ବସିବା ହୁଅନ୍ତୁ । ( ଡାକଲେ ) ଆରେ ଚନ୍ଦ୍ରା !
ରାଧାମୋହନ : ବ୍ୟସ୍ତ ହୁଅନ୍ତୁ ନାହିଁ ସଦାଶିବ ବାବୁ—ଇସ୍ଟେ ତ ମୋର ଘର ପର ।
ସଦାଶିବ : ମୋର ଆଜ ବହୁଭାଗ୍ୟ !! ( ଚାକର ଆଣି ପାନ ସିଗ୍ରେଟ୍ ରଖିଗଲା )
ରାଧା : ବାଃ, ବେଶ୍ ପବନ ତ ଏ ଘରକୁ ହେଉଚି ! ସେ'କ'ଣ ସଦାଶିବ ବାବୁ, ଗୋଟାଏ ବାହା ଘରର ପାନ ସିଗ୍ରେଟ୍ ଆପଣ ଯୋଗାଡ଼ କରିଚନ୍ତି । ବସନ୍ତୁ ଡାକ୍ତର ବାବୁ । ବସ ବାବୁ ତମେ ବସ । ବୁଝିଲେ ଡାକ୍ତର ବାବୁ, ଏ ହେଉଚନ୍ତି ଆମ ବାବୁଙ୍କର ବନ୍ଧୁ । ୟାଙ୍କ ମତାମତ ଉପରେ—ସେ' କଣ—ସଙ୍ଗେ ସଙ୍ଗେ ଚା'… ( ଚା' ଆସିଲା )
ସଦାଶିବ : ନାହିଁ ଆଜ୍ଞା—ଏ ସବୁ ତ ମାମୁଲି କଥା ।
ରାଧା : ଆଚ୍ଛା ଆଚ୍ଛା, ଚା' ଖିଆଯାଉ ଆଉ ସଙ୍ଗେ ସଙ୍ଗେ…ହିଁ ଶୁଣନ୍ତୁ ସଦାଶିବ ବାବୁ, ମୁଁ ଏଠି ଅନ୍ୟ କୌଣସି ପ୍ରସଙ୍ଗ ଉଠାଇବାକୁ ଚାହେଁନା । ମୁଁ ଆପଣଙ୍କର ଓ ଆପଣଙ୍କର ବଂଶ ପରମ୍ପରାର ପରିଚୟ ପାଇଛି । ମୁଁ ଖାଲି ଝିଅଟିକୁ ଦେଖିବାକୁ ଚାହେଁ । କଣ କହୁଚନ୍ତି ଡାକ୍ତର ବାବୁ ?
ଡାକ୍ତର : ହିଁ, ଯାଅ ସଦାଶିବ, ନରୁକୁ ଏଠିକି ଆଣ…ହିଁ ଯାଅ । ( ସଦାଶିବ ଭିତରକୁ ଗଲେ ) ବୁଝିଲେ ଆଜ୍ଞା—ନରୁକୁ ଦେଖି ଆପଣ ସନ୍ତୁଷ୍ଟ ହେବେ

ନିଷ୍ପନ୍ନ । ଆଉ ଅନ୍ୟାନ୍ୟ କଥା ମାନେ, ତା'ର ଭଲ ମନ୍ଦ ଗୁଣ—ଘରକରଣା ବୃଦ୍ଧି ସେ ସବୁତ ଆପଣ ବଳେ ଜାଣିବେ, କହ ଲାଭ କଣ ?

( ସଦାଶିବ ସହିତ ନିରୁ ଆସିଲା । ତା' ଆଖିରେ ଚଷମା )

ରାଧା : ଏଇତ ଆସ ମା, ଆସ—ବସ । ମା'ତ ମୋର ସାକ୍ଷାତ୍ ଲକ୍ଷ୍ମୀ । ହୁଁ, କୁହତ ମା' ତମ ନାଁ କଣ ?

ନିରୁ : ନିରୁପମା ।

ରାଧା : ନିରୁପମା ! କଣ ପଢ଼ୁଚ ?

ନିରୁ : ବି. ଏ. ।

ରାଧା : ବେଶ୍—ବେଶ୍ । ଆଉ କଣ ସଦାଶିବ ବାବୁ—ବେଶ୍ ଝିଅଟି ଆପଣଙ୍କର । ମୁଁ ଖୁସି । ହଁ, ତମେ ଯାଅ ମା' ଯାଅ । ଆଚ୍ଛା ଟିକିଏ ଶୁଣ···ତମେ ଚଷମା ଦେଇଛ କାହିଁକି କୁହତ ? କୁହ ! ( ନିରୁ କିଛି କହନ୍ତି ନ ଥାଏ )

ଡାକ୍ତର : ସେ କିଛି ନୁହଁ ରାଧାମୋହନ ବାବୁ—ଚଷମା ସେ ଏମିତି ଦେଇଚି ।

ରାଧା : କ'ଣ ଆଖି କିଛି ଖରାପ ଅଛି ?

ଡାକ୍ତର : ଆଖି ? ନା ସେମିତି କିଛି ନୁହେଁ । ଏଇ ସାମାନ୍ୟ···

ରାଧା : ବାଃ ! ଆପଣ ଡାକ୍ତର ହୋଇ ସାମାନ୍ୟ ବୋଲି କହୁଚନ୍ତି ! ଏଇ ପିଲାଦିନୁଁ ଯଦି ତା ଆଖି ଖରାପ ହୁଏ···ସଦାଶିବ ବାବୁ ଚାଲି ଯାଉଚନ୍ତି ଯେ !

ସଦାଶିବ : ମୁଁ ଆସୁଚି ଆଜ୍ଞା ! (ଭିତରକୁ ଚାଲିଗଲେ)

ରାଧା : ସଦାଶିବ ବାବୁ—ଏଣେ ଟିକିଏ ଆସନ୍ତୁ । ହଁ ମା—ଚଷମାଟା ଖୋଲି ଏଇ କାଗଜଟି ପଢ଼ିଲ । ବଡ଼ ମୁସ୍କିଲ କଥା—ଆଖିର ଦୋଷ କାହିଁକି ରହିଲା ! ହଁ ମା, ଚଷମାଟା ଖୋଲିଦିଅ ।

ସଦାଶିବ : ହରେହେ ବିପଦ ବାରଣ, ତମେଇ ଭରସା ! ( ଗୁଣୁ ଗୁଣୁ ହୋଇ ସଦାଶିବ ଆସିଲେ )

ରାଧା : ଚଷମାଟା ମତେ ଦେଲ ମା···ଏଇଟାକୁ ତମେ ପଢ଼ ।

ନିରୁ : (କାନ୍ଦପକାଇଁ) ମିଛ—ସବୁ ମିଛ ମୋ ଆଖି ମୋଟେ ଖରାପ ନୁହେଁ ।

ରାଧା : ଆଖି ଖରାପ ନୁହେଁ ! ତେବେ ତ ଭଲ କଥା । କିନ୍ତୁ ତମେ କାନ୍ଦୁଚ କାହିଁକି ? କଣ ହେଲା ତମର ? ଆଚ୍ଛା, ଆଚ୍ଛା, ତମେ ଯାଅ, ଭିତରକୁ ଯାଅ । ( ନିରୁ ଭିତରକୁ ଗଲା ) ସଦାଶିବ ବାବୁ, କଥା କଣ କୁହନ୍ତୁ ତ ? ମା' ମୋର କାନ୍ଦିଲା କାହିଁକି ? ମୋର କଣ କିଛି ବ୍ୟବହାର ଭୁଲ୍‌ହେଲା ?

ସଦାଶିବ : ନାହିଁ ଆଜ୍ଞା, ଭୁଲ ଆପଣଙ୍କର ନୁହେଁ, ଭୁଲ ମୋର ।

ରାଧା : ଆପଣଙ୍କର ଭୁଲ ! ମୁଁ ତ କିଛି ବୁଝିପାରୁନ !

ସଦାଶିବ : ନରୁର ନାକର ଦୋଷଟା ଢାଙ୍କିବା ପାଇଁ ମୁଁ ତାକୁ ଚଷମା ପିନ୍ଧିବାକୁ ଦେଇଥିଲି ।

ରାଧା : ନାକର ଦୋଷ ! ନାକର ଦୋଷ ପୁଣି କଣ ? ହଇ ହେ ଆନନ୍ଦ ବାବୁ—କଥା କଣ ?

ଆନନ୍ଦ : (ଗୁପାଗଳାରେ) ନରୁର ନାକଟା ସାମାନ୍ୟ ଚେପ୍‌ଟା···

ରାଧା : ଏଁ ! ନାକଟା ଟିକିଏ···କାଇଁ ମୁଁ ତ ସେମିତି କିଛି ଲକ୍ଷ୍ୟ କରିପାରିନ ! ତେବେ ଏଇ କଥାକୁ···(ହୋ-ହୋ କରି ହସିଉଠିଲେ) ଆପଣ ଧନ୍ୟ ସଦାଶିବବାବୁ ! କଣ ଯେ ମୁଁ ଆପଣଙ୍କୁ କହିବି ? କିନ୍ତୁ ଗୋଟାଏ ମଜା କଥା ଶୁଣନ୍ତୁ—ମୋର ଏଇ ପୁଅ ସୁକାନ୍ତ, ଯାହାପାଇଁ ମୁଁ ଆଜି ଏଠିକି କନ୍ୟା ଦେଖି ଆସିଚି—ତାର ଜିଦ୍ଦି କଣ ଜାଣନ୍ତି ? ଖବରକାଗଜରେ ବିଜ୍ଞାପନ ଦେଲା ଯେ ସେ ବନ-ନାସିକା କନ୍ୟାକୁ ବିବାହ କରିବ ।

ସଦାଶିବ : ବନ-ନାସିକା କନ୍ୟା !! ସେ ପୁଅ ଆପଣଙ୍କର ?

ରାଧା : ହଁ ଆଜ୍ଞା—ମୋର ପୁଅ ସେ । କିନ୍ତୁ ବିଜ୍ଞାପନର ଫଳ କଣ ହେଲା ସେ କଥା ତାଙ୍କ ବନ୍ଧୁ ଏଇ ଆନନ୍ଦବାବୁଙ୍କ ମୁହଁରୁ ଶୁଣନ୍ତୁ ।

ଆନନ୍ଦ : ବିଜ୍ଞାପନ ପଢ଼ି ଅନେକ ଝିଅ ତ ବିଦ୍ରୂପ କରି ଚିଠି ଲେଖିଲେ, ଶେଷକୁ ଜଣେ ବନବାଳା ସୁକାନ୍ତ ଉପରେ ରେଜେଷ୍ଟ୍ରି ନୋଟିସ୍ ଜାରି କଲେ । ନୋଟିସ୍‌ର ମର୍ମ ହେଉଚି ଏଇ ଯେ ବନବାଳାଙ୍କ ନାକର ସୁଯୋଗ ନେଇ ସୁକାନ୍ତ ସେଥିରୁ ଲାଭ ଉଠାଉଚନ୍ତି ।

ଡାକ୍ତର : ତା'ପରେ ?

ରାଧା : ତା'ପରେ ସବୁ ଅଣ୍ଡା । ବାବୁଙ୍କର ବନ-ନାସିକା ସ୍ୱପ୍ନ ଏଇଠୁ ଭୁଶୁଡ଼ିଲା । ତା'ପରଠୁଁ ସୁକାନ୍ତ ପାଇଁ କନ୍ୟା ଠିକ୍ କରିବାର ଦାୟିତ୍ୱ ରହିଲା ମୋ' ଉପରେ ଓ ତାର ଏଇ ବନ୍ଧୁ ଆନନ୍ଦଙ୍କ ଉପରେ । ନରୁର ସଦ୍‌ଗୁଣ ସବୁ ଶୁଣି ମୁଁ ଏଠିକି ଧାଇଁ ଆସିଲି । ଅଥଚ···

ସଦାଶିବ : ଅଥଚ କି ଯୋଗାଯୋଗ ଦେଖନ୍ତୁ ତ ! ଭଦ୍ରଲୋକଠାରୁ ସୁକାନ୍ତବାବୁଙ୍କର ଏଇ ବନ-ନାସିକା ପଣ କଥା ଶୁଣି ନରୁ ପାଇଁ ମୁଁ ହତାଶ ହୋଇପଡ଼ିଥିଲି । କିନ୍ତୁ ମୁଁ କଣ ଜାଣିଥିଲି ଯେ ସେଇ ସୁକାନ୍ତବାବୁଙ୍କ ବାପା ରାଧାମୋହନ କାନୁନ୍‌ଗୋ କନ୍ୟା ଦେଖି ଆସିବେ !

ରାଧା : କିନ୍ତୁ ସଦାଶିବବାବୁ, ସୁକାନ୍ତ ପରି ଆପଣ ମଧ୍ୟ କଣ ପାଗଳ ହୋଇଥିଲେ ? ଏମିତି ଲକ୍ଷ୍ମୀ ପ୍ରତିମା ଝିଅକୁ ଆପଣ ଗୋଟାଏ ଚଷମା ପିନ୍ଧାଇ—ଛି—ଛି···

କିଏ ଆପଣଙ୍କୁ ଏ ବୁଦ୍ଧି ଦେଲା ? ଆପଣଙ୍କ ପରି ସାଦାସିଧା ଲୋକର ତ କାମ ଇଏ ନୁହେଁ ।

[ ଏ ଭିତରେ ଡାକ୍ତର ସନ୍ତର୍ପଣରେ ଉଠି ବାହାରକୁ ଚାଲିଗଲେ । ]

ଆରେ ଡାକ୍ତରବାବୁ, ଚାଲିଯାଉଚନ୍ତି ଯେ ? ଶୁଣନ୍ତୁ...ଏଁ ! ଶୁଣିଲେ ନାହିଁ —ଚାଲିଗଲେ ! ଇଏ ତେବେ କଣ ଆମ ଡାକ୍ତର ବାବୁଙ୍କ ବୁଦ୍ଧି...ଗୁଡ଼ନ୍ତୁ ! ସଦାଶିବବାବୁ, ଚୁପ୍ ହୋଇ ବସିଲେ କାହିଁକି ? ନରୁକୁ ଡାକନ୍ତୁ । ଆଶୀର୍ବାଦ କରିବ ନାହିଁ ? ଡାକନ୍ତୁ ।

[ ସଦାଶିବ ଉଠିଯାଇ ପ୍ରାୟ ସଙ୍ଗେ ସଙ୍ଗେ ନରୁକୁ ଆଣି ଆସିଲେ ]

ଆ' ମା, ଆ । (ମୁଦି ପିନ୍ଧାଇଦେଇ) ମୁଁ କଲ୍ୟାଣ କରୁଚି, ତୋ ମଥାରେ ସିନ୍ଦୂର ଉଜ୍ଜ୍ୱଳ ରହୁ ।...ଆରେ ସେ' କଣ ? ଦୁଆରମୁହଁ ପର୍ଦ୍ଦାଟା ହଲୁଚି କାହିଁକି ? ପର୍ଦ୍ଦା ସେ ପାଖରେ କିଏ ? ସମୂଦୁଣୀ ନା ? ଭିତରକୁ ଆସ । ଆଉ ଗୋଟାଏ ଲୁଚିଲୁଚି କଣ ?

[ ହାତରେ ମିଠେଇ ଥାଳ ଧରି ପାର୍ବତୀ ଆସିଲେ ]

ବାଃ—ବାଃ—ବାଃ—ହାତରେ ମିଠେଇ ଥାଳ ! ପକ୍କା ଗୃହିଣୀ ତୁମେ ! ଆସ ସମୂଦି, ଆନନ୍ଦବାବୁ, ଆଉ ଡେରି କାହିଁକି ? ବଡ଼ଲୋକମାନେ କହି ଯାଇଚନ୍ତି—'ମଧୁରେଣ ସମାପୟେତ୍' ।

□□

## ଚରିତ୍ର

ବିକାଶ—ଶିକ୍ଷିତ ସଂଭ୍ରାନ୍ତ ଯୁବକ

ରଞ୍ଜନ—ଯୁବକ : ବିକାଶର କର୍ମସଙ୍ଗୀ

ଶଶିକାନ୍ତ—ବିକାଶର ସମବୟସ୍କ ବନ୍ଧୁ : ଡାକ୍ତର

ବାପା—ବିକାଶର ବାପା

ବୋଉ—ବିକାଶର ବୋଉ

ସୀମା—ତରୁଣୀ : ବିକାଶର ପ୍ରିୟତମା ବାନ୍ଧବୀ

[ କଟକ ସହରର ଏକ ଦୁଇ ମହଲା କୋଠା । ଉପର ମହଲାରେ ପ୍ରକାଶର ନିଜସ୍ୱ ବାସ-କକ୍ଷ : ସୁସଜ୍ଜିତ । ବାହାରୁ ଦରଜା ଖୋଲି ପ୍ରକାଶ ଆସିଲା । ସମ୍ପୂର୍ଣ୍ଣ ଚିନ୍ତିତ । ଏଇ ମାତ୍ର କୌଣସି ଦୂର ସ୍ଥାନରୁ ସେ ଫେରିଛି । ଆସିବା କ୍ଷଣି ସେ ଟେଲିଫୋନ ଉଠାଇ ଡାଏଲ୍ କଲା । ତା'ପରେ ଅନୁଚ୍ଚ ସ୍ୱରରେ "ଓ, ଏନ୍‌ଗେଜ୍‌ଡ୍" କହି ରିସିଭର ରଖି ଦେଲା । ···କିଛିଏ ପରେ ଆସିଲା ରଞ୍ଜନ । ସମୟ-ପୂର୍ବାହ୍ନ ପ୍ରାୟ ଏଗାରଟା ]

ପ୍ରକାଶ : ରିକ୍‌ସା ବାଲାକୁ ପଇସା ଦେଇ ଦେଲ ରଞ୍ଜନ ?

ରଞ୍ଜନ : ସାର୍ ।

ପ୍ରକାଶ : ଡାକ୍ତର ବାବୁ ଆସିଥିଲେ ?

ରଞ୍ଜନ : ନା ।

ପ୍ରକାଶ : ଫୋନ୍ ?

ରଞ୍ଜନ : ନା । ସେ'ତ ଜାଣନ୍ତି ଆପଣ ଗାଁକୁ ଯାଇଚନ୍ତି ।

ପ୍ରକାଶ : ହୁଁ । ···ତମେ ତ ହାସ୍‌ପିଟାଲ୍ ଆଡ଼େ ଯାଇ ନ ଥିବ ?

ରଞ୍ଜନ : ନା ସାର୍ । ଆପଣ ତ କିଛି କହି ନ ଥିଲେ । ··· ··· ଯିବା କ'ଣ ଦର୍କାର ଥିଲା ?

ପ୍ରକାଶ : ଏଁ ? ······ନା-ନା ।

ରଞ୍ଜନ : ଆପଣ ତ କାଲି ଘରକୁ ଯିବା ପୂର୍ବରୁ ହାସ୍‌ପିଟାଲ୍ ଯାଇଥିଲେ ।

ପ୍ରକାଶ : ହଁ । ···ଏଇ ପାଞ୍ଚ ସାତ ଦିନ ଭିତରେ ତ ଡିସ୍‌ଚାର୍ଜ କରି ଦବାର କଥା ।

ରଞ୍ଜନ : ଆଉ ତେବେ ଭୟର କାରଣ କିଛି ନାହିଁ ?

ପ୍ରକାଶ : ଡାକ୍ତରମାନେ ତ ସେଇଆ କହୁଚନ୍ତି । ···ହଁ, ରଞ୍ଜନ, ତମେ ଟିକିଏ ଫୋନ କର ତ ।

ରଞ୍ଜନ : ହାସପିଟାଲ୍‌କୁ ?

ପ୍ରକାଶ : ନା । ହାସ୍‌ପିଟାଲ୍ ମୁଁ ନିଜେ ଯିବି । ତମେ କେ. ଏମ୍. ଗ୍ୟାରେଜ୍‌କୁ ଫୋନ୍ କର । ଆସିଲା ବେଳେ ଗାଡ଼ିଟା ଗ୍ୟାରେଜ୍‌ରେ ଦେଇ ଆସିଚି ।

ପଙ୍କଚର୍ ହୋଇଚ, ସାଙ୍ଗେ ସାଙ୍ଗେ ପଠାଇ ଦବାକୁ କହ—ଗାଡ଼ି ଆସିଲେ ମୁଁ ହସ୍‌ପିଟାଲ୍ ଯିବି ।

ରଞ୍ଜନ : ଖାଇ କରି ଯିବେ ତ ?

ବିକାଶ : ନା । ···ମୁଁ ମୁହଁ ହାତ ଧୁଏ—ତମେ ଫୋନ୍ କର ।

(ଭିତରକୁ ଗଲା)

ରଞ୍ଜନ : ( ଫୋନ୍ ଡାଏଲ୍ କରି )···କେ. ଏମ୍. ଗ୍ୟାରେଜ୍ । ···ମୁଁ ରଞ୍ଜନ କହୁଚି···ନମସ୍କାର । ···ଆମ ଗାଡ଼ି ? ···କାମ ଚାଲିଚି ? ···କେତେ ଡେରି ହବ ଆଜ୍ଞା ? ···କେତେ ? ···ଅଧଘଣ୍ଟାଏ ? ···ଶୁଣନ୍ତୁ—ଦୟା କରି ଯେତେ ଚଞ୍ଚଳ ପାରନ୍ତୁ ପଠାନ୍ତୁ—ବିକାଶ ବାବୁ ଅପେକ୍ଷା କରି ବସିଚନ୍ତି । ···ହଁ···ହଁ···ରହିଲି-ନମସ୍କାର ।

( ଚା' ନେଇ ଶାମା ଆସିଲା )

ଶାମା । ଚା' ଆଣିଚୁ ?···ଚା' ରଖି ଦେଇ ଯା'—ପୂଜାରୀକୁ କହିବୁ, ବାବୁ ହାସ୍‌ପିଟାଲ ଯାଉଚନ୍ତି—ଫେରିଲେ ଖାଇବେ—ଟିକିଏ ଡେରି କରି ରୋଷେଇ କରିବ । (ମୁହଁ ହାତ ଧୋଇ ବିକାଶ ଆସିଲା । ଶାମା ଚାଲିଯାଇଚି )

ବିକାଶ : ଫୋନ୍ କଲ ରଞ୍ଜନ ?

ରଞ୍ଜନ : ଅଧ ଘଣ୍ଟାଏ ଭିତରେ ଦବ କହୁଚି ।

ବିକାଶ : ଅଧ ଘଣ୍ଟାଏ ?

ରଞ୍ଜନ : ସାର୍ ?

ବିକାଶ : ( ଚା' ଖାଉ ଖାଉ ) ତମେ ତ କାଲି ଡମ ଘରକୁ ଯାଇ ନ ଥିବ ରଞ୍ଜନ ?

ରଞ୍ଜନ : ଆପଣ ନ ଥିଲେ—ମୁଁ ଯାଇଥା'ନ୍ତି କେମିତି ?

ବିକାଶ : ହୁଁ ।···

ରଞ୍ଜନ : ଆପଣ ପରା ଆପଣଙ୍କ ବାପା ବୋଉଙ୍କୁ ଏଠିକି ନେଇ ଆସିବେ କହୁଥିଲେ ?

ବିକାଶ : ବାପା···ବୋଉ ?

ରଞ୍ଜନ : କହୁଥିଲେ—ସାଙ୍ଗରେ ନେଇ ଆସିବେ ।

ବିକାଶ : ମୋ' କଥା ଶୁଣି ବାପାବୋଉ କଣ କହିଲେ ଜାଣ ? କହିଲେ···ତୁ ତୋ' ବ୍ୟବସାୟ୍ପପତ୍ର ସବୁ ବନ୍ଦ କରି ଦେଇ ଘରକୁ ଚାଲିଆ—

ରଞ୍ଜନ : ବ୍ୟବସାୟ୍ପପତ୍ର ବନ୍ଦ କରି ଦେବେ !!

ବିକାଶ : ହୁଁ ।

ରଞ୍ଜନ : ଏତେ ଭଲ ବ୍ୟବସାୟ—ଏତେ ସୁନାମ···

ବିକାଶ : ବାପାବୋଉ ବର୍ତ୍ତମାନ ଏସବୁର ବିଗ୍ରହ କରିବେ ବୋଲି ତୁମେ ଆଶା କରୁଚ ରଞ୍ଜନ ?

ରଞ୍ଜନ : ଏଇ ସାମାନ୍ୟ କଥା ପାଇଁ···

ବିକାଶ : ସାମାନ୍ୟ କଥା ?

ରଞ୍ଜନ : ନୁହେଁ ? ଆପଣ କୋଉଠି ବିବାହ କରିବେ—କାହାକୁ ବିବାହ କରିବେ—ଏଇଟା ଗୋଟାଏ ସମସ୍ୟା ହୋଇ ପାରେନା । ଆପଣଙ୍କ ଶିକ୍ଷା-ଦୀକ୍ଷା-ବିଗ୍ରହ-ବୁଦ୍ଧି ଯେକୌଣସି ଦିଗରୁ ଦେଖିଲେ ବି ଏ ଦାୟିତ୍ୱ ଆପଣଙ୍କର—କେବଳ ଆପଣଙ୍କର । ଏଥିରେ କାହାର ବାଧା ଦେବା କଥା ନୁହେଁ । ଅଥଚ ଆପଣଙ୍କ ବାପାବୋଉ···

ବିକାଶ : ଶୁଣ ରଞ୍ଜନ । ମୋ' ବ୍ୟବସାୟରେ ତୁମେ ମୋର କର୍ମଚାରୀ ହେଲେ ବି ବ୍ୟକ୍ତିଗତ ଜୀବନରେ ମୁଁ ଜାଣେ ତୁମେ ମୋର ବନ୍ଧୁ । ସେଥିପାଇଁ ତୁମ ସହିତ ଏ ଆଲୋଚନାର ମୂଲ୍ୟ ରହିଚି ।

ରଞ୍ଜନ : ଆପଣ ଯଦି ଭାବୁଥା'ନ୍ତି ସାର୍···

ବିକାଶ : ଶୁଣ । ସୀମା ସହିତ ବିବାହ ପ୍ରସ୍ତାବରେ ବାପାବୋଉ କାହିଁକି ରାଜି ନୁହନ୍ତି କହି ପାରିବ ?

ରଞ୍ଜନ : ମୁଁ···ମୁଁ ଠିକ୍ ଜାଣେ ନା । ···ହୁଏତ ଏଇଥି ପାଇଁ ଯେ ସୀମା ଦେବୀ ଖୁବ୍ ଧନୀ ସମ୍ଭ୍ରାନ୍ତ ପରିବାରର ଝିଅ ନୁହନ୍ତି—ଆଉ ତାଙ୍କର ବର୍ତ୍ତମାନ ନିଜର ବୋଲି ପ୍ରାୟ କେହି ନାହାନ୍ତି । କିନ୍ତୁ ସୀମା ଦେବୀଙ୍କ ପରି···

ବିକାଶ : ସୁନ୍ଦରୀ—ସର୍ବଗୁଣସମ୍ପନ୍ନା ଝିଅ ! ···ଏଇଆ ତୁମେ କହିବାକୁ ଚାହୁଁଚ ?

ରଞ୍ଜନ : ହଁ ।

ବିକାଶ : କିଛି ନୁହେଁ । ସୀମା ସୁନ୍ଦରୀ କି ଅସୁନ୍ଦରୀ—ଧନୀ କି ଦରିଦ୍ର—ଶିକ୍ଷିତା କି ଅଶିକ୍ଷିତା—ଏ ସବୁ କଥା ସେମାନଙ୍କର ବିଚାର ବିବେଚନାର ବାହାରେ । ସେମାନଙ୍କର ମାତ୍ର ଗୋଟିଏ ବିଗ୍ରହ—ଗୋଟିଏ ଯୁକ୍ତି ଯେ ସେମାନେ ହେଉଚନ୍ତି ମୋର ବାପାବୋଉ···ଆଉ ମୁଁ ସେମାନଙ୍କର ପୁଅ । ବାସ୍ । ଏଇଠି ସବୁ କଷ୍ଟବିର ଶେଷ । ଏହା ଉପରେ ଆଉ କୌଣସି ସମସ୍ୟା ନାହିଁ—ରହି ପାରେନା ।

ରଞ୍ଜନ : ଆପଣ ତା' ହେଲେ ଆଜି ଭଲ ମନରେ ଘରୁ ଫେରି ନାହାନ୍ତି ?

ବିକାଶ : ଜୀବନରେ ମୁଁ ବିଦ୍ରୋହ କରି ଶିଖିନି ରଞ୍ଜନ—ମୋ ଶରୀର ବିରୁଦ୍ଧରେ ବି ନୁହେଁ । ସେମାନେ ତ ମୋ' ଜନ୍ମଦାତା । ସେଥିପାଇଁ ମୋ' ମନର·

ଭଲମନ୍ଦର ଖବର ଜାଣିବା ପାଇଁ ସେମାନଙ୍କୁ ଅବକାଶ ପର୍ଯ୍ୟନ୍ତ ମୁଁ ଦେଇନ ।

ରଞ୍ଜନ : ଆପଣଙ୍କ ବାପାବୋଉ ଯଦି ଆପଣଙ୍କ ମନ କଥା ନ ବୁଝିବେ···

ବିକାଶ : ଏକଥା ତୁମେ କହୁଚ—ହୁଏତ ମୁଁ କହିବି—ମୋ' ପରି ଅନ୍ୟମାନେ କହିବେ । କିନ୍ତୁ ସେମାନେ ବୁଝାନ୍ତୁ—ନା, ଏକା ସେମାନେ ନୁହନ୍ତି—ଏ ଦୁନିଆର ସବୁ ବାପ ମା ବୋଧହୁଏ ବୁଝାନ୍ତି ତାଙ୍କ ମନ କଥା ସେମାନଙ୍କ ପୁଅଝିଅ ବୁଝିନ୍ତୁ । ଏଇଟା ସେମାନଙ୍କର ନିର୍ଦ୍ଦେଶ ନୁହେଁ କି ଆଦେଶ ନୁହେଁ—ଦାବୀ । ଏ ଦାବୀ ପଛରେ ଯେତେ ଯୁକ୍ତି ଅଛି—ଯେତେ ଆଦର୍ଶ ଅଛି··· ତା'ଠୁଁ ବେଶୀ ରହିଚି ଆବେଦନ—ନିବେଦନ ଆଉ ସେଣ୍ଟିମେଣ୍ଟ୍ । ···କିଏ ତାକୁ ଅସ୍ୱୀକାର କରିବ ?

ରଞ୍ଜନ : ତା'ହେଲେ ସାର୍···

ବିକାଶ : କଣ ?···କଣ ତୁମେ କହୁଚ ?

ରଞ୍ଜନ : ଆପଣଙ୍କ ବାପାବୋଉଙ୍କ କଥା ତା' ହେଲେ ଆପଣ ମାନି ନେବେ ? ସୀମା ଦେବୀଙ୍କୁ ଆପଣ ବିବାହ କରିବେ ନାହିଁ ?

ବିକାଶ : ତୁମେ ବୋଧହୁଏ ଜାଣ ନାଇଁ ରଞ୍ଜନ ଯେ, ସୀମା ସହିତ ମୋର ବିବାହ ହେବ, ଏ ପ୍ରସ୍ତାବ ଆମ ଘରେ କେହି ଉଠାଇନ ।···ନା ମୁଁ···ନା ବାପା କି ବୋଉ ।

ରଞ୍ଜନ : କିନ୍ତୁ···

ବିକାଶ : ସୀମା ବର୍ତ୍ତମାନ ବେମାର—ରୋଗଟା ମାରାତ୍ମକ—ଏ ଅବସ୍ଥାରେ ତା'ର ସବୁ ଦାୟିତ୍ୱ ମୁଁ ନେଇଚି—ମୋର ଚେଷ୍ଟାରେ ସେ ହୁଏତ ଭଲ ହୋଇ ଯାଇ ପାରେ । ଏତିକି । ଏତିକି କଥା ପରେ ମତେ ଘରୁ ଫେରି ଆସିବାକୁ ପଡ଼ିଲା ।

ରଞ୍ଜନ : ଆପଣ ତ କହୁଚନ୍ତି ଏଇ ଅଳ୍ପଦିନ ଭିତରେ ସୀମା ଦେବୀ ହାସ୍ପିଟାଲରୁ ଡିସ୍‌ଚାର୍ଯ ହୋଇ ଆସିବେ ।···ତା' ପରେ ?

ବିକାଶ : ଠିକ୍ ଏଇ କଥା ଚିନ୍ତା କରି ମୁଁ ବାପାବୋଉଙ୍କୁ ଆଣିବାକୁ ଯାଇଥିଲି ।··· କିନ୍ତୁ···ଗାଡ଼ିଟା କେତେବେଳେ ସେ ପଠାଇବ କହିଲ ରଞ୍ଜନ ?

ରଞ୍ଜନ : ଏଇ ଅଧ ଘଣ୍ଟାଏ ଭିତରେ ।

ବିକାଶ : ଡେରି ହୋଇ ଯାଉଚି—ଏଗାରଟା ବାଜିଲାଣି ।

ରଞ୍ଜନ : ମୁଁ ନିକେ ଯିବି ?

ବିକାଶ : ଏଁ ?

ରଞ୍ଜନ : ଗ୍ୟାରେଜ୍‌କୁ ମୁଁ ନିଜେ ଯିବି ?

ବିକାଶ : ନା । ତମେ ବରଂ ତଳେ ଅପେକ୍ଷା କର । ମୋର ଖଣ୍ଡେ ଅଧେ ଚିଠି ଲେଖିବାର ଅଛି ।···

[ରଞ୍ଜନ ତଳକୁ ଗଲା । ଚିଠି ଲେଖିବା ପାଇଁ ଯଥାସ୍ଥାନରୁ କାଗଜ ଓ କଲମ ପ୍ରଭୃତି ଆଣି ବିକାଶ ଚିଠି ଲେଖିଯାକୁ ଉଦ୍ୟତ ହେଲବେଳେ ସୀମା ନିଃଶବ୍ଦରେ ସେ ଘରକୁ ଆସିଲା । ସୀମା···ନିଶ୍ଚିତଭାବେ ସୁନ୍ଦରୀ ତରୁଣୀ । ଦେହରେ କିନ୍ତୁ ରୋଗଜନିତ ଦୁର୍ବଳତା ବିଦ୍ୟମାନ ।···ଏ ପର୍ଯ୍ୟନ୍ତ ରଞ୍ଜନର ଦୃଷ୍ଟି ସୀମା ଉପରେ ପଡ଼ିନି]

ସୀମା : କାହା ପାଖକୁ ଚିଠି ଲେଖୁଚ ?

[ଘର ଭିତରେ ସୀମାକୁ ଦେଖି ବିକାଶ କେବଳ ବିସ୍ମିତ ନୁହେଁ, ଆତଙ୍କିତ ବି ହୋଇ ପଡ଼ିଲା ।]

ବିକାଶ : ସୀ···ମା !

ସୀମା : ଘରକୁ ଯାଇଥିଲ ପରା ? କେତେବେଳେ ଫେରିଲ ? ଏଇ ସାଙ୍ଗେ ସାଙ୍ଗେ ଫେରିଚ ବୋଧେ ?

ବିକାଶ : ସୀମା···ତୁମେ ? ତୁମେ ଏଠି ?

ସୀମା : ଆଉ କୋଉଠିକି ଯାଇଥାନ୍ତି ?

ବିକାଶ : ହସ୍‌ପିଟାଲ୍ ଛାଡ଼ି ତୁମେ ଆସିଲ କେମିତି ? ଏତେ ଚଞ୍ଚଳତା ତୁମର···

ସୀମା : ରୁହ, ମୁଁ ଆଗେ ବସେ । ଭାରି ଦୁର୍ବଳ ଲାଗୁଚି ।

ବିକାଶ : ରୁହ, ଆସ ତୁମେ—ଆସ । ବସ ଏଠି ।

ସୀମା : ନା—ନା—ତୁମ ବିଛଣାରେ ନୁହେଁ । ସିଧା ହସ୍‌ପିଟାଲ୍ ବେଡ୍‌ରୁ ଆସିଚି । ଲୁଗାପଟାର ଅବସ୍ଥା ଦେଖୁଚ ତ ? ସବୁଥିରୁ କି କଦର୍ଯ୍ୟ ଔଷଧ ଗନ୍ଧ ବାହାରୁଚି—ମୋ' ନିଜକୁ ନିଜେ ଘୃଣା କରିବାକୁ ଇଚ୍ଛା ହଉଚି ।···ମୁଁ ବରଂ ଏଇ ସୋଫାରେ ବସୁଚି । (ବସିଲା) ଆଃ ! କି ଆରାମ ଲାଗୁଚି ଏଠି । ମୁଁ ହସପିଟାଲ୍‌ରୁ ଆସିନି ଯେ—ଜେଲ୍‌ଖାନାରୁ ମୁକ୍ତି ପାଇଚି—ଜୀବନର ସବୁ ଜଞ୍ଜାଳରୁ ମୁକ୍ତି ପାଇଚି ।···

ବିକାଶ : ସୀମା !

ସୀମା : ହୁଁ···ଏଥର କୁହ କଣ କହୁଚ ?

ବିକାଶ : ତମେ ଟିକିଏ କଣ ଆଗେ ଖାଅ ।

ସୀମା : ନା—ନା—ମୁଁ କିଛି ଖାଇବି ନାହିଁ ।

ବିକାଶ : ତା' ହେଲେ ଟିକିଏ ଗ୍ଳାସେ କଫି···

ସୀମା : କିଛୁ ନାହିଁ । ମୁଁ କିଛୁ ହେଲେ ଖାଇବି ନାହିଁ । ମୁଁ ଏଠି ଖାଲି ତୁମର ଏ ଘରେ ଟିକିଏ ବସିଲେ ମୋର ଦୁଃଖଶୋକ ସବୁ ଭୁଲିଯିବି ।

ବିକାଶ : ଏତେ ଚଞ୍ଚଳ ତ ତମର ହାସ୍‌ପିଟାଲ୍‌ରୁ ଆସିବାର କଥା ନ ଥିଲା ।

ସୀମା : କାହିଁକି ?

ବିକାଶ : ଡାକ୍ତର କହୁଥିଲେ ।

ସୀମା : କେଉଁ ଡାକ୍ତର ?

ବିକାଶ : ମୁଁ କାଲି ଯେତେବେଳେ ତମ ପାଖକୁ ଯାଇଥିଲି···

ସୀମା : ସେତେବେଳେ ମୋ ଅବସ୍ଥା କଣ ଭଲ ନ ଥିଲା ?

ବିକାଶ : ନା—ନା—ଏ ଭିତରେ ଅବସ୍ଥା ତମର ଭଲ ହିଁ ରହୁଥିଲା । ତେବେ ସେମାନେ କହୁଥିଲେ ହାସ୍‌ପିଟାଲ୍ ଛାଡ଼ିବାକୁ ହୁଏତ ସପ୍ତାହେ ଖଣ୍ଡେ ଡେରି ହୋଇପାରେ ।

ସୀମା : ତା' ଆଗରୁ ଯେତେବେଳେ ହାସ୍‌ପିଟାଲ୍ ଛାଡ଼ିବାକୁ ପଡ଼ିଲା, କଣ ଆଉ କରିଥା'ନ୍ତି କୁହ ?

ବିକାଶ : ତମେ ଆସିଲ କେମିତି ?···କିଏ ଆଣି କଣ ତମକୁ ଏଠି ଛାଡ଼ିଦେଇ ଗଲା ?

ସୀମା : (ହସି) କି କଥା ଯେ ତୁମେ କୁହ ବିକାଶ ? ମୁଁ କଣ କୁନି ପିଲା ହୋଇଚି ମତେ କିଏ ଛାଡ଼ି ଦେଇଯିବ ।···ଏକା ଆସିଲି—ଟାକ୍‌ସିରେ ।

ବିକାଶ : ଆଚ୍ଛା, ଡାକ୍ତର ନଳିନୀକାନ୍ତ ?

ସୀମା : ତମ ବନ୍ଧୁ ?

ବିକାଶ : ହୁଁ, ନଳିନୀକାନ୍ତ ଥିଲେ ତ ?

ସୀମା : ହଁ, ଥିଲେ । ଏତେ ଭଲ ମଣିଷ···

ବିକାଶ : ମଣିଷ ଅପେକ୍ଷା ସେ ଆହୁରି ଭଲ ଡାକ୍ତର ।

ସୀମା : ତାଙ୍କ ଡାକ୍ତରୀ ବିଦ୍ୟା କଥା ସେ ଜାଣନ୍ତି । ହେଲେ ଏତେ ଭଲ ମଣିଷ —ତମେ ଘରକୁ ଯାଇଥିଲ ବୋଲି ପ୍ରତି ପାଞ୍ଚ ଦଶ ମିନିଟ୍‌ରେ ଆସି ମୋ ଖବର ବୁଝି ଯାଉଥାନ୍ତି । କହୁଥାନ୍ତି ବିକାଶ କିଛିକରେ ନାହିଁ—ସବୁ ଦାୟିତ୍ୱ ମୋର ।

ବିକାଶ : ନଳିନୀକାନ୍ତ ତମକୁ ଆଣି ଏଠି ତା' ଗାଡ଼ିରେ ଛାଡ଼ି ଦେଇ ପାରିଥା'ନ୍ତା ।

ସୀମା : କାହିଁକି ? ଦରକାର କଣ ଥିଲା ? ମୁଁ ଏକା ଆସିବାରେ ଅସୁବିଧା କଣ ମୁଁ ଜାଣି ପାରୁନି । କାହିଁକି ସେ ମୋ ପାଇଁ ଏତେ କଷ୍ଟ କରିଥା'ନ୍ତେ !

ବିକାଶ : ସତରେ ସୀମା, ତମେ ହଠାତ୍ ଆସି ମତେ ଏକାବେଳେକେ ଚମକେଇ ଦେଲ !

ସୀମା : (ହସି) ହଠାତ୍ ଆସିଲି !!! ଆସି ନ ଥା'ନ୍ତି କଣ ସବୁଦିନେ ହାସ୍ପିଟାଲରେ ରହୁଥା'ନ୍ତି !! ଆଉ ଆସି ପୁଣି ତମକୁ ଚମକେଇ ଦେଲି !!···କଣ ଯେ ତମେ କୁହ···

ବିକାଶ : ମୁଁ ଠିକ୍ କହୁଚି । ଟାକ୍ସି ଅଟକିଲା—ଟାକ୍ସି ଶବ୍ଦ ମୁଁ ଶୁଣି ପାରିଲି ନାହିଁ ।

ସୀମା : ତା' ହେଲେ କୁହ, ମୁଁ ଟାକ୍ସିରେ ଆସିନି—ହାଓ୍ୱାରେ ଉଡ଼ି ଆସିଚି ।··· ତମେ ତ ମନଧ୍ୟାନ ଦେଇ ଚିଠି ଲେଖୁଥିଲେ—ଶବ୍ଦ ଶୁଣି ଥା'ନ୍ତ କେମିତି ?

ବିକାଶ : ତମେ ଏ ଘରକୁ ଆସିଲ—ମୁଁ ଜାଣି ପାରିଲି ନାହିଁ । କଣ ତମେ ମତେ ଭାବୁଥିବ କେଜାଣି ?

ସୀମା : ଏଥିରେ ଭାବିବାର କିଛି ନାହିଁ । ଆଖିରେ ଦେଖିଲେ ଯେ କେହି ଜାଣିବ—ଚଟାଣରେ ଖୁବ୍ ଦାମିକା ଆଉ ଖୁବ୍ ବହଳ ଗାଲିଚା ବିଛା ହେଇଚି—ହାତୀ ଚାଲିଲେ ବି ଶବ୍ଦ ହବ ନାହିଁ । ମୋର ଓଜନ ତ···କେତେ ? 'ନବେ ପାଉଣ୍ଡ ? ନବେ ପାଉଣ୍ଡ ନା ? ସେଥର ରେଲ୍ ଷ୍ଟେସନରେ ଆମେ ଦୁହେଁ ଓଜନ ନେଇ ଥିଲେ । ଠିକ୍ ମନେ ପଡୁନି କାହାର କେତେ ?

ବିକାଶ : ଶୁଣ ସୀମା ! ତମେ ଏଠିକି ଆସିଲ ବେଳଠୁଁ ଖାଲି ଏଣୁତେଣୁ ବାଜେ କଥା ଗପି ଚାଲିଚ···

ସୀମା : ଭଲ ଲାଗୁଚି । ସତ କହୁଚି ଭାରି ଭଲ ଲାଗୁଚି । ଅନେକ ଦିନ ପରେ ଏଠି ବସି ତମ ସାଥିରେ ଏଣୁତେଣୁ ଗପିବାକୁ ଭାରି ଭଲ ଲାଗୁଚି । (ନମ୍ର ଗଳାରେ) ହଁ ବିକାଶ, ତମ ବନ୍ଧୁ କାହାନ୍ତି ?

ବିକାଶ : କିଏ ? ରଞ୍ଜନ ?

ସୀମା : ହଁ । କାହାନ୍ତି ସେ ?···

ବିକାଶ : ଅଛି ତ ! ତଳେ ଥିବ । ତମେ ଆସିଲ ବେଳେ ଦେଖିନ ତାକୁ ?

ସୀମା : ନ ଦେଖିବା ଭଲ ହେଇଚି । ତାଙ୍କୁ ଦେଖିଲେ ମତେ କାହିଁକି ଭାରି ଆଡ଼ୁଆ ଅଡ଼ୁଆ ଲାଗେ ।

ବିକାଶ : କାହିଁକି ? ଭାରି ଭଦ୍ର ସେ—ଭାରି ଅମାୟିକ ।

ସୀମା : ସେଇକଥା ତ ମୁଁ କହୁଚି । ମୋ' ପ୍ରତି ସେ ଏତେ ଭଦ୍ର ଆଉ ସମ୍ମାନ-ସୂଚକ ବ୍ୟବହାର କରନ୍ତି, ଯେମିତିକି ମୁଁ ହଉଚି ତମର ବିଜିନେସ୍ ଫାର୍ମର ମାଲିକାଣୀ ଆଉ ଏଠି ମାଲିକଙ୍କ ଅପେକ୍ଷା ମୋର କ୍ଷମତା ଢେର୍ବେଶୀ ।

ବିକାଶ : (ହସି) ଓ ଏଇଆ ?
ସୀମା : କାହିଁକି ତାଙ୍କର ଏ ଧାରଣା ?
ବିକାଶ : ଏ ପ୍ରଶ୍ନର ଉତ୍ତର ତମେ ଦେବ ସୀମା—ମୁଁ ନୁହେଁ । ମତେ ତମେ ଏବେ କୁହ, ପ୍ରକୃତରେ ତମ ଦେହ କିପରି ଅଛି ?
ସୀମା : ଦେଖୁଚ ତ ତମ ସାମନାରେ ବସିଚ, ତମ ସାଥିରେ ହସ ଖୁସିରେ କଥାବାର୍ତ୍ତା କରୁଚ ।
ବିକାଶ : କି ଦୁର୍ବଳ ଯେ ତମେ ଦେଖାଯାଉଚ । କାଲି ତମକୁ ମୁଁ ଯାହା ଦେଖିଥିଲି, ତା'ଠୁ ବେଶୀ ରୁଗ୍ଣ—ବେଶୀ ଦୁର୍ବଳ—
ସୀମା : ଏଇ କେତେ ମିନଟ୍ ଆଗରୁ ମୁଁ ଡାକ୍ତରଖାନାର ରୋଗୀ ଥିଲି । ଡାକ୍ତରଖାନାର ରୋଗୀ ସିଏ, ସିଏ କଣ ଦୁର୍ବଳ ନ ହୋଇ ସବଳ ହୋଇ ତମ ପାଖକୁ ଫେରିବ ?
ବିକାଶ : ମୁଁ ଅନ୍ତତଃ ସେଇ ଆଶା କରିଥିଲି । ଆଉ ସପ୍ତାହକ ପରେ ତମେ ଏକାବେଳକେ ସୁସ୍ଥ ହୋଇ ଡାକ୍ତରଖାନାରୁ ଫେରିଥା'ନ୍ତ । ତମକୁ ଦେଖି ଜାଣି ହୁଅନ୍ତା ନାହିଁ ଯେ ତମେ କେବେ ରୋଗୀ ଥିଲ !
ସୀମା : ତା' ପରେ ?
ବିକାଶ : ଏଁ ?
ସୀମା : ମାନିଲି—ମୁଁ ହାସ୍‌ପିଟାଲ୍‌ରୁ ସୁସ୍ଥ ହୋଇ ଫେରନ୍ତି ! ତା' ପରେ ?
ବିକାଶ : ତା' ପରେ···[ ବିକାଶ କିଛି କହି ନ ପାରି କେବଳ ବିସ୍ମୟଭରା ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲା]
ସୀମା : ତା' ପରେ କଣ ମୋର ହୋଇଥା'ନ୍ତା—କୁଆଡ଼େ ମୁଁ ଯାଇଥା'ନ୍ତି···
ବିକାଶ : ସୀମା !
ସୀମା : କଣ ?
ବିକାଶ : ଏକଥା କାହିଁକି କହୁଚ ତୁମେ ? କାହିଁକି ଏ ପ୍ରଶ୍ନ ମତେ ପଚାରିଲ ?
ସୀମା : ପଚାରିଲା ବେଳେ କିଭି ଅଟକାଇଲା ନାହିଁ—ଲଜ୍ଜା ସଙ୍କୋଚ କିଛି ବାଧା ଦେଲା ନାହିଁ—ପଚାରିଲି ।
ବିକାଶ : ଓଃ ! ସୀମା !! ତମ ଭଳି ମୁଁ ଯଦି ଏତିକି ଉଦାର—ଏତିକି ସ୍ପଷ୍ଟବାଦୀ ହୋଇ ପାରନ୍ତି—
ସୀମା : ଜାଣିଛ ତ ତମେ···ତମ ଉପରେ ମୁଁ କେତେ ନିର୍ଭର କରୁଥିଲି ! ରୋଗୀ ହୋଇ ହାସ୍‌ପିଟାଲରେ ଭର୍ତ୍ତି ହେଲି । ହାସ୍‌ପିଟାଲ୍‌ର ଡାକ୍ତର ନର୍ସ ଔଷଧ ଇନ୍‌ଜେକସନ୍ ବାହାରେ ଯେ ଜଣେ ଅଛି—ଆଉ ତା' ଉପରେ ନିର୍ଭର କରି ରହିବାରେ ଯେ ମୋର କି ସନ୍ତୋଷ—କି ସାନ୍ତ୍ୱନା···

ବିକାଶ : (ବାଧା ଦେଇ) ଶୁଣ ସୀମା—ଶୁଣ ! ତମେ ଏଠିକି ଆସିଲ ବେଳଠୁଁ ସବୁ ଯେମିତି ଗୋଟାଏ ପ୍ରହେଳିକା···ଗୋଟାଏ···ଗୋଟାଏ···

ସୀମା : ବିକାଶ !

ବିକାଶ : କଣ ହେଲା—ଏମିତି ଡରିଗଲ ଯେ ?

ସୀମା : ମୁଁ ପ୍ରହେଳିକା ହେବି କାହିଁକି ? ଆଖି ଆଗରେ ଦେଖୁଚ ତ ମତେ । ହାସ୍‌ପିଟାଲ୍‌ରୁ ଫେରିଲା ପରେ ମୋର କିଛି ହେଲେ ପରିବର୍ତ୍ତନ ହୋଇଚି ? କୁହ, କିଛି ପରିବର୍ତ୍ତନ ହୋଇଚି ?···କଣ ପୁଣି ଭାବୁଚ ?

ବିକାଶ : ନଳିନୀକାନ୍ତ ହାସ୍‌ପିଟାଲ୍‌ରେ ଥିଲେ ତ ?

ସୀମା : ହଁ, ଥିଲେ ।

ବିକାଶ : ତମ ପାଇଁ ଆଉ କିଛି ଔଷଧପତ୍ରର ବ୍ୟବସ୍ଥା ସେ କରିନେ ?

ସୀମା : କହି ପାରିବି ନାହିଁ ।

ବିକାଶ : ଆଚ୍ଛା······

ସୀମା : କଣ ? ଫୋନ୍ କରି ତାଙ୍କୁ ଡାକିବ ?

ବିକାଶ : ହଁ ।

ସୀମା : ଆଉ, କିଛି ଦର୍କାର ନାହିଁ ।

ବିକାଶ : ଦର୍କାର ନାହିଁ କେମିତି କହୁଚ ? ଯେ କେହି ତମକୁ ଦେଖିଲେ କହିବ, ତମେ ବର୍ତ୍ତମାନ ଅସୁସ୍ଥ—କାଲିଠୁ ଆଜି ତମର ଅବସ୍ଥା ଖରାପ ।

ସୀମା : ମିଛ କଥା ।

ବିକାଶ : ସେଇ କଥାଟା ଡାକ୍ତର ନଳିନୀକାନ୍ତ ମତେ ଆସି ଏଠି କହୁ !

ସୀମା : ଶୁଣ ବିକାଶ, ମୋ କଥା ତୁମେ ବିଶ୍ୱାସ କର । ଔଷଧ ଇନ୍‌ଜେକ୍‌ସନ୍, ହାସ୍‌ପିଟାଲ୍, ଡାକ୍ତର—ଏ ସବୁ ଜଞ୍ଜାଳରୁ ମୁଁ ବର୍ତ୍ତମାନ ଏକାବେଳେକେ ମୁକ୍ତ । ଆଉ ମୋର କିଛି ଦର୍କାର ନାହିଁ । ଖାଲି ଟିକିଏ ଦୁର୍ବଳ ହୋଇ ପଡ଼ିଚି ବୋଲି ସିନା ତୁମେ ଭାବୁଚ···

ବିକାଶ : ତୁମେ ଭଲ ହୋଇ ହାସ୍‌ପିଟାଲ୍‌ରୁ ଫେରି ଆସିଚ—ଏଥିରେ ମୋର କେତେ ନିଶ୍ଚିନ୍ତ ହୋଇ ରହିବା କଥା । କିନ୍ତୁ—କିନ୍ତୁ ସୀମା, ତମକୁ ଏଠି ମୁଁ ଯାହା ଦେଖୁଚି······

ସୀମା : ତୁମେ ଦେଖୁଚ ମୋର ଏଇ ଦୁର୍ବଳ ଦେହଟାକୁ । କିନ୍ତୁ ମୋର ମନ !! ମନ ଯାହାର ସୁସ୍ଥ, ଦେହ ତା'ର କେବେ ଅସୁସ୍ଥ ହୋଇ ପାରେନା ।

ବିକାଶ : ତେବେ ବି ମୁଁ ନଳିନୀକାନ୍ତଙ୍କୁ ଡାକି ତା' ସହିତ ପରାମର୍ଶ କରିବି ।

ସୀମା : କର । ମୋର ଆପତ୍ତି ନାହିଁ । କିନ୍ତୁ ମୁଁ ହାସ୍ପିଟାଲ ଛାଡ଼ି ଆସିବା ସାଙ୍ଗେ ସାଙ୍ଗେ ତାଙ୍କୁ ଡାକ ହାଇରାଣ କରିବା ତମର ଉଚିତ ନୁହେଁ । ମତେ ତୁମେ କୁହ ତମ ବାପା ବୋଉଙ୍କ କଥା ।

ବିକାଶ : ବାପା ବୋଉ !!

ସୀମା : ସେମାନେ ତ ଆସିଲେ ନାହିଁ କି ଆସିବେ ବି ନାହିଁ ।

ବିକାଶ : ଘରୁ ଫେର ବାପା ବୋଉଙ୍କ କଥା ତ ମୁଁ ତମକୁ କିଛି କହିନି । ତମେ ଜାଣିଲ କେମିତି ?

ସୀମା : ଏତକ ମୁଁ ଜାଣି ପାରିବି ନାହିଁ ? କାଲି ତମେ ଘରକୁ ଗଲା ବେଳେ ହିଁ ମୁଁ ଜାଣିଥିଲି, ସେମାନେ ଆସିବେ ନାହିଁ !

ବିକାଶ : ଯଦି ସେମାନେ ଆସିଥା'ନ୍ତେ ?

ସୀମା : ତା' ହେଲେ···ତା' ହେଲେ···ନ, ବିକାଶ, ମୁଁ ଭାବି ପାରୁନି, ବାପା ବୋଉ ତମର ଆସିଥିଲେ କଣ ହୋଇଥା'ନ୍ତା ! ସେମାନେ କଣ ମତେ ଦେଖିବା ପାଇଁ ସିଧା ହାସ୍ପିଟାଲକୁ ଯାଇଥା'ନ୍ତେ ନା ଏଠି ତମ ଘରକୁ ଆସିଥା'ନ୍ତେ; ଆଉ ସେଇ ଭୟରେ ମୁଁ ହାସ୍ପିଟାଲ୍‌ରୁ ଏଠିକି ନ ଆସି ଆଉ କୁଆଡ଼େ ଯାଇଥା'ନ୍ତି ? କଣ ହୋଇଥା'ନ୍ତା ? ସତରେ ବିକାଶ ମୁଁ କିଛି ଭାବି ପାରୁନି······

ବିକାଶ : (ରୁଦ୍ଧ କଣ୍ଠରେ) ସୀମା !

ସୀମା : ଏ କ'ଣ ବିକାଶ ! ତମ ଆଖିରେ ଲୁହ ?

ବିକାଶ : ହଁ ସୀମା, ମୁଁ ଅସହାୟ ହୋଇ ପଡ଼ୁଛି । ଗଲା ଦୁଇମାସ ହେଲା ତମେ ହାସ୍ପିଟାଲ୍‌ରେ ଥିଲ—ତମର ସବୁ ଦାୟିତ୍ୱ ମୁଁ ନେଇଥିଲି । କିପରି ତମେ ରୋଗମୁକ୍ତ ହବ—ତମ ଜୀବନ ରକ୍ଷା ହବ—ଏ ପ୍ରଶ୍ନ ନିକଟରେ ଆଉ ସବୁକିଛି ଥିଲା ତୁଚ୍ଛ ।···ଆଜି ତୁମେ ହାସ୍ପିଟାଲ୍ ଛାଡ଼ି ଆସିଚ—ଆସିଚ ମୋ ପାଖକୁ—

ସୀମା : କିନ୍ତୁ ତମେ ଅସହାୟ ହୋଇ ପଡ଼ିଚ କାହାପାଇଁ—କାହା ପାଖରେ ? ମୋ' ପାଖରେ ନା ତମ ବାପା ବୋଉଙ୍କ ପାଖରେ ?

ବିକାଶ : ଏ ପ୍ରଶ୍ନର ଉତ୍ତର ଆମେ କେହି ଦେଇ ପାରିବା ନାହିଁ । ତମେ, ମୁଁ କି ବାପା ବୋଉ—ଆମେ କେହି ଏ ପ୍ରଶ୍ନର ଉତ୍ତର ଦେଇ ପାରିବା ନାହିଁ ।··· ଏଇ ଅଳ୍ପ ସମୟ ପୂର୍ବରୁ ମୁଁ ରଞ୍ଜନକୁ କହୁଥିଲି—ମୁଁ ବିଦ୍ରୋହୀ ନୁହେଁ—ଆଘାତ ପ୍ରତିଘାତର ସ୍ୱାକ୍ଷର ମୋ' ରକ୍ତରେ ନାହିଁ । କିନ୍ତୁ···କିନ୍ତୁ ସବୁ କଥାରେ ଯେ ଗୋଟାଏ ନିର୍ଦ୍ଦିଷ୍ଟ ସୀମା ରହିଚି···

ସୀମା : କଣ·ତୁମେ କହୁଚ ବିକାଶ ? କଣ ତମର ଉଦ୍ଦେଶ୍ୟ ?
ବିକାଶ : ରଞ୍ଜନ ଠିକ୍ କହୁଥିଲା । ଇଏ ଗୋଟାଏ ଅତି ସାମାନ୍ୟ କଥା । ଏଥିପାଇଁ ଉତ୍ୟକ୍ତ ଉତ୍ତେଜିତ ହେବାର କିଛି ନାହିଁ । ସବୁ ନିଷ୍ପତ୍ତି ଆଜି ଏଇଠି ହେଇଯିବ ।
ସୀମା : କି ନିଷ୍ପତ୍ତି ?
ବିକାଶ : ଆମର ବିବାହ ।
ସୀମା : ବି-ବା-ହ !!
ବିକାଶ : ହଁ । ଆଜି ଏଇଠି ଆମକୁ ଆମ ବିବାହର ଦିନ ସ୍ଥିର କରିବାକୁ ହବ ।
ସୀମା : ବିବାହ !!
ବିକାଶ : ଏଥିରେ ତମର ଆଶ୍ଚର୍ଯ୍ୟ ହବାର କଣ ଅଛି ସୀମା ?
ସୀମା : ନା—ଏଥିରେ ଆଶ୍ଚର୍ଯ୍ୟ ହବାର କିଛି ନାହିଁ—ସେଇପରି ଏଥିରେ ଏତେ ଗୁରୁତ୍ୱ ଦବାର ମଧ୍ୟ କିଛି ନାହିଁ ।
ବିକାଶ : ତା' ନହେଲେ ଯେ ଗୋଟାଏ କିଛି ସିଦ୍ଧାନ୍ତରେ ଆମେ ପହଞ୍ଚି ପାରିବା ନାହିଁ ।
ସୀମା : ତା' ପୂର୍ବରୁ ମୋର କେତୋଟା କଥାର ଉତ୍ତର ତମେ ଦିଅ ?
ବିକାଶ : କଣ ?
ସୀମା : କେବେ ଆମର ପରିଚୟ ହୋଇଥିଲା ?
ବିକାଶ : ତୁମେ କୁହ ।
ସୀମା : ଦୁଇ ବର୍ଷ । ଦୁଇବର୍ଷ ତଳେ ଆମର ପ୍ରଥମ ପରିଚୟ ହୋଇଥିଲା !
ବିକାଶ : ହଁ ।
ସୀମା : ଏ ଦୁଇଟି ବର୍ଷ ଆମର କଟିଚି କେମିତି କୁହ ?
ବିକାଶ : ତା'ର ସାକ୍ଷୀ ଆମେ ଦୁହେଁ—ଆମ ଦୁହିଁଙ୍କର ଅସ୍ତିତ୍ୱ ।
ସୀମା : ଏ ଦୁଇବର୍ଷ ଭିତରେ ଆମ ବିବାହର ପ୍ରଶ୍ନ ତ କେବେ ଉଠି ନଥିଲା ?
ବିକାଶ : ଆମେ ଦୁହେଁ କୌଣସି ନାଟକ କି ଉପନ୍ୟାସର ପ୍ଲଟ୍ ଗଢ଼ୁ ନ ଥିଲୁ ଯେ ମାପି ଚୁପି ହିସାବ କରି ବିବାହ ବେଦୀରେ ଯାଇ ପହଞ୍ଚିଥାନ୍ତୁ । ମଣିଷ ଆମେ—ଆମ ପକ୍ଷରେ ବିବାହ ଗୋଟାଏ ପ୍ରୟୋଜନ । ସେଥିରୁ ଅଧିକ ଆମେ ଆଉ କିଛି ଗୃହୁଁ ନା ।
ସୀମା : ବିକାଶ ! (ସୀମା ଆଖିରେ ଲୁହ)
ବିକାଶ : ମୋ ଆଖିରେ ଲୁହ ଦେଖି ତମେ ବିଚଳିତ ହେଇ ପଡ଼ୁଥିଲ ତ ! କିନ୍ତୁ ତମ ଆଖିରେ ଲୁହ ଦେଖି ମୁଁ ବିସ୍ମିତ ବି ହେଉନି ।···ଲୁହ କଣ କହୁଚ ?

ସୀମା : ତୁମେ କହୁଚ—ବିବାହ ଗୋଟାଏ ପ୍ରୟୋଜନ ।

ବିକାଶ : ତୁମେ ମଧ୍ଯ ଠିକ୍ ସେଇଆ କହିବ ।

ସୀମା : ସେଇଆ ନ କହି ମଧ୍ଯ ତା'ଠୁଁ ଅଧିକ କିଛି କହିବି । ମୋ' ପାଇଁ ଏ ବିବାହ କେବଳ ପ୍ରୟୋଜନ ନୁହେଁ—ଏକ ବିରାଟ ପ୍ରଲୋଭନ । ଯାହାର ଆକର୍ଷଣ କେହି ଏଡ଼ାଇ ଦେଇ ପାରେନା । କ୍ଷୁଧାର୍ତ୍ତର ମୁଠାଏ ଭାତ ପାଇଁ ଲୋଭ ଭଳି ଏ ପ୍ରଲୋଭନ ନୁହେଁ । ଏକ ସମ୍ପୂର୍ଣ୍ଣ ଜୀବନର ଏ ପ୍ରଲୋଭନ । କିନ୍ତୁ କାହିଁ ? ସେ ସ୍ୱାଦ ତ ମୁଁ ଚାଖି ପାରୁନି ।

ବିକାଶ : କାହିଁକି ? କାହିଁକି ସୀମା—ଏ ଆଶଙ୍କା ତମେ କରୁଚ କାହିଁକି ? ବାପା ବୋଉଙ୍କ ପାଇଁ ?

ସୀମା : ମୋ' ନିଜ ପାଇଁ ।

ବିକାଶ : ନିଜ ପାଇଁ !!···ମୁଁ କିଛି ବୁଝିପାରୁନି ସୀମା···

ସୀମା : ମୁଁ ମଧ୍ଯ ତମକୁ ଠିକ୍ ବୁଝାଇ ପାରୁନି ବିକାଶ । କିନ୍ତୁ ମୋ' ଜୀବନର ଏଇ ପରମ ଆକର୍ଷଣରେ ମୋହ ମତେ ବାନ୍ଧି ରଖିପାରୁନି । ମୁଁ ଏଥିରୁ ମୁକୁଳି ତମଠୁ ଦୂରଛଡ଼ା ହୋଇଯାଉଚି ।

ବିକାଶ : ମିଛକଥା—ମିଛକଥା ସୀମା । ସେଠୁ ତମେ ଦୂରରେ ରହିପାରିବ ନାହିଁ । ତମକୁ ବିବାହ କରି ମୁଁ ଭୋଗ ବିଳାସରେ ମତ୍ତ ହୋଇ କିଛି ସାମାଜିକ ଦୁଷ୍କର୍ମ କରୁନି ଯେ ଭୟ କରିବ । ତୁମେ ଖାଲି କୁହ, କେବେ ଆମର ବିବାହ ହେବ ?

ସୀମା : ମୋର ଏଥିରେ କିଛି କହିବାର ନାହିଁ । ଯାହା ତୁମେ ଠିକ୍ ମନେ କରୁଚ, କର । (ସୀମା ଉଠି ଠିଆହେଲ)

ବିକାଶ : କୁଆଡ଼େ ଉଠିଲ ତମେ ?

ସୀମା : ସେତିକବେଳୁ ଆସି ଏଠି ବସିଚି—ମୁହଁ ହାତ ଧୋଇନି । ଭାରି ଘୃଣାବୋଧ ହଉଚି । ବାଥରୁମରେ ପାଣି ଅଛି ?

ବିକାଶ : ଅଛି, ଯାଅ । କ'ଣ ଗାଧୋଇବ ?

ସୀମା : ଭାବୁଚି ଗାଧୋଇବି । କିନ୍ତୁ ଗାଧୋଇ ପିନ୍ଧିବି କଣ ? ମୋର ଲୁଗାପଟାତ—

ବିକାଶ : ସେ ଘରେ ସେ ବଡ଼ ଟ୍ରଙ୍କଟାରେ ବୋଉର ଲୁଗାପଟା ଅଛି ।

ସୀମା : ବୋଉ ତ ଆସି ନାହାନ୍ତି—ଲୁଗାପଟା ଆସିଲା କୋଉଠୁ ?

ବିକାଶ : ଆଜି ଆସିବେ ବୋଲି କ'ଣ ପୂର୍ବରୁ କେବେ ଆସିନି ?

ସୀମା : କିନ୍ତୁ···ମୁଁ ତମ ବୋଉଙ୍କ ଲୁଗା ପିନ୍ଧିବି ?

ବିକାଶ : ବୋଉ ଦେଖିଲେ ଖୁସି ନ ହେଲେ ବି ତା' ମନରେ ଖୁବ୍ ଗର୍ବ ଆସିବ । ତମେ ଯାଅ—ଗାଧୂଆ ପାଧୂଆ ଶେଷ କର ।

ସୀମା : ଓଃ ! ଏତେ ଦୁର୍ବଳ ଲାଗୁଚି···

ବିକାଶ : ଶୁଣ ସୀମା । ଠିଆହୁଅ । (ସୀମା ଅଟକିଲା)

ସୀମା : କଣ ?

ବିକାଶ : ଗୋଟାଏ କଥାରେ ମୋର କାହିଁକି ସନ୍ଦେହ ହେଉଚି ।

ସୀମା : କି ସନ୍ଦେହ ?

ବିକାଶ : ପ୍ରକୃତରେ ସେମାନେ ଡାକ୍ତରଖାନାରୁ ତମକୁ ଡିସଚାର୍ଜ କରିଛନ୍ତି ନା ତମେ ଲୁଚି ପଳାଇ ଆସିଚ ?

ସୀମା : (ହସି ହସି) ଯଦି ଲୁଚି ପଳାଇ ଆସିଥାଏ ?

ବିକାଶ : ଏଠି "ଯଦି"ର ପ୍ରଶ୍ନ ନାହିଁ ସୀମା । ସତ କଥାଟା କ'ଣ କୁହ । ଇଚ୍ଛା କଲେ ତ ମୁଁ ଏଇ ପାଞ୍ଚ ମିନିଟ୍ ଭିତରେ ସବୁ କଥା ଜାଣି ପାରିବି । ମତେ ଲୁଚେଇ ଲାଭ କ'ଣ ? କୁହ କ'ଣ ହେଇଚି ?

ସୀମା : ସତ କହୁଚି ବିକାଶ—ଡାକ୍ତରଖାନାରେ ରହିବାକୁ ମୋର ଆଉ ଆଦୌ ଇଚ୍ଛା ନଥିଲା । ବିଶେଷତଃ, ତମେ କାଲି ମୋ ପାଖରୁ ଆସିବା ପରେ ଗୋଟାଏ ମୁହୂର୍ତ୍ତ ଆଉ ରହିବା ପାଇଁ ମନ ହେଉନଥାଏ । ମୃତ୍ୟୁଶଯ୍ୟାର ରୋଗୀ ସମ ସହିତ ଲଢ଼ିଲା ପରି ମୋ ଅବସ୍ଥା । କିନ୍ତୁ କ'ଣ କରିବି ? କେମିତି ଆସିବି ? ଆଜି ସକାଳେ ତମକୁ ଅପେକ୍ଷା କଲି, ତମେ ଆସିଲ ନାହିଁ । ଶୁଣିଲି କାଲି ତମେ ଘରୁ ଫେରିନ ।

ବିକାଶ : ତା'ପରେ ତମେ ଡାକ୍ତର ନର୍ସ କାହାକୁ ନ କହି ଟାକ୍ସିରେ ବସି ଚାଲିଆସିଲ ?

ସୀମା : ମୁଁ କହିଲି ଏକଥା ? କାହାକୁ ନ କହି ମୁଁ ଚାଲି ଆସିଚ,—ଏ କଥା କହୁଚି ମୁଁ ତମକୁ !

ବିକାଶ : ଏ କଥା ନ କହିଲେ ବି ଏଠି ତମେ ଯେତେ ଯାହା ସବୁ କହିଗଲ, ତା'ର ଅର୍ଥ ହେଉଚି ଠିକ୍ ଏଇଆ ।

ସୀମା : କଣ ଯେ ମୁଁ ତମକୁ କହିବି—

ବିକାଶ : ଶୁଣ । ଯଦି ପ୍ରକୃତରେ ତମେ ଲୁଚି ପଳାଇ ଆସିଥାଅ, ତା' ହେଲେ ଆଉଥରେ ତମକୁ ହାସ୍‌ପିଟାଲ୍ ଯିବାକୁ ପଡ଼ିବ ।

ସୀମା : କଣ ଜୋର୍ କରି ?

ବିକାଶ : ହଁ ଜୋର୍ କରି । ତମଭଳି ଝିଅକୁ ଏଭଳି ଦଣ୍ଡ ଦବାରେ କିଛିହେଲେ ଦୋଷ ନାହିଁ ।

ସୀମା : ବେଶ୍ ଦେଖ । କେମିତି ଜୋର୍ କରି ମତେ ପୁଣି ପଠାଇବ, ସେ କଥା ତୁମେ ଜାଣ ।...ବାଥ୍ ରୁମ୍‌ରେ ପାଣି ଅଛିତ ?

ବିକାଶ : ହଁ ହଁ, ଅଛି । ଯାଅ । (ସୀମା ଭିତରକୁ ଗଲା) ହୁଁ ?...ଆରେ ଶାମା ଶାମା—ଫୁଲ୍‌ଦାନ୍ତ । ଦ' କପ୍ ଟି'...ନାଇଁ ନାଇଁ—ଦ' କପ କଫି ପଠାଅ । ...(ରଞ୍ଜନ ଆସିଲା) କିଏ ? ରଞ୍ଜନ ! ବାହାରେ କାହାର ଗାଡ଼ି ରହିଲା ନା' କଣ ? ନଳିନୀକାନ୍ତ ଆସିଛି କି ?

ରଞ୍ଜନ : ନା ସାର୍,...ଆପଣଙ୍କ ବାପା ଆଉ ବୋଉ ।

ବିକାଶ : ବାପା...କାହାନ୍ତି ?

ରଞ୍ଜନ : ଏଇତ...

[ବିକାଶର ବାପା ବୋଉ ଆସିଲେ । ସମ୍ଭ୍ରାନ୍ତ ଦମ୍ପତି । ଦୁହିଙ୍କ ମୁହଁରେ ବିଷାଦ ତଥା ଉତ୍କଣ୍ଠାର ଛାୟା ।... ରଞ୍ଜନ ଚାଲି ଯାଇଛି]

ବାପା : ତୁ ଆସିବା ପରେ ପରେ ଆମକୁ ବାଧ୍ୟ ହୋଇ ଆସିବାକୁ ପଡ଼ିଲା ।

ବିକାଶ : ସେତେବେଳେ ତ ମୋ' ଗାଡ଼ିରେ ସୁବିଧାରେ ଆସିପାରିଥାନ୍ତେ ।

ବାପା : ଟାକ୍‌ସିଟାଏ ମିଳିଗଲା—କିଛି ଅସୁବିଧା ହେଇନି ।

ବିକାଶ : ରଞ୍ଜନ । ରଞ୍ଜନ କାଇଁଗଲା ? ଟାକ୍‌ସିବାଲାର ପଇସା—

ବାପା—ମୁଁ ଦେଇ ଦେଇଚି ।

ବିକାଶ : ଆପଣ ବସନ୍ତୁ ବାପା । ବୋଉ !

ବୋଉ : ବୋଉ ବୋଲି ଡାକିବାର ମୁହଁ ଆଉ ରଖିଚୁ ଯେ ଡାକୁଚୁ ?

ବିକାଶ : ତୁ ଆଗେ ଆସିଲୁ, ଆ । ବସ ଏଠି ।

ବାପା : ଶୁଣ ବିକାଶ । ତୁ ଘରୁ ଆସିବାର ମାତ୍ର କେଇ ମିନଟ୍ ପରେ ଆମେ ତୋ' ପଛେ ପଛେ ଆସିଲୁ । କଥାଟା ଭାରି ଅସୁନ୍ଦର ହେଲା । କିନ୍ତୁ ଆମେ ଆମେ ଆଉ କରିଥାନ୍ତୁ କଣ ?

ବିକାଶ : କାହିଁକି ବାପା ? ଆପଣ ଏଠିକି ମୋ' ପାଖକୁ ଆସିଲେ । ଏଥିରେ ସୁନ୍ଦର ଅସୁନ୍ଦର ପୁଣି ରହିଲା କ'ଣ ! ମୁଁ ତ ଆପଣଙ୍କୁ ଆଉ ବୋଉକୁ ଏଠିକି ଆଣିବା ପାଇଁ କାଲି ଘରକୁ ଯାଇଥିଲି ।

ବାପା : ସେଇ କଥା—ତୁ ଆମକୁ ଆଣିବାକୁ ଯାଇଥିଲୁ—ଆମେ ଆସିଲୁ ନାହିଁ । ତା' ପରେ ତୁ ଘର ଛାଡ଼ିଚୁ କି ନାହିଁ ଆମକୁ ଘର ଛାଡ଼ି ଆସିବାକୁ ପଡ଼ିଲା । ଏଥିରୁ ବାହାର ଲୋକେ କଣ ବୁଝିବେ—ତୁ ନିଜେ କ'ଣ ବୁଝିବୁ, କହ ?

ବିକାଶ : ଏଥିରେ ଆଉ କାହାର କିଛି କହିବାର କି ବୁଝିବାର ଅଧିକାର ନାହିଁ । କିନ୍ତୁ ଆପଣ ଏତେ ତରବରରେ ଆସିବାର ବୋଧହୁଏ ଦରକାର ନ ଥିଲା । ଖବର ପାଇଥିଲେ ମୁଁ ପୁଣି ଗାଡ଼ି ପଠେଇ ଥାନ୍ତି—ଆପଣ ଆସିଥାନ୍ତେ ।

ବୋଉ : ଭାତ ଥାଳି ପାଖରୁ ତୁ ଉଠି ଆସିଲୁ । ତୋ' ପାଇଁ ତ ତୋ' ପୁଅଝିଅ କି ଚାକର ଭାତ ବାଢ଼ି ନଥିଲେ—ମୁଁ ବାଢ଼ିଥିଲି ।

ବିକାଶ : ଏଇଥି ପାଇଁ ତୁ ଏମିତି ବ୍ୟସ୍ତ ହୋଇ ପଡ଼ୁଚୁ ବୋଉ ! ଆଉ କଣ ତୁ ମୋ' ପାଇଁ ଭାତ ବାଢ଼ିବୁ ନାହିଁ ? ଆଜି ଏଇଠି ତୁ ମୋ' ପାଇଁ ଭାତ ବାଢ଼ିବୁ—ମୁଁ ଖାଇବି । ତୁ ଚାଲ, ଭିତରକୁ ଚାଲ—ପୁଅଝିଅ କିଣ ରାନ୍ଧୁଚି…

ବୋଉ : ନା । ଭାତ ଯଦି ତୋ' ପାଇଁ ବାଢ଼ିବି ତେବେ ତୁ ମୋ' ସଙ୍ଗରେ ଘରକୁ ଚାଲ—ସେଇଠି…

ବିକାଶ : ବୋଉ !

ବାପା : ବୋଉ ତୋ'ର ଠିକ୍ କହୁଚି ବିକାଶ । ତୁ ଚାଲ ଆମ ସାଥିରେ । ଆମେ କେବଳ ସେଇଥିପାଇଁ ଆସିଚୁ । ଏ କଥା ଆଜି ତୋତେ ଘରେ କହିଥିଲି—ବର୍ତ୍ତମାନ ପୁଣି ଏଠି କହୁଚି ।

ବିକାଶ : ଆପଣ ଏ କଥା କେମିତି କହି ପାରୁଚନ୍ତି ବାପା ?

ବାପା : କାହିଁକି ? ଏଠି ତୋର ବ୍ୟବସାୟ ପଣ କଥା ତ ?…କହ । ତୋ ବ୍ୟବସାୟ ପଣ ଭାଙ୍ଗିଯିବ—ଏଇଆ ତ ?

ବିକାଶ : ଏଠି ବ୍ୟବସାୟ ପଣ ଭାଙ୍ଗିଦବାଟା କଣ ଉଚିତ ହବ ବୋଲି ଆପଣ ଭାବୁଚନ୍ତି ?

ବାପା : ନ ହବ କାହିଁକି ? କଣ ଦର୍କାର ଅଛି ଏଥିରେ ? ସେଠି ଯାଜପୁରରେ ମୋର ଯୋଉ ବ୍ୟବସ୍ଥା ରହିଛି—ତାକୁ ବୁଝିଲେ ଦୁଇ ଗୁଣ ଲାଭ ପାଇବୁ । ଏ ଗ୍ୟାରେଣ୍ଟି ମୁଁ ଦଉଚି । ଆଉ କଣ ?

ବୋଉ : କହ । ବାପାଙ୍କ କଥାର ଉତ୍ତର ଦେ ।

ବାପା : ଚୁପ ହୋଇ ବସିଲୁ କାହିଁକି ? କହ ।…ମୁଁ ଯାହା କହିଲି କିଛି ଭୁଲ୍ କହିଲି ? [ବିକାଶ କିନ୍ତୁ ନିରୁତ୍ତର]

ବୋଉ : ଦେଖୁଚ ତ, ଚୁପ ହୋଇ ବସିଚି । କିଛି କହୁନି । ଏଇଥିରୁ ତା' ମନ କଥା କଣ ତମେ ବୁଝୁନ ?

ବାପା : ବିକାଶ !

ବିକାଶ : ଆଜ୍ଞା ।

ବାପା : ମୋର ଗୋଟାଏ କଥାର ସିଧା ସଳଖ ଉତ୍ତର ତୁ ଦେ' ।…ସୀମାକୁ ତୁ ବିବାହ କରୁଚୁ ?… କଣ ? ମୋର ଏ କଥାର ଉତ୍ତର ବି ଦବୁନି ?

ବିକାଶ : ଏ ପର୍ଯ୍ୟନ୍ତ ତ ମୁଁ ଏ ବିଷୟରେ ଆପଣଙ୍କୁ କିଛି କହିନ ।

ବାପା : ତୁ କହିନୁ କାରଣ କହିବାକୁ ତୋ'ର ସାହସ ହେଇନ । ସେଥିପାଇଁ ମୁଁ ପଚାରୁଚି—କହ । ସୀମାକୁ ତୁ ବିବାହ କରୁଚୁ ? ହଁ କି ନାହିଁ—ପଦେ କଥା ।

ବୋଉ : ଶୁଣ୍ ବାପ । କେତେ ଆଶା କରି ମୁଁ ତୋ' ପାଖକୁ ଧାଇଁ ଆସିଚି । ତୋ' ଜନ୍ମକଲା ମା' ମୁଁ । ମୋ' ଆଶାରେ ତୁ ଧୂଳି ଦେ'ନା । ମୁଁ ତୋତେ କୋଳରେ କାଟେଇ ଏଠୁ ନେଇ ଯିବାକୁ ଆସିଚି । ତୁ ଚାଲ୍ ମୋ' ସାଥିରେ । ଜାଣିଚୁତ ତୋ' ପାଇଁ ଆମେ କନ୍ୟାଘର ଠିକ୍ କରିଚୁ । ଆମ କଥା ତୁ ରଖିଲେ ସାଇ ଭାଇ ବନ୍ଧୁ ବାନ୍ଧବ ସବୁଠି ଆମର ଟେକ ରହିବ । ତୋ' ବାପ-ମା ଆମେ, ଆମ ଜୀବନ ସାର୍ଥକ ହବ । [ବିକାଶ ପୂର୍ବପରି ନିରୁତ୍ତର]

ବାପା : ଏତେ କଥା ତୋ' ବୋଉ କହିଗଲା—ତୋ' ପାଟିରେ ପଦେ ହେଲେ କଥା ନାହିଁ ?

ବିକାଶ : ମୁଁ ଆପଣଙ୍କୁ ଅନୁରୋଧ କରୁଚି ବାପା—ଏ ଆଲୋଚନା ଆପଣ ବର୍ତ୍ତମାନ କରନ୍ତୁ ନାହିଁ ।

ବାପା : କାହିଁକି ?

ବିକାଶ : ଏତିକି ମୋର ଅନୁରୋଧ···

ବାପା : କରନ୍ତୁ କାହିଁକି ? ଆମ ଘରେ ବସି ଆମ କଥା ଆମେ ଆଲୋଚନା କରିବୁ, ଏଥିରେ ତୋର ଆପତ୍ତି କାହିଁକି ? ଆପତ୍ତିର କାରଣ କଣ ?

ବିକାଶ : ମୁଁ କହିପାରିବି ନାହିଁ ।

ବାପା : ଆପତ୍ତିର କାରଣ କ'ଣ କହି ପାରିବୁ ନାହିଁ ?

ବିକାଶ : ନା । (ବାପା କ୍ରମେ ଯେପରି ଉତ୍ତ୍ୟକ୍ତ ହେଇ ପଡ଼ୁଥାନ୍ତି)

ବାପା : ତା' ହେଲେ ସୀମା ସହିତ ତୋ'ର ବିବାହ ହଉଚି !

ବିକାଶ : ଏହାର କୌଣସି ଉତ୍ତର ମୁଁ ବର୍ତ୍ତମାନ ଆପଣଙ୍କୁ ଦେଇ ପାରିବି ନାହିଁ ।

ବାପା : ହୁଁ !···

ବୋଉ : ତୋ' ମନରେ ଏଇଆ ଥିଲା ? ଶେଷକୁ ତୁ ଏଇଆ କଲୁ ? ଯିଏ ତୋ'ତେ ଜନ୍ମ ଦେଇ ବଢେଇ କୁଢେଇ ମଣିଷ କଲେ, ତାଙ୍କ କଥାକୁ ତୁ ପାଦରେ ଦଳି ଦେଇ ତୋ' ମନ ଯା' ଚାହିଁଲା, ତୁ ତା' କଲୁ ! ଯାହାକୁ ପାରି ତାକୁ ବାହାହେଇ······

ବିକାଶ : ବୋଉ ?

ବୋଉ : ମୋ' କଥା ଯଦି ନ ରହିଲା—ମୋ' ମନ କଥା ଯଦି ତୁ ନ ବୁଝିଲୁ, ତା' ହେଲେ ମୁଁ ମଲେ କେତେ ରହିଲେ କେତେ ଯେ ତୁ ମତେ ବୋଉ ବୋଲି ଡାକୁଚୁ ?

ବାପା : ସୀମା କାହିଁ ? ସେ ଡାକ୍ତରଖାନାରେ ଥିଲା ନା ?

ବିକାଶ : ହଁ ।

ବାପା : ତା' ଚିକିତ୍ସାର ଭାର ତୁ ନେଇଥିଲୁ ?

ବିକାଶ : ଏ କଥା ତ ମୁଁ ଆଗରୁ ଆପଣଙ୍କୁ କହିଚି ।

ବାପା : ଡାକ୍ତରଖାନାରୁ ସେ କେବେ ଫେରିବ ?··· କଣ ? ଏ କଥା ବି ଆମେ ଜାଣିପାରିବୁ ନାହିଁ ? କେବେ ଫେରୁଚି ସେ ଡାକ୍ତରଖାନାରୁ ?

ବିକାଶ : ଡାକ୍ତରଖାନାରୁ······

ବୋଉ : ମୁଁ ଯଦି ତୋର ଜନ୍ମକଲା ମା' ହୋଇଥାଏ—ତୋ' ପାଇଁ ଯଦି ସତରେ ମୋ' ଅନ୍ତରାତ୍ମା ଜଳୁଥାଏ—ତେବେ···ତେବେ ସେଇ ଡାକ୍ତର ଖାନାରେ ସେ······

ବିକାଶ : (ଜୋର୍‌ରେ) ବୋଉ !

ବୋଉ : (କାନ୍ଦି) କାହିଁକି ? ତୋତେ ଏତେ ବାଧିଯାଉଚି କାହିଁକି ? ଏଇଠି ତୋର ଆଗରେ ମୁଁ ମୁଣ୍ଡ ପିଟି ମଲେ ତୋତେ ସେମିତି ବାଧିବତ ? ଜାଣିଚି ମୋର କରମ ଫାଟିଚି । ତୋ ଭଳି ପୁଅ ଯଦି ମୋର ନ ହେଲା—ଆଉ କାହାପାଇଁ କାଇଁକି ମୁଁ ପାଟି ବୁଜି ବସିବି ?

ବିକାଶ : ତୁ···ତୁ ଏତେ ତଳକୁ ଯାଇ ପାରିଲୁ ବୋଉ ! ଏତେ ନିର୍ଦ୍ଦୟ ତୁ ହେଲୁ କେମିତି ? ସୀମା ଯଦି ତୋ'ର କେହି ନୁହେଁ—ତାକୁ ଅଭିଶାପ ଦବାର ଅଧିକାର ତୋ'ର ନାହିଁ ।···ତୁ ଫେରେଇ ନେ ବୋଉ—ତୋ ଅଭିଶାପ ତୁ ଫେରେଇ ନେ । ତୋ' ଆଖିରେ ମୁଁ ଆଉ ମଣିଷ ହେଇ ନାହିଁ— ଗୋଟାଏ ମାଟିର କଣ୍ଢେଇ । ଏଣିକି ତୋ' କଥା—ତୋ' ଆଦେଶକୁ ପ୍ରତିବାଦ କରିବାର ମୋର ଆଉ କିଛି ନାହିଁ । ତୋ'ର ସବୁ କଥା ମୁଁ ମୁଣ୍ଡପାତି ମାନିନିବି । ସୀମା ଏଇଠି ଅଛି—ଏଇଠି ତୋ' ସାମନାରେ ଆଣି ତାଙ୍କୁ ଠିଆ କରେଇ···

ବାପା : ସୀମା ଏଇଠି ଅଛି ? ଏଇ ଘରେ ?

ବିକାଶ : ହଁ । ହାସ୍‌ପିଟାଲ୍‌ରୁ ଫେରି ସେ ଏଇଠିକି ଆସିଚି ।

ବାପା : (ଜୋର୍ ଗଳାରେ) ବିକାଶ !···ଏଇଠି ତୁ ମୋ' ପାଖରେ ବସି— ମୋ' ମୁହଁକୁ ଚାହିଁ ଏକଥା କହି ପାରିଲୁ ? ସୀମା ଏଇଠି ଅଛି—

ଏଇଠି—ଏକୁଟିଆ—ତୋ' ଘରେ !!···ଗୋଟାଏ···ନାଃ··· । ଭଗବାନ୍ ମତେ ଏତେ ନର୍କ କରି ଜନ୍ମ ଦେଇ ନାହାନ୍ତି ଯେ ସ୍ତ୍ରୀ' ପରେ ଏସବୁ କଥାର ଆଲୋଚନା ମୁଁ ଏଠି କରିବି । (ବୋଉଙ୍କୁ) ତମେ ଆଉ ଗୁହିଁଚ କଣ ? ଆସ—ଉଠି ଆସ । ଆଉ ଗୋଟାଏ ମୁହୂର୍ତ୍ତି ଆମେ ଏଠି ରହି ପାରିବା ନାହିଁ—ଆସ ।

[ଝିଅ ପରି ଦୁହେଁ ଉଠି ଚାଲିଗଲେ ! ଅତି ଅସହାୟ ଅବସ୍ଥାରେ ସେମାନେ ଯେମିତି ବିକାଶଙ୍କୁ ଛାଡ଼ି ଯାଇଚନ୍ତି । ଦୁଇ ହାତ ପାପୁଲିରେ ମୁହଁ ଚାପି ରଖି ସେ କିଛିକ୍ଷଣ ବସି ରହିଲ । ତା'ପରେ ଉଠି ବାଥ୍‌ରୁମ୍ ଆଡ଼କୁ ଲକ୍ଷ୍ୟ କରି ସୀମଙ୍କୁ ଡାକିଲ]

ବିକାଶ : ସୀମା ! ସୀମା ! ଶୁଣିଲତ ସବୁ ?···ସୀମା !

[ସୀମାଠୁଁ ଉତ୍ତର ଆଶାରେ କିଛିକ୍ଷଣ ଅପେକ୍ଷା କରି ପୁଣି କଥା ଆରମ୍ଭ କଲ]

ଏ ଯାଏଁ କଣ ତମର ଗାଧୁଆ ସରିନି ସୀମା ?···ସୀମା···ସୀମା ।

[ତଥାପି ଉତ୍ତର ନାହିଁ । ଏଥର ସେ ଘରୁ ବାହାରି ବାଥ୍‌ରୁମ୍ ଆଡ଼େ ଗଲ । ସେ ପାଖରୁ ତା'ର 'ସୀମା'— 'ସୀମା' ଡାକ ଶୁଭୁଥାଏ । ସେମିତି ଡାକ ଡାକ ସେ ପୁଣି ଭିତରକୁ ଆସିଲ]

ସୀମା—ସୀମା ! କି ଆଶ୍ଚର୍ଯ୍ୟ ! ବାଥ୍‌ରୁମ୍ କବାଟ ଖୋଲା—ଟୋପାଏ ବି ପାଣି ତଳା ହୋଇନି । ଆଉ କଣ ଛାତ ଉପରକୁ··· (ସିଡ଼ି ବାରଣ୍ଡାକୁ ଚାହିଁ ଦେଖି) ନା—ସିଡ଼ି ଉପର ଦରଜାରେ ତ ତାଲା ପଡ଼ିଚି ।···ସେ କଣ ତେବେ ବାପା ବୋଉଙ୍କ କଥା ଶୁଣି···କିନ୍ତୁ ସେ କେମିତି— କେତେ ବେଳେ ଗଲ ? ମୁଁ ଏଇଠି ବସିଚି—ଜାଣି ପାରିଲି ନାହିଁ ।··· ସୀମା···ସୀମା··· (ରଞ୍ଜନ ଆସିଲା)

ରଞ୍ଜନ : ଆପଣଙ୍କ ବାପା ବୋଉ କଣ ଗାଁକୁ ଫେରିଗଲେ ?

ବିକାଶ : ଗାଁକୁ ?···ହଁ ।

ରଞ୍ଜନ : ଆଉ ଫେରିବେ ନାହିଁ ?

ବିକାଶ : ନା ।...କିନ୍ତୁ ସୀମା କାହିଁ ? ସୀମା ତ ତଳକୁ ଯାଇନ ।

ରଞ୍ଜନ : (କିଛି ବୁଝି ନ ପାରି) ସୀମା ଦେବୀ !!!

ବିକାଶ : ହଁ । ସୀମା ତ ତଳକୁ ଯାଇନ । ମୁଁ ତ ଏଇଠି ଅଛି, ତଳକୁ ଗଲା କେତେବେଳେ ? କୋଉ ବାଟେ ଗଲା ? ତମେ ଦେଖିଚ ତାକୁ ?

ରଞ୍ଜନ : ନା ସାର୍, ମୁଁ ତାଙ୍କୁ ଆଦୌ ଦେଖିନ ।

ବିକାଶ : Strange !! (ଡାକିଲା) ସୀମା—ସୀମା—

ରଞ୍ଜନ : କ୍ଷମା କରିବେ ସାର୍—

ବିକାଶ : କଣ କହୁଚ ତୁମେ ?

ରଞ୍ଜନ : ସୀମା ଦେବୀ ଏଠିକି ଆସିବା କଥା ଆପଣ କହୁଚନ୍ତି ?

ବିକାଶ : ହଁ, ଆସିଥିଲା ତ ।

ରଞ୍ଜନ : କେତେ ବେଳେ ଆସିଲେ ?

ବିକାଶ : ପ୍ରାୟ ଏଗାରଟା । ମୁଁ ଆସିବା ପରେ ପରେ ।

ରଞ୍ଜନ : ଆପଣ ଆସିଲେ—ମୁଁ ପଛେ ପଛେ ଉପରକୁ ଆସିଲି ।

ବିକାଶ : ତମେ ଏଠି ପହଁଚିବାର ପ୍ରାୟ ମିନିଟ୍‌କ ଭିତରେ ସେ ଆସିଛି ।

ରଞ୍ଜନ : ମିନିଟ୍‌କ ଭିତରେ..!! (ଖୋଲା ଦରଜା ବାଟେ ବାହାରକୁ ଚାହିଁ) ଏଇ ସାର୍ ଡାକ୍ତର ବାବୁ ଆସିଲେଣି ।

[ ଧୀର ପଦକ୍ଷେପରେ ଆସିଲେ ଡାକ୍ତର ନଳିନୀକାନ୍ତ । ବିକାଶର ସମବୟସ୍କ । ଦୁହେଁ ଅନ୍ତରଙ୍ଗ ବନ୍ଧୁ । ଏ ମିଳନରେ ଆନନ୍ଦ ପରିବର୍ତ୍ତେ ଦୁହିଁଙ୍କଠାରେ ବିଷାଦ ଓ ଉଦ୍‌ବେଗ ପରିସ୍ଫୁଟ ]।

ନଳିନୀକାନ୍ତ : ଆଉ କିଛି ଉପାୟ ନ ଥିଲା ବିକାଶ ।

ବିକାଶ : ଉପାୟ !!

ନଳିନୀକାନ୍ତ : ଏ ରୋଗ ଚମତ୍କାର ଭାବେ ଭଲ ଆଉକୁ ଗଢ କରିବା ଖୁବ୍ କମ୍ କେଶ୍‌ରେ ଦେଖାଯାଏ । କାଲି ପର୍ଯ୍ୟନ୍ତ ସବୁ ଠିକ୍ ଥିଲା । କିନ୍ତୁ କାଲି ରାତି ବାରଟା ପରଠୁଁ ଅବସ୍ଥା ହଠାତ୍ ମାରାତ୍ମକ ହୋଇଉଠିଲା । ତୁ ତ ଯାଜପୁର ଯାଇଚୁ—ତୋତେ ଜଣାଇବାର ଉପାୟ ନାହିଁ । ଆଜି ସକାଳୁ ସୀମା ବୁଝିପାରିଲା ତା' ଅବସ୍ଥା । ତୋତେ ଖୋଜିଲା । ତା'ପରେ...ଏଇ ଏଗାରଟା ବେଳେ ସବୁ ଶେଷ ।

[ନୀରବତା । ନଶିକାନ୍ତର ମୁହଁ ତଳକୁ । ବିକାଶର ଆଖି ଦୁଇଟା ଯେମିତି ଏକାବେଳେକେ ତେଜସ୍ୱାନ ହୋଇ ପଡ଼ିଚି । ସେ ଯେମିତି ଅଣ୍ଡାଳି ଅଣ୍ଡାଳି ନଶିକାନ୍ତ କାନ୍ଧରେ ତା' ହାତ ରଖିଲା । ବିକାଶ ମୁହଁକୁ ଚାହିଁ ନଶିକାନ୍ତ ପୁଣି କଥା ଆରମ୍ଭ କଲା ]

ଯେତେବେଳେ ମୁଁ ତା' ପାଖେ ପାଖେ ଥିଲି । ଭାବିଲି ତମର ଏଠିକି ଫୋନ୍ କରିବି । ହାତ ଚଳିଲା ନାହିଁ । ମୁଁ ନିଜେ ଆସିଲି ।···ବିକାଶ ! ତୋତେ କି ସାନ୍ତ୍ୱନା କି ଆଶ୍ୱାସନା ବା ଦେବି ? ତେଣେ ଶବ ପଡ଼ି ରହିଚି । ତୁ ଗଲେ ଯାହା ବ୍ୟବସ୍ଥା ହେବ ।

ବିକାଶ : ଏଇ ଦିନ ଏଗାରଟା ବେଳେ ସୀମା ମରି ଯାଇଚି !!

ନଶିକାନ୍ତ : ହଁ, ଏଗାରଟା ବେଳେ ।

ବିକାଶ । ·ଆଉ ପ୍ରାୟ ଠିକ୍ ସେତିକି ବେଳେ ଏଠିକି ତେବେ ଆସିଥିଲା କିଏ ? ଏଇଠି, ଏଇ କାଉଚ୍‌ରେ ବସି—ହସି କାନ୍ଦି କଥା କହି ମାତ୍ର କେଇ ମିନଟ୍ ପାଇଁ ଦୁଇଟି ଜୀବନ ପାତ୍ରକୁ ସିଏ ପୂର୍ଣ୍ଣ କରି ରଖିଥିଲା ସେ କିଏ ?

ନଶିକାନ୍ତ : କାହା କଥା ତୁ କହୁଚୁ ବିକାଶ ! କିଏ ଏଠିକି ଆସିଥିଲା—କିଏ ?

ବିକାଶ : ସୀମା ।

□□

## ଚରିତ୍ର

| | | |
|---|---|---|
| ଡାକ୍ତରବାବୁ | : | ବୟସ ପ୍ରାୟ ୪୦।୪୨ |
| କମ୍ପାଉଣ୍ଡର | : | ମଧ୍ୟବୟସ୍କ |
| ପରଶୁରାମ | : | ମଧ୍ୟବୟସ୍କ ଗୃହସ୍ଥ |
| କୃଷ୍ଣ | : | ଯୁବକ |
| ବଶି | : | ନାପିତ |
| ଲତା | : | ଅବିବାହିତା ତରୁଣୀ |
| ବୋଉ | : | ଲତାର ବୋଉ |

[ ମଫସଲ ଅଞ୍ଚଳର ଏକ ଶ୍ରେଷ୍ଠ ସହରରେ ଡାକ୍ତରବାବୁଙ୍କ ଘରୋଇ ଡାକ୍ତରଖାନା । ସମୟ ମଧ୍ୟାହ୍ନ । ଉପସ୍ଥିତ ଡାକ୍ତରବାବୁ ଓ କମ୍ପାଉଣ୍ଡର୍‌ବାବୁ । ]

ଡାକ୍ତର : ଆଉ କେହି ରୋଗୀ ନାହାନ୍ତି ତ ?

କମ୍ପାଉଣ୍ଡର : ନା ସାର୍ ! ଆଉ କେହି ନାହାନ୍ତି ।

ଡାକ୍ତର : ବାପ୍‌ବା ! ଦିନ ଆସି ଦୁଇଟା ବାଜିଲାଣି । ଆଜି ଏ ବେଳା ଅନେକ ରୋଗୀ ଦେଖିଲି—ତିରିଶି ଜଣରୁ ବେଶି ।

କମ୍ପାଉଣ୍ଡର : କାହିଁକି କହୁଚନ୍ତି ଆଜ୍ଞା ! ଆମ ଏ ଡାକ୍ତରଖାନାରେ ଦିନକୁ ଦିନ ରୋଗୀ ସଂଖ୍ୟା ଯେମିତି ବଢ଼ୁଚନ୍ତି ନା···

ଡାକ୍ତର : ରୋଗ ବଢ଼ିଲେ ରୋଗୀ ବଢ଼ିବେ, ଏଇଟା ଆଉ ନୂଆ କଥା କଣ ?

କମ୍ପାଉଣ୍ଡର : ନୂଆ କଥା ହେଲା ସାର୍, ଆମର ଏଇ ଡାକ୍ତରଖାନା; ଆମର ଏଠିକି ରୋଗୀମାନେ ଯେମିତି ଆସୁଚନ୍ତି, ଆଉ ଏଠୁ ଯେମିତି ଫେରୁଚନ୍ତି···

ଡାକ୍ତର : ରହିବାର ବ୍ୟବସ୍ଥା ଏଠି ଯେତେବେଳେ ନାହିଁ, ସେମାନେ ଫେରିବେ ହିଁ ଫେରିବେ ।

କମ୍ପାଉଣ୍ଡର : ମୁଁ ସେ କଥା କହୁନାହିଁ ଆଜ୍ଞା ! ସବୁକଥା ଦେଖି ମୋର ମନେହଉଚି, ଏଇଟା ଆମର ଗୋଟାଏ ଡାକ୍ତରଖାନା ନୁହେଁ ।

ଡାକ୍ତର : ମାନେ ?

କମ୍ପାଉଣ୍ଡର : ଏଇଟା ଗୋଟାଏ ମିଠେଇ ଦୋକାନ ।

ଡାକ୍ତର : (ହସି) ଆପଣ କଣ ଦିନକୁ ଦିନ ପିଲା ହୋଇଯାଉଚନ୍ତି କି କମ୍ପାଉଣ୍ଡର-ବାବୁ ?

କମ୍ପାଉଣ୍ଡର : ହଁ ଆଜ୍ଞା ! ପିଲାମାନେ ଯେମିତି ମିଠେଇ ଦୋକାନରେ ଭିଡ଼ ଜମେଇ ହାତରେ ମିଠେଇପୁଡ଼ା ଧରି ମନଖୁସିରେ ଘରକୁ ଫେରନ୍ତି, ଆମ ରୋଗୀ-ମାନେ ଏଠୁ ଫେରିଲାବେଳେ ଦେଖିବେ ସମସ୍ତଙ୍କ ମୁହଁରେ ସେମିତି ହସ ଖୁସି—ସେମିତି ଆଶା ଆଶ୍ୱାସନା । ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା—ଏ ଡାକ୍ତରବାବୁ ହଉଚନ୍ତି ଜଣେ ଅମୃତହସ୍ତ ଡାକ୍ତର !

ଡାକ୍ତର : ଥୁଡ଼ନ୍ତୁ, ଥୁଡ଼ନ୍ତୁ । ମୁଁ ଏଠି ଆସି ଡାକ୍ତରଖାନା ଖୋଲିଲା ଦିନୁଁ ଆପଣଙ୍କ ମୁହଁରେ ମୋର ଏମିତି ପ୍ରଶଂସା ମୁଁ ଶୁଣିଆସୁଚି । (ଉଠି ପଦଚାରଣ କଲେ)

କମ୍ପାଉଣ୍ଡର : ହେଲେ ସେଗୁଡ଼ିକ ତ ଆଜ୍ଞା ମୋ ନିଜର ଧନ ନୁହେଁ ! ମୋର ଏତେ ବଡ଼ ଭଣ୍ଡାର କାହିଁ ? ପ୍ରଶଂସାର ସୁଅ ସେ ତରଫରୁ ·ବହିଗଲାଚି । ମୁଁ ମଝିରେ ନିମିତ୍ତ ମାତ୍ର ।

ଡାକ୍ତର : ଜଣେ ଡାକ୍ତର ହିସାବରେ ମୋର ଯାହା କର୍ତ୍ତବ୍ୟ, ମୋର ଶକ୍ତିମତେ ମୁଁ ତା କରୁଚି ।···କିନ୍ତୁ କମ୍ପାଉଣ୍ଡର ବାବୁ···

କମ୍ପାଉଣ୍ଡର : ଆଜ୍ଞା !

ଡାକ୍ତର : ଏଠିକି ଯେତେ ରୋଗୀ ଆସୁଚନ୍ତି, ସମସ୍ତେ ଯେ ଭଲ ହଉଚନ୍ତି—କେହି ମରୁନାହାନ୍ତି—ଏ କଥାତ ଆପଣ କହିପାରିବେନାହିଁ ।

କମ୍ପାଉଣ୍ଡର : ନାଇଁ ଆଜ୍ଞା, ସେ କଥା ମୁଁ କହିବ କାହିଁକି ? ଯାହାର ମରିବାର କଥା ସେ ମରୁଚି । ହେଲେ ସେ ମରିବାରେ ବି ଆମର ବାହାଦୂରି ଅଛି ।

ଡାକ୍ତର : (ହସି) ରୋଗୀ ମରିବାରେ ଆମର ବାହାଦୂରି ! କଣ ଆପଣ କହୁଚନ୍ତି ?

କମ୍ପାଉଣ୍ଡର : ସତକଥା କହୁଚି ସାର୍, ମୋ' କଥା ଆପଣ ବିଶ୍ୱାସକରନ୍ତୁ । ମୋ' ନିଜ ଅଭିଜ୍ଞତାରୁ ମୁଁ ଏ କଥା କହୁଚି ।

ଡାକ୍ତର : କଣ ଶୁଣେ । ( ଚୌକିରେ ବସିଲେ )

କମ୍ପାଉଣ୍ଡର : ଧରନ୍ତୁ ଆପଣଙ୍କ ପାଖକୁ ଜଣେ ରୋଗୀ ଆସିଲେ—ଟାଇଫଏଡ଼ ରୋଗୀ ଆପଣ ଚିକିତ୍ସା କଲେ—କିନ୍ତୁ ତା'ର ଦୁର୍ଭାଗ୍ୟ ସେ ମଲା । (କଥାର ମୋଡ଼ ବଦଳାଇ) ଭଗବାନ କରନ୍ତୁ, ଆଉ ଯଦି କେହି ଟାଇଫଏଡ଼ ରୋଗୀ ଆସେ, ସେ ଭଲହେଇଯାଉ, ଆପଣଙ୍କ ହାତଯଶ ରହୁ ।··· (ପୁଣି ପୂର୍ବପରି) କିନ୍ତୁ ସାର୍ ଧରନ୍ତୁ ଯଦି ଏମିତି କେହି ଦୁର୍ଭାଗା···

ଡାକ୍ତର : କୁହନ୍ତୁ ଆପଣ କଣ କହୁଛନ୍ତି ।

କମ୍ପାଉଣ୍ଡର : ସେ ଦୁର୍ଭାଗା ମଲା ! କିନ୍ତୁ ସାର୍ ସେ କେଉଁ ରୋଗରେ କଲା ?

ଡାକ୍ତର : ଟାଇଫଏଡ଼ ରୋଗୀ—ଟାଏଫଡ଼ରେ ମଲା ।

କମ୍ପାଉଣ୍ଡର : ସେଇକଥା ! କିନ୍ତୁ ସାର୍, ମୁଁ ଏମିତି ରୋଗୀ ଦେଖିଚି—ଏମିତି ଡାକ୍ତର ଦେଖିଚି—ଏମିତି ଡାକ୍ତରଖାନା ଦେଖିଚି—ଯେଉଁଠିକି ଟାଇଫଏଡ଼ ରୋଗୀ ଆସିଚି—ଟାଇଫଏଡ଼ ରୋଗର ଚିକିତ୍ସା ହେଇଚି—କିନ୍ତୁ ସେ ରୋଗୀ ମରିଚି ମେଲେରିଆରେ ।

ଡାକ୍ତର : (ଜୋର୍‌ରେ ହସିଉଠି) କମ୍ପାଉଣ୍ଡର ବାବୁ ! ନାଃ ! ଆପଣଙ୍କ କଥା ଶୁଣି ଆମୋଦ ଲାଭକରୁଥିଲେ ବି ଶୁଣିବାକୁ ଆଉ ବେଳ ନାହିଁ । ବନ୍ଦବାନ୍ଦ କରନ୍ତୁ, ଯିବା ।

କମ୍ପାଉଣ୍ଡର : କଲ ଆଜ୍ଞା, ବନ୍ଦକଲି । ବନ୍ଦ୍ କରିବା ତ ମିନିଟ୍‌କର କାମ—
ଖୋଲିବାକୁ ଯିନା ଡେରି ।

[କଥା କହିବା ଅବସରରେ ଡାକ୍ତରଖାନା ବନ୍ଦ୍ କରୁଥାନ୍ତି]

ଡାକ୍ତର : ହଁ ବନ୍ଦ୍ କରନ୍ତୁ । ଚଞ୍ଚଳ ବସାକୁ ଯାଇ କେମିତି ଟିକିଏ ବିଶ୍ରାମ ନେବା । (ହାଇମାରି) ଖୁବ ଦୁର୍ବଳ ଲାଗୁଛି ।

କମ୍ପାଉଣ୍ଡର : ଆପଣଙ୍କର ତ ଗାଧୁଆପାଧୁଆ ଶେଷହୋଇଯାଇଚି ?

ଡାକ୍ତର : ହଁ !

କମ୍ପାଉଣ୍ଡର : ତେବେ ଆଉ ବସାକୁ କାହିଁକି ଯିବେ ?

ଡାକ୍ତର : କି ଆଶ୍ଚର୍ଯ୍ୟ ! ବସାକୁ ଯିବନାହିଁ କଣ ଦାନସାଗ ଏଇଠି ବସିରହିବ ? ଖାଇବ କଣ ?

କମ୍ପାଉଣ୍ଡର : ଏତେ ବଡ଼ କଥାଟାଏ କହିଲେ ଆଜ୍ଞା ?

ଡାକ୍ତର : କି କଥା ?

କମ୍ପାଉଣ୍ଡର : ସବୁ ଭୁଲିଗଲେ ?

ଡାକ୍ତର : କଣ—ହୋଇଚି କଣ—କୁହନ୍ତୁ ତ !

କମ୍ପାଉଣ୍ଡର : ଆପଣଙ୍କ ପୂଝାରି ଟୋକା ପରା ଏ ବେଳାଟା ଛୁଟି ନେଇଚି ?

ଡାକ୍ତର : ଓହୋ ! ସତରେ ଏକା ଭୁଲିଯାଇଚି । ଏ ବେଳା ମୋର ରୋଷେଇବାସ ବନ୍ଦ୍—ଏ ବେଳା ଆପଣଙ୍କ ଘରେ ଖାଇବା କଥା । ଆଉ ତା' ହେଲେ ବସାକୁ ଯିବ କାହିଁକି ? ଏଇଠୁ ଆପଣଙ୍କ ଘରକୁ ଯିବ ।

କମ୍ପାଉଣ୍ଡର : ମୋ ଭାଗ୍ୟ !

ଡାକ୍ତର : ନା ନା, ଭାଗ୍ୟ ଆପଣଙ୍କର ନୁହେଁ, ଇଏ ମୋର ସୌଭାଗ୍ୟ । ଆପଣ ବିଶ୍ୱାସ କରନ୍ତୁ—ମୁଁ ଆଜି ସକାଳୁ ଉଠି ପ୍ରଥମେ ଗୋଟାଏ ଭଦଭଦଳିଆ ଚଢ଼େଇ ଦେଖିଚି ।

କମ୍ପାଉଣ୍ଡର : ପୁଣି ଗୋଟାଏ ଏତେ ବଡ଼ କଥା କହିଲେ !

ଡାକ୍ତର : କାହିଁକି···ଭୁଲ କିଛି କହିନ ।

କମ୍ପାଉଣ୍ଡର : ବେଳାଟାଏ ପୂଝାରି ରହିଲା ନାହିଁ ବୋଲି ଆପଣ ମୋ' ଘରେ ଖାଇବେ । ମୋ ଘର ନ ଥିଲେ ହୋଟେଲ୍‌ରେ ଖାଇଥାନ୍ତେ । ଏଥିରେ ପୁଣି କହୁଚନ୍ତି କଣ ନା—ସୌଭାଗ୍ୟ ! (କମ୍ପାଉଣ୍ଡର ଯେମିତି ଟିକିଏ ଗମ୍ଭୀର ହୋଇପଡ଼ୁଛନ୍ତି)

ଡାକ୍ତର : ବୁଝିଲି ଆପଣଙ୍କର ଇଙ୍ଗିତ ! କିନ୍ତୁ କମ୍ପାଉଣ୍ଡର ବାବୁ, ଏ ଆଲୋଚନା କରି ଆଉ ଲାଭ କଣ କୁହନ୍ତୁ !

କମ୍ପାଉଣ୍ଡର : ଲାଭ ନାହିଁ ?

—4

ଡାକ୍ତର : ନାଁ, ଲାଭ ନାହିଁ । ସରକାରୀ ଚାକିରି କରିବିନାହିଁ ବୋଲି ସ୍ଥିରକଲି—କଲି ନାହିଁ । ସେମିତି ସ୍ଥିର କଲି, ବିବାହ କରିବିନାହିଁ । ଆଉ ବିବାହ ଯେତେବେଳେ କରିନି—ନିଜର ଘରସଂସାର ବୋଲି ଯେତେବେଳେ ସେମିତି କିଛୁ ନାହିଁ—ସେତେବେଳେ ଜୀବନଟା ଏମିତି କଟିବ ହିଁ କଟିବ । ଏ ପ୍ରସଙ୍ଗ ତେବେ ଆଲୋଚନା କରି ଲାଭ କଣ ?

କମ୍ପାଉଣ୍ଡର : କିନ୍ତୁ ଆଜ୍ଞା ! ନିଜର ସଂସାର ନିଜର ପରିବାର ଥିଲେ ଜୀବନର ଅତି ସାମାନ୍ୟ ସୁଖ-ସ୍ୱାଚ୍ଛନ୍ଦ୍ୟ ଟିକିକ ଯେ ସ୍ୱର୍ଗସୁଖଠାରୁ ବଳିଯାଏ—ଏ କଥା କଣ ଆପଣ ଅସ୍ୱୀକାର କରିବେ ?

ଡାକ୍ତର : ନା ନା, ମୁଁ ଅସ୍ୱୀକାର କରିବି କାହିଁକି ? ମୋର ଲାଙ୍ଗୁଳ ନାହିଁ ବୋଲି ମୁଁ କଣ କହିବି—ଏ ସାରା ସଂସାରରେ ସମସ୍ତଙ୍କର ଲାଙ୍ଗୁଳ କଟାହେଉ ! ଏଇ ତ, ଆଖି ଆଗରେ ଆପଣଙ୍କୁ ଦେଖୁଛି—ଘରସଂସାର କରି କି ଆରାମରେ ଆପଣ ଅଛନ୍ତି ।

କମ୍ପାଉଣ୍ଡର : ମୁଁ ଆରାମରେ ଥାଏ ନଥାଏ, ଆପଣ ମୁହେଁ ମୁହେଁ ଯେ ଏ କଥାଟା ମାନି ନେଉଚନ୍ତି ସେଇ ଯଥେଷ୍ଟ ।

ଡାକ୍ତର : ମୁଁ ତ କହୁଚି—ସତକଥାଟା ସ୍ୱୀକାର କରିବାରେ ମୋର ଆଦୌ ଆପତ୍ତି ନାହିଁ; କିନ୍ତୁ ସେଥିରେ ମୋର ବା ଆପଣଙ୍କର କାହାରି କିଛି ବୋଧହୁଏ ଲାଭନାହିଁ ।

କମ୍ପାଉଣ୍ଡର : ଲାଭ କଥା କହିବାକୁ ଆମେ କିଏ ଆଜ୍ଞା ? ଯିଏ ଆମ ଜୀବନକୁ ନେଇ ବେପାର ବଣିଜ କରୁଛି, ଏକା ସେଇ ଜାଣେ ଲାଭ କାହାର କି କ୍ଷତି କାହାର । ସେଇ ପରମବ୍ରହ୍ମ ପରମେଶ୍ୱର ଯଦି ଦୃଷ୍ଟି ଫେରାଇବେ···

ଡାକ୍ତର : (ହସି) ତାଙ୍କର ସେ ଶୁଭଦୃଷ୍ଟି ମୋ ଉପରେ ପଡ଼ିବାର ଆଉ କୌଣସି ସମ୍ଭାବନା ନାହିଁ । ମୁଁ ତାଙ୍କର ଦୃଷ୍ଟି ସୀମା ଅତିକ୍ରମ କରିଗଲିଣି । ଅତଏବ ଏ ଆଲୋଚନା ଏଇଠି ବନ୍ଦରଖି ଆସନ୍ତୁ ଯିବା ।

କମ୍ପାଉଣ୍ଡର : ପ୍ରଭୁ ହେ !

ଡାକ୍ତର : କାହିଁକି ମିଛରେ ପ୍ରଭୁଙ୍କୁ ଡାକୁଚନ୍ତି ? ଆସନ୍ତୁ ଯିବା ।

କମ୍ପାଉଣ୍ଡର : ଚାଲନ୍ତୁ ।

ଡାକ୍ତର : ହଁ, କମ୍ପାଉଣ୍ଡର ବାବୁ ! ସାଇକେଲଟା ମୋର ଏଇଠି ଥାଉ । ସାଇକେଲଟା ମିଛରେ ନେବି କାହିଁକି ?

କମ୍ପାଉଣ୍ଡର : ନାହିଁ ଆଜ୍ଞା, ସାଇକେଲଟା ଆଣିଥାନ୍ତୁ ।

ଡାକ୍ତର : କାହିଁକି ?

କମ୍ପାଉଣ୍ଡର : ଖାଇସାରି ଟିକିଏ ବିଶ୍ରାମ ନେଇ ଆମେ ଯିଆଡ଼େ ଯିଆଡ଼େ ବଜ୍ରପୁର ଯିବା ।

ଡାକ୍ତର : କୋଉ ବଜ୍ରପୁର ?

କମ୍ପାଉଣ୍ଡର : ଏଇ ଆଜ୍ଞା, ଆମ ସଦେଇପୁର ପାଖ ବଜ୍ରପୁର—ଏଠୁ ମୋଟେ ବାଡ ତିନି ମାଇଲ୍ ।

ଡାକ୍ତର ବଜ୍ରପୁର ଯିବା କାହିଁକି ?

କମ୍ପାଉଣ୍ଡର : ବଜ୍ରପୁର ପର୍ଶୁରାମ ବାବୁଙ୍କ ଘର—ତାଙ୍କ ନାଁ ଆପଣ ଶୁଣିଥିବେ । ବେଶ୍ ଘରୁଆ ଘର ।

ଡାକ୍ତର : ନା, ମୁଁ ଶୁଣିନାହିଁ କି ତାଙ୍କୁ ଜାଣିନାହିଁ ।

କମ୍ପାଉଣ୍ଡର : ଖୁବ୍ ଖାନ୍‌ଦାନ୍ ଘର । ତାଙ୍କ ସେ ଅଞ୍ଚଳରେ ତାଙ୍କର ବେଶ୍ ନାଁ ଡାକ୍, ଯାହାଙ୍କୁ କହନ୍ତି ଭଦ୍ରଲୋକ ।

ଡାକ୍ତର : ସେ ନିଜେ ଆସିଥିଲେ ?

କମ୍ପାଉଣ୍ଡର : ନା, ଲୋକ ପଠେଇଥିଲେ ।

ଡାକ୍ତର : କେତେବେଳେ ?

କମ୍ପାଉଣ୍ଡର : ଆପଣ ଯେତେବେଳେ ପୋଷ୍ଟମାଷ୍ଟର ବାବୁଙ୍କ ଘରକୁ ଯାଇଥିଲେ ।

ଡାକ୍ତର : ମୁଁ ଯିବାପାଇଁ ଆପଣ ତାଙ୍କୁ ଜବାବ୍ ଦେଇଚନ୍ତି ?

କମ୍ପାଉଣ୍ଡର : ଆଜ୍ଞା ।

ଡାକ୍ତର : ମୋତେ ନ ପଚାରି ଜବାବ ଦେଲ କାହିଁକି ?

କମ୍ପାଉଣ୍ଡର : ଆପଣ ତ ନଥିଲେ—ଏଣେ ଏଠି ରୋଗୀ ଭର୍ତ୍ତି !

ଡାକ୍ତର : ମୁଁ ଆପଣଙ୍କୁ କହିଥିଲି ନା, ମତେ ନ ପଚାରି କୋଉଠିକି ଭିଜିଟ୍‌ରେ ଯିବାପାଇଁ ଆପଣ କାହାକୁ ଜବାବ ଦେବେନାହିଁ ।

କମ୍ପାଉଣ୍ଡର : ପରଶୁରାମ ବାବୁ ଅତି ମାତ୍ରାରେ ଭଦ୍ରଲୋକ···

ଡାକ୍ତର : ମୋ' ଦୃଷ୍ଟିରେ ମୋର ସବୁ ରୋଗୀ ଭଦ୍ରଲୋକ; କିନ୍ତୁ ଗୋଟାଏ ଭିଜିଟ୍‌ରେ ଯିବାପାଇଁ ମୋର ସୁବିଧା ଅସୁବିଧା କଣ—ମୋର ଆଉ କୋଉଠିକି ଯିବାର ଅଛି କି ନାହିଁ···

କମ୍ପାଉଣ୍ଡର : ମୁଁ ଡାଏରି ଦେଖିଛି ସାର୍, ଆଜି ଆପଣଙ୍କର ଆଉ କୋଉଠିକି ଭିଜିଟ୍‌ରେ ଯିବାର କିଛି ପ୍ରୋଗ୍ରାମ ନାହିଁ ।

ଡାକ୍ତର : ରୋଗୀ କିଏ ? ନିଜେ ପରଶୁରାମ ବାବୁ ! (କମ୍ପାଉଣ୍ଡର ନିରୁତ୍ତର) କଣ ପଚାରୁଛି ଶୁଣୁ ନାହାନ୍ତି ଆପଣଙ୍କୁ ?

କମ୍ପାଉଣ୍ଡର : ଆ···ଜ୍ଞା ?

ଡାକ୍ତର : କଏ ରୋଗୀ, ତା'ବି ଜାଣନ୍ତିନାହିଁ !! ବେଶ ! ଭଲ କରିଚନ୍ତି । ଆପଣ କଥା ଦେଇଚନ୍ତି, ଆପଣ ବୁଝନ୍ତୁ । ମୁଁ ଯିବିନାହିଁ ।

କମ୍ପାଉଣ୍ଡର : ଆଜ୍ଞା, ଆପଣଙ୍କ ଉପରେ ଭରସା ରଖି ମୁଁ ତାକୁ ଜବାବ ଦେଇଚି । ନଗଲେ ମୁଁ ମିଛୁଆ ହୋଇଯିବି ।

ଡାକ୍ତର : ଆରେ ବାବୁ ମୁଁ ଯିବି କାହିଁକି ? କାହାକୁ ଦେଖିବାକୁ ଯିବି ?

କମ୍ପାଉଣ୍ଡର : ଆଜ୍ଞା—ପରଶୁରାମ ବାବୁଙ୍କ ଝିଅକୁ ।

ଡାକ୍ତର : ସେଇଆ ତ କହିବେ, ଅଙ୍ଗଅଙ୍ଗ ହଉଚନ୍ତି କାହିଁକି ? କଣ ହୋଇଚି ତାଙ୍କର ? ଖୁବ୍ ସିରିୟାସ୍ କେଶ୍ ?

କମ୍ପାଉଣ୍ଡର : ଆଜ୍ଞା...

ଡାକ୍ତର : ତା' ମଧ୍ୟ ଜାଣନ୍ତି ନାହିଁ ? କଣ ରୋଗ—ଅବସ୍ଥା କେମିତି—କିଛି ନଜାଣି ଆପଣ ଭିଜିଟ୍ ପାଇଁ ରାଜିହୋଇଗଲେ ?

କମ୍ପାଉଣ୍ଡର : ଆପଣ ନିଜ ଆଖିରେ ଦେଖିଲେ ସବୁ ବୁଝିପାରିବେ ।

ଡାକ୍ତର : ବୁଝିଲେ କମ୍ପାଉଣ୍ଡର ବାବୁ—ଆପଣଙ୍କର ସବୁ ଭଲ; କିନ୍ତୁ ମଝିରେ ମଝିରେ ଏଇ ସବୁ ଯେ ଅଦ୍ଭୁତ ଖିଆଲ ଦେଖାଦିଏ...(କିଛିଏ ଭାବି) ଆଚ୍ଛା ଆଚ୍ଛା, ମୋର ମନେପଡୁଚି, ଆପଣ ଆଉ ଥରେ କେବେ ମତେ ବଜାପୁର ଯିବାକୁ କହିଥିଲେ । ମୁଁ ଅବଶ୍ୟ ଗଲିନାହିଁ । କଣ ଏଇ ପରଶୁରାମ ବାବୁଙ୍କ ଘରକୁ ?

କମ୍ପାଉଣ୍ଡର : (ଖୁବ୍ ଖୁସିରେ) ଆଜ୍ଞା !

ଡାକ୍ତର : ତା'ପରେ କଣ ହେଲା ମୁଁ ତ ଜାଣିନାହିଁ ! କଣ ରୋଗ ଆପେ ଆପେ ଭଲ ହୋଇଗଲା ?

କମ୍ପାଉଣ୍ଡର : ବୋଧହୁଏ ।

ଡାକ୍ତର : ଏଥର ବି ସେମିତି ଆପେ ଆପେ ଭଲହୋଇଯିବ ।

କମ୍ପାଉଣ୍ଡର : ନାଇଁ ଆଜ୍ଞା' ଆଜି ନ ଗଲେ ମୋ ମୁହଁ ରହିବନାହିଁ ।

ଡାକ୍ତର : ଆପଣଙ୍କ ସାଥିରେ ତାଙ୍କର ସୁସମ୍ପର୍କ ଅଛି ବୋଧହୁଏ ?

କମ୍ପାଉଣ୍ଡର : ଏମିତି...ଟିକେ...ଟିକେ...

ଡାକ୍ତର : ଶୁଣନ୍ତୁ, ମୁଁ ଆପଣଙ୍କୁ କହିରଖୁଚି—ଭବିଷ୍ୟତରେ ଏ ଭଳି ଭୁଲ୍ ଯେପରି ଆଉ ଆପଣଙ୍କର ନ ହୁଏ । ଯଦି ହୁଏ, ଆପଣଙ୍କ କଥା ଆପଣ ବୁଝିବେ ।

କମ୍ପାଉଣ୍ଡର ! ଆଜ୍ଞା !

ଡାକ୍ତର : ହଉ, ଆସନ୍ତୁ, ସାଇକେଲଟା ତେବେ ନେବାକୁ ପଡ଼ିବ ।

କମ୍ପାଉଣ୍ଡର : ହଁ ଆଜ୍ଞା ! ଚାଲନ୍ତୁ । (ନମ୍ର ଗଳାରେ) ପ୍ରଭୁ ହେ, ଈଶାଣେଶ୍ୱର...

ଡାକ୍ତର : କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ପ୍ରଭୁ ବଟ ଗୋସାଇଁ···ମା' କୁଆମଚଣ୍ଡୀ···
ଡାକ୍ତର : କମ୍ପାଉଣ୍ଡର ବାବୁ !
କମ୍ପାଉଣ୍ଡର : ଚାଲନ୍ତୁ ଆଜ୍ଞା, ଚାଲନ୍ତୁ ।
ଡାକ୍ତର : ଆଗେ ଏ କଥା କଣ କୁହନ୍ତୁ !
କମ୍ପାଉଣ୍ଡର : କି କଥା ଆଜ୍ଞା ?
ଡାକ୍ତର : ଡାକ୍ତର ମୁଁ—ଟଙ୍କା ନେଇ ରୋଗୀ ଦେଖି ଯିବି । ଏଥିରେ ଆପଣ କି ଗଡ଼ୁ ଜଡ଼ଲେ ଯେ ଆନନ୍ଦରେ ଗଦ୍‌ଗଦ୍ ହୋଇ ଅତି ଭକ୍ତିର ସହିତ ଦେବଦେବୀଙ୍କୁ ସ୍ମରଣ କରୁଛନ୍ତି ? କଥା କଣ ?
କମ୍ପାଉଣ୍ଡର : କିଛି ନୁହେଁ ଆଜ୍ଞା—ଆସନ୍ତୁ । ତେଣେ ଅନ୍ନ ପୂର୍ଣ୍ଣ କି ଶୁଖି ଚଣା-ଚାଉଳ ହୋଇଯିବଣି । ସାଇକେଲ୍‌ଟା ମୁଁ ଧରୁଛି—ଆସନ୍ତୁ ।

[ ବଳଦପୁର । ପରଶୁରାମ ବାବୁଙ୍କ ଦାଣ୍ଡଘର । ସମୟ ଅପରାହ୍ଣ । ପଲ୍ଲୀ ଅଞ୍ଚଳର ଏକ ଅବସ୍ଥାସମ୍ପନ୍ନ ଗୃହସ୍ଥ ଘରର ଉପଯୋଗୀ ଉପକରଣମାନ ରହିଚ । ପରଶୁରାମ ବାବୁ ଓ ତାଙ୍କ ପୁରୁଣା କୁଞ୍ଜ ଟିକିଏ ଉଦ୍‌ବିଗ୍ନ ଅବସ୍ଥାରେ କାହାର ଅପେକ୍ଷାରେ ରହିଚନ୍ତି । ]

ପରଶୁ : ଆରେ କୁଞ୍ଜ !
କୁଞ୍ଜ : ମଉସା !
ପରଶୁ : ବେଳ ତ ଆସି ହୋଇଗଲା ।
କୁଞ୍ଜ : ହଁ ମଉସା, ବେଳ ହୋଇଗଲା ।
ପରଶୁ : କାହାନ୍ତି ସେମାନେ ?
କୁଞ୍ଜ : ଆସୁଥିବେ ।
ପରଶୁ : କଣ ତୋତେ କହିଥିଲେ ?
କୁଞ୍ଜ : କହିଥିଲେ ତିନଟା ସାଢ଼େତିନଟା ବେଳେ ପହଞ୍ଚିବେ ।
ପରଶୁ : ସାଢ଼େ ତିନଟା ତ ଆସି ବାଜିଲା ।
କୁଞ୍ଜ : ଆସି ପହଞ୍ଚିଲେଣି କି କଣ—ମୁଁ ଦେଖେଁ । (ଯାଉଥିଲା)
ପରଶୁ : ଆସିଲେ କଣ ଆମେ ଜାଣି ପାରିବା ନାହିଁ ଯେ ତୁ ଯାଉଚୁ ଦେଖିବାକୁ !··· ଶୁଣ !
କୁଞ୍ଜ : କଣ ?

ପରଶୁ : ସେ ଡାକ୍ତରବାବୁଙ୍କ ନାଁ କଣଟି ?
କୁଞ୍ଜ : ନାଁ ? ତାଙ୍କ ନାଁ ତ ମୁଁ ଜାଣିନାହିଁ ମଉସା !
ପରଶୁ : ଜାଣିନୁ ବୋଲି ପଚାରି ଆସି ପାରିଲୁ ନାହିଁ ?
କୁଞ୍ଜ : କାହାକୁ ପଚାରିବ ? ସେଠି ତ ସମସ୍ତେ ଡାକନ୍ତି ଡାକ୍ତରବାବୁ !
ପରଶୁ : ତାଙ୍କ କମ୍ପାଉଣ୍ଡରବାବୁଙ୍କୁ ପଚାରି ପାରିଲୁ ନାହିଁ ?
କୁଞ୍ଜ : ବୁଝିଲ ମଉସା!, ନଜେ କମ୍ପାଉଣ୍ଡର ବାବୁ ବି ଅନ୍ୟମାନଙ୍କ ଭଳି ତାଙ୍କ ଡାକ୍ତରବାବୁଙ୍କ ନାଁ ଜାଣିନଥିବେ ।
ପରଶୁ : ଏଇଟା ତୋ'ର ଖାଲି ମନଗଢ଼ା କଥା ।
କୁଞ୍ଜ : ହେଲେ ମଉସା, ନାଁରୁ କଣ ମିଳିବ ? ନାଁଟା ଜାଣିବା କଣ ବଡ଼ କଥା ?
ପରଶୁ : ତା' ଠିକ୍ ତେ, ହେଲେ ଆଜି ଯେତେବେଳେ···(ଟିକିଏ ରହିଯାଇ) ଆରେ ହଁ, କୁଞ୍ଜ, ତୁ ଯେତେବେଳେ ଗଲୁ, ଡାକ୍ତରବାବୁ ଥିଲେ କୋଉଠି ? ତାଙ୍କ ବସାରେ ନା ଡାକ୍ତରଖାନାରେ ?
କୁଞ୍ଜ : ଡାକ୍ତରବାବୁ ମୋଟେ ନ ଥିଲେ—କୁଆଡ଼କୁ ଯାଇଥିଲେ ।
ପରଶୁ : ତୁ ତା'ହେଲେ କାହା ସାଙ୍ଗରେ କଥାବାର୍ତ୍ତା ହୋଇ ଆସିଲୁ ?
କୁଞ୍ଜ : ତାଙ୍କ କମ୍ପାଉଣ୍ଡର୍ ବାବୁଙ୍କ ସାଙ୍ଗରେ ।
ପରଶୁ : ଡାକ୍ତର ତା' ହେଲେ ଏକଥା କିଛୁ ଜାଣିନାହାନ୍ତି ?
କୁଞ୍ଜ : ଜାଣି ନ ଥିବେ କେମିତି ? କମ୍ପାଉଣ୍ଡର ଯେତେବେଳେ ଜାଣିଲେ, ଡାକ୍ତର ତ ବଳେ ଜାଣିବା କଥା ।
ପରଶୁ : ତୁ କଣ ମତେ ବୁଝେଇବୁ କି'ରେ କୁଞ୍ଜ ? (ଡାକିଲେ) ଆହେ ଶୁଣୁଚ ! ଶୁଣିବଟି ଏଣେ । (ବୋଉ ଆସିଲେ)
ବୋଉ : କଣ ?
ପରଶୁ : କୁଞ୍ଜ କଥା ଶୁଣିଲଣି ? ଡାକ୍ତର ବାବୁଙ୍କ ସାଙ୍ଗରେ ତା'ର ମୋଟେ ଦେଖା ହୋଇନ ।
ବୋଉ : ମୁଁ ଜାଣିଚି ।
ପରଶୁ : କଣ ହେଲ ? ତମେ ସବୁ ଜାଣି ଚୁପ୍‌ଚାପ୍ ବସିଚ ! ମତେ ବି କିଛୁ କହୁନ !
ବୋଉ : କହୁଥା'ନ୍ତି କଣ ଶୁଣେ ? ଏ ସବୁ କଥାରେ କଣ କିଏ ନଜେ କିଛୁ କରେ ? ସବୁ କାମ ମଝିରେ ଆଉ ଜଣକେଦ୍ୱାରା ହୁଏ ।
କୁଞ୍ଜ : ଏଇ ଆଉ ଜଣକ ହେଲେ କମ୍ପାଉଣ୍ଡରବାବୁ, ନାହିଁ ମାଉସୀ ?
ବୋଉ : ତୋ' ମଉସାଙ୍କୁ ସେ କଥା ବୁଝେଇଦେ' ।

ପରଶୁ : ହଁ, ବୁଝିଲି ।…ଆଚ୍ଛା, ତାଙ୍କର ଆସିବା ବେଳ ତ ହେଇଗଲା—ତମର ଏଣେ କେତେଦୂର ଗଲା ?

ବୋଉ : ରନ୍ଧାବଢ଼ା ସବୁ ସରିଲାଣି—ଖାଲି ଲୁଚି ଦି’ଖଣ୍ଡ ଛଣାହେବ ।

ପରଶୁ : ଲୁଚି ବନ୍ଦୋବସ୍ତ କାହିଁକି କଲ ଶୁଣେ ?

ବୋଉ : ଆଉ କଣ କରିଥାନ୍ତି ?

ପରଶୁ : ଡାକ୍ତର ମଣିଷ ସେ—ଆଜି ଯିନା ହରିପୁରରେ ରହିଲେ । ନ ହେଲେ ଚିରଦିନ ତାଙ୍କର ସହର ବଜାରରେ କାରବାର । ତାଙ୍କୁ କଣ ଲୁଚି ପୁରିର ଅଭାବ ଅଛି ?

ବୋଉ : ତମକୁ ଯେବେ ଅଭାବ ଥିଲା, ମତେ ସେ କଥା କହିଲ ନାହିଁ ?

ପରଶୁ : ଅଭାବ କଥା ମୁଁ କହୁ ନାଇଁ, ମୁଁ କହୁଥିଲି ଆମ ଦେଶୀ ଢଙ୍ଗରେ ଛୁଞ୍ଚିପତ୍ର କି ସରୁଚକୁଳି କି ମାଲପୁଆ—ଏମିତି କିଛି କରିଥିଲେ ତାଙ୍କ ମନକୁ ପାଇଥାନ୍ତା ।

ବୋଉ : ନାଇଁ ନାଇଁ, ଚକୁଳି ପିଠଉ କଥା ନୁହେଁ । ସେଥିରେ ସେ ଆମ କୁ କଳିଦିବେ । କହିବେ, ଏଗୁଡ଼ାକ କାହାଡ ମରିହଣ୍ଡି ଥା—ସ୍ୱାଦ୍ଧୁ କିଛି ମାଲୁମ ନାହିଁ ।

ପରଶୁ : ହଇରେ କୁଞ୍ଜ, ଏ କଥା କହିବେ ସେ ?

କୁଞ୍ଜ : ସିଏ କଣ କହିବେ ନକହିବେ—କଣ ଖାଇବେ ନଖାଇବେ—ସେ କଥା ମାଉସୀ ବୁଝିବେ, ଆପଣ ସେଥିରେ ମୁଣ୍ଡ ପୂରାଉଚନ୍ତି କାହିଁକି ?

ବୋଉ : ହଁ, ସେ କଥା ମୋ’ତକ ଛାଡ଼ିଦିଅ ।

ପରଶୁ : ଆଚ୍ଛା, ଛାଡ଼ିଦେଲି । ହଁ…ଆରେ କୁଞ୍ଜ, ସିଏ ଆଜି ଆସୁଚନ୍ତି ବୋଲି ଗାଁରେ କେହି ଜାଣିଚନ୍ତି କି ? କାହାକୁ କହିଚୁ ?

କୁଞ୍ଜ : ନା, କାହାକୁ କହିନି । କେହି ଜାଣିନାହାନ୍ତି ।

ପରଶୁ : ଭଲ—କାହାକୁ କହିବାର ଦରକାର କଣ ? କେତେବେଳେ କୋଉ କଥା !

ବୋଉ : ସେ ବୁଦ୍ଧି କୁଞ୍ଜର ଅଛି ।

ପରଶୁ : ନିଶ୍ଚୟ ଅଛି ।…ହଁ, ମୁଁ କଣ କହୁଥିଲିକି…ଶୁଣ ପାଖକୁ ଆସ ।

(କୁଞ୍ଜ ବାହାରକୁ ଚାଲିଗଲା)

ବୋଉ : କହୁନ କଣ କହୁଚ…ମତେ ଶୁଭୁଚି ।

ପରଶୁ : ଇ…ସ୍ନେ…

ବୋଉ : କିଏ ?

ପରଶୁ : ଲତା ! ଲତା କଣ କରୁଚି ?

ବୋଉ : ଶୋଇଥିଲା…ଏଇନେ ବସିଚି ।

ପରଶୁ : କାହୁଁଚ କି ?

ବୋଉ : ଯୁଗକୁ ଯୁଗ ବଦଳିଲା, ହେଲେ ତମର ସେ ମରହଟ୍ଟିଆ ଢଙ୍ଗ ବଦଳିଲା ନାହିଁ । କଉ, ସେ କାନ୍ଧବ କାହିଁକି ? ସେମିତିକା ଝିଅ ସେ ନୁହେଁ ।

ପରଶୁ : ମୁଁ କଣ ଜାଣିନାହିଁକି ? ଜାଣିଚି । ଝିଅ ଆମର ସେମିତିକା ନୁହେଁ ।···କାନ୍ଦୁ ନାହିଁ ତେବେ ?

ବୋଉ : ପୁଣି ?···

ପରଶୁ : ମନ ଭଲ ଅଛି ?

ବୋଉ : ହେଇଟି, ତମେ ଏମିତି ଖୁଣ୍ଟିନାଣ୍ଟି କଥା ମତେ ପଚାରନାହିଁ । ଏ ବେଳରେ କାହା ମନ ଭଲ ନ ଥାଏ କି ଖରାପ ନ ଥାଏ । ଏଇଟା ପରା··· ଯାହା କହନ୍ତି, ଗୋଟାଏ ଜୀବନ ମରଣର ଘାଟି । ଯାହା ତା' ଭାଗ୍ୟରେ ଥିବ, ଘଟିବ ।

ପରଶୁ : ଠିକ୍, ଠିକ୍—ଠିକ୍ କହୁଚ । ଭାଗ୍ୟର ଲିଖନ କେ କରିବ ଆନ ।

(କୁଞ୍ଜ ଆସିଲା)

କୁଞ୍ଜ : ଆଇଲେଣି—ଆଇଲେଣି ମଉସା—ଆସିଗଲେ ।

ପରଶୁ : ତୁ ଯା—ତାଙ୍କୁ ପାଛୋଟି ଆଣି ଘରେ ବସା । ମୁଁ ଟିକିଏ ପରେ ଆସିବି । ···ହେଇଟି, ତମେ ଆଉ ଏଠି ଠିଆହୋଇ ରହିଲ କାହିଁକି ? ଆସ !

ବୋଉ : ରୁହ, ଟିକିଏ ଦେଖେଁ ।

ପରଶୁ : ଦେଖିବା ବେଳ କଣ ଚାଲିଯାଉଚି ? ଆଗେ ତେଣେ ଯାଇ ତମ ବରାଦ କର ।

ବୋଉ : ରଖେଇ ଦେବ ନାହିଁ ମତେ ଇଏ ଏଠି । (ଦୁହେଁ ଭିତରକୁ ଗଲେ ।)

( ଡାକ୍ତର ଓ କମ୍ପାଉଣ୍ଡର ଦାଣ୍ଡ ପାହାଚ ଉପରକୁ ଉଠିଲେ । )

କୁଞ୍ଜ : ଧୁଅନ୍ତୁ ଆଜ୍ଞା—ଗୋଡ଼ ଧୁଅନ୍ତୁ—ଏଇ ପାହାଚ ଉପରକୁ ଆସନ୍ତୁ ।···ଆରେ ବଶିଆ, ପାଣିଗାଲଟା ବାବୁଙ୍କୁ ଦେ ।

ଡାକ୍ତର : ଗୋଡ଼ ଧୋଇବ ? କାହିଁକି ? ଗୋଡ଼ ମୋର କିଛି ହୋଇନ ।

କୁଞ୍ଜ : ଏଇଟା ପରା ଗୋଟାଏ ଆମର ବିଧି—ଆପଣ କଣ ଜାଣିନଥିବେ ?

ଡାକ୍ତର : ଜାଣେ । କିନ୍ତୁ ଏଠିକି ମୁଁ ବିଧିରକ୍ଷା କରିବାକୁ ଆସିନ, ମୁଁ ଆସିଚି ମୋ କାମରେ । ପାଦରେ ମୋର ଜୋତା—ଧୋଇବାର ଦରକାର କ'ଣ ?

କୁଞ୍ଜ : ହେଲେ ଆଜ୍ଞା···

କମ୍ପାଉଣ୍ଡର : କୁଞ୍ଜବିହାରୀ !

କୁଞ୍ଜ : ଆଜ୍ଞା !

କମ୍ପାଉଣ୍ଡର : ଥାଉ—ଗୋଡ଼ ଧୋଇବାର କିଛି ଆବଶ୍ୟକତା ନାହିଁ ।

( ଦୁହେଁ ଘର ଭିତରକୁ ଆସିଲେ )

ଡାକ୍ତର : ଏ ଘର ଭିତରେ ଜୋତା ପିନ୍ଧି ବସିବାରେ କିଛି ବାଧା ନାହିଁ ତ ?

କୁଞ୍ଜ : ନାଇଁ ଆଜ୍ଞା, କିଛି ବାଧା ନାହିଁ । ଜୋତା ପିନ୍ଧି ଗ୍ରୋପେଇଘର ଭିତରେ ପଶିଲେ ବି ଆପଣଙ୍କୁ କେହି ବାଧାଦେବେନାହିଁ ।···ବସନ୍ତୁ ଆଜ୍ଞା ବସନ୍ତୁ ।

ଡାକ୍ତର : ହୁଁ ! (ଡାକ୍ତର ଓ କମ୍ପାଉଣ୍ଡର ଦୁହେଁ ବସିଲେ)

କମ୍ପାଉଣ୍ଡର : ପରଶୁରାମବାବୁ କାହାନ୍ତି ?

କୁଞ୍ଜ : ଅଛନ୍ତି—ଡାକଦଉଚି ।

ଡାକ୍ତର : (ହସି) "ଜୋତା ପିନ୍ଧି ଗ୍ରୋପେଇ ଘର ଭିତରେ ପଶିଲେ ବି କେହି ବାଧା ଦେବନି ।"···ଡାକ୍ତରମାନଙ୍କ ପାଇଁ ବୋଧହୁଏ ଏ ସବୁ ବିଶେଷ ସୁବିଧା··· ନା କଣ କହୁଚନ୍ତି କମ୍ପାଉଣ୍ଡରବାବୁ ! (କମ୍ପାଉଣ୍ଡର ଆଖିବୁଜି କଣ ଭାବୁଥାନ୍ତି)

ଡାକ୍ତର : କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ଏଁ···ସାର୍ ?

ଡାକ୍ତର : କଣ ହେଇଚି ଆପଣଙ୍କର ? ଏମିତି ଅନ୍ୟମନସ୍କ ହେଇପଡ଼ୁଚନ୍ତି ଯେ ?

କମ୍ପାଉଣ୍ଡର : ନାଇଁ ଆଜ୍ଞା, ମୁଁ ଭାବୁଥିଲି···

ଡାକ୍ତର : କଣ ଭାବୁଥିଲେ ?

କମ୍ପାଉଣ୍ଡର : ମୁଁ ଭାବୁଥିଲି···ଏଇ ପରଶୁରାମବାବୁଙ୍କ କଥା ।

ଡାକ୍ତର : ପରଶୁରାମବାବୁଙ୍କ ଘରକୁ ଆମେ ଆସିଚୁ—ତାଙ୍କ କଥା ନ ଭାବି ଆଉ ଅନ୍ୟ କାହା କଥା ଆପଣ ଭାବିବେ ବା କାହିଁକି ?

କମ୍ପାଉଣ୍ଡର : ସେଇ କଥା ସାର୍ !

ଡାକ୍ତର : ଘରଦ୍ୱାରରୁ ଯାହା ଜଣାଯାଉଚି, ପରଶୁରାମବାବୁଙ୍କ ଅବସ୍ଥା···ମନ୍ଦ ନୁହେଁ ।

କମ୍ପାଉଣ୍ଡର : ନାଇଁ ଆଜ୍ଞା, ମନ୍ଦ ନୁହେଁ । ବେଶ୍ ନାଁ-ଡାକ ଘର । (ପରଶୁରାମ ଆସିଲେ) ଏଇ ତ, ପରଶୁରାମବାବୁ ଆସିଲେଣି ।···ନମସ୍କାର ଆଜ୍ଞା !

ଡାକ୍ତର : ନମସ୍କାର ।

ପରଶୁ : ନମସ୍କାର—ନମସ୍କାର । ଆଉ ସବୁ ଭଲ ତ ? ବାଟରେ କିଛି ଅସୁବିଧା··· (ଅର୍ଥପୂର୍ଣ୍ଣ ଦୃଷ୍ଟିରେ କମ୍ପାଉଣ୍ଡରଙ୍କୁ ଚାହିଁଲେ)

କମ୍ପାଉଣ୍ଡର : ଅସୁବିଧା···

ଡାକ୍ତର : ନା—ନା—ଏମିତି କିଛି ଅସୁବିଧା ହେଇନି । ତେବେ କମ୍ପାଉଣ୍ଡରବାବୁ ଯାହା କହୁଥିଲେ ତିନି ଚାରି ମାଇଲ ବାଟ, ପ୍ରକୃତରେ ବୋଧହୁଏ ହରିପୁରଠୁ ଆପଣଙ୍କ ଗାଁ ଛ' ସାତ ମାଇଲ ବାଟ ହବ ।

ପରଶୁ : କାହିଁକି—କାହିଁକି ? ଆପଣ କୋଉ ବାଟେ ଆସିଲେ କି କମ୍ପାଉଣ୍ଡରବାବୁ ?

କମ୍ପାଉଣ୍ଡର : ସଡ଼କ ବାଟଟା ଟିକଏ କାଦୁଆ ଜଣାପଡ଼ିଲା । ନାଳବନ୍ଧରେ ବୁଲି କରି ଆସିଲୁ ।

ପରଶୁ : ହୋଇଥିବ । ନାଳବନ୍ଧ ବାଟଟା ଟିକଏ ବୁଲିଣି ।

ଡାକ୍ତର : ତେବେ ଅସୁବିଧା ସେମିତି କିଛି ହେଇନ ।

ପରଶୁ : ଆଉ ସବୁ ଭଲ ତ ? ଦେହ ମୁଣ୍ଡ ଭଲ ଅଛି ତ ?

( ପରଶୁରାମଙ୍କର କୃତକୃତ୍ୟ ଭାବ । ଡାକ୍ତର ଟିକଏ ବିସ୍ମିତ ହୋଇପଡ଼ିଲେ । )

ଡାକ୍ତର : କାହା ଦେହ ମୁଣ୍ଡ କଥା ପଚାରୁଚନ୍ତି ?

ପରଶୁ : ଏଇ ବାବୁ ତମର କଥା—ତମ ଦେହ ମୁଣ୍ଡ କଥା ପଚାରୁଚି । ସବୁ ଭଲ ତ ? ( ଡାକ୍ତରଙ୍କ ମୁହଁରେ ହସ )

ଡାକ୍ତର : ବାସ୍, ମୁଁ ଆପଣଙ୍କ ଘରକୁ ଆସିଲି—ଆଉ ଆପଣ ମୋ ଦେହ ମୁଣ୍ଡ କଥା ପଚାରୁଚନ୍ତି !···ଶୁଣୁଚନ୍ତି ତ କମ୍ପାଉଣ୍ଡରବାବୁ !···କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ଏଁ···ସାର୍··· ।

ଡାକ୍ତର : କଣ ହେଇଚି ଆପଣଙ୍କର ? ଏଠିକି ଆସିବା ପରଠୁ ଆପଣ ବରାବର ଅନ୍ୟମନସ୍କ ହେଇପଡ଼ୁଚନ୍ତି ।

କମ୍ପାଉଣ୍ଡର : ନାହିଁ ଆଜ୍ଞା, ମୁଁ ଭାବୁଥିଲି···ଭାବୁଥି···

ଡାକ୍ତର : ପୁଣି କ'ଣ ଭାବୁଥିଲେ ?

କମ୍ପାଉଣ୍ଡର : ଭାବୁଥିଲି···

ଡାକ୍ତର : ପୁଣି କ'ଣ ଭାବୁଥିଲେ ?

[ କୁଞ୍ଜକୁ ଭିତରକୁ ଆସୁଥିବାର ଦେଖି କମ୍ପାଉଣ୍ଡର ସେମିତି ରାହା ଖୋଜି ପାଇଲେ । କୁଞ୍ଜ ଓ ବଶି ଆସିଲେ । ]

କମ୍ପାଉଣ୍ଡର : କୁଞ୍ଜବାହାଘ, କଣ ଆଣିଲ···ଚ୍' ପାନ ସିଗାରେଟ୍ ! ହଉ, ରଖ ଏଠି ।

( ଚ୍' ପ୍ରଭୃତି ଯଥାସ୍ଥାନରେ ରଖି ବଶି ଚାଲିଗଲା )

କୁଞ୍ଜ : ମଉସା, ଆପଣ ଆସନ୍ତୁ ।

ପରଶୁ : କାହିଁକି ?

କୁଞ୍ଜ : ଆସନ୍ତୁ ନା !

ପରଶୁ : କଥା କିଛି ନାହିଁ, ଖାଲି ଆସନ୍ତୁ !

କୁଞ୍ଜ : କଥା ଅଛି ।

ପରଶୁ : କି କଥା କହ । (କୁଞ୍ଜର ଇତସ୍ତତଃ ଭାବ) କରେ କହନ୍ତୁ !

କମ୍ପାଉଣ୍ଡର : ସେ ଆପଣଙ୍କ କାନରେ କହିବେ ।

ପରଶୁ : ଓ···(କୁଞ୍ଜ କାନରେ କହୁଥାଏ)···ହଁ ବେଶ୍ ବେଶ୍···ବୁଝିଲି—ଆଚ୍ଛା ଆଚ୍ଛା—ଏଁ ? ନା ନା, ସେ କଥା ନୁହେଁ ।
କୁଞ୍ଜ : ଆପଣ ତା'ହେଲେ ଆସନ୍ତୁ ।
ପରଶୁ : ହଉ, ଚାଲ । ମୁଁ ଟିକିଏ ଭିତରୁ ଆସୁଚି କମ୍ପାଉଣ୍ଡରବାବୁ !
( ପରଶୁରାମ ଓ କୁଞ୍ଜ ଭିତରକୁ ଗଲେ )
ଡାକ୍ତର : କମ୍ପାଉଣ୍ଡରବାବୁ !
କମ୍ପାଉଣ୍ଡର : ଚା' ଖାଆନ୍ତୁ ଆଜ୍ଞା । ( ଦୁହେଁ ଚା' କପ୍ ଉଠାଇଲେ )
ଡାକ୍ତର : କଣ ସେତେବେଳେ ଭାବୁଥିଲେ ?
କମ୍ପାଉଣ୍ଡର : କେତେବେଳେ ଆଜ୍ଞା ?
ଡାକ୍ତର : ଏଇ ଚା' ଆସିବା ପୂର୍ବରୁ ?
କମ୍ପାଉଣ୍ଡର : ଭୁଲିଗଲିଣି !
ଡାକ୍ତର : ଏଇ କଚୁଆ କ୍ଷୀରରେ ତିଆରି ଚା'ର ବାସ୍ନାରେ ବୋଧହୁଏ ଭୁଲିଗଲେ !
କମ୍ପାଉଣ୍ଡର : ଚା'ଟା ଖୁବ୍ ଚମତ୍କାର ହୋଇନି ସାର୍ ? ଖାଣ୍ଟି ଗୋ-ଦୁଗ୍ଧ । ଟୋପେ ବି ପାଣି ମିଶିନି ।
ଡାକ୍ତର : ମତେ ଆଗେ କୁହନ୍ତୁ ତ···
କମ୍ପାଉଣ୍ଡର : କଣ ଆଜ୍ଞା ?
ଡାକ୍ତର : ଏଇଟା କଣ ରୋଗୀ ଘର ?
କମ୍ପାଉଣ୍ଡର : ସାର୍ !
ଡାକ୍ତର : ମୁଁ ପଚାରୁଛି, ଏଇଟା କଣ ରୋଗୀ ଘର ?
କମ୍ପାଉଣ୍ଡର : ଆ···ଜ୍ଞା ?
ଡାକ୍ତର : ମୋ ପ୍ରଶ୍ନଟା କଣ ବୁଝିପାରୁନାହାନ୍ତି ?
କମ୍ପାଉଣ୍ଡର : ବୁଝିଚି ସାର୍ !
ଡାକ୍ତର : ବୁଝିଚନ୍ତି ଯଦି କିଛି କହୁନାହାନ୍ତି କାହିଁକି ? ମୋ କଥାର ଉତ୍ତର ଦିଅନ୍ତୁ ।
କମ୍ପାଉଣ୍ଡର : ଆଜ୍ଞା, ଏ ଦୁନିଆରେ ସବୁ ଘର ହେଉଛି ରୋଗୀ ଘର । ଏମିତି ଭଲା କିଏ କୋଉଠି ଘର କରିଚି ଯୋଉଠି ରୋଗ ନାହିଁ ?
ଡାକ୍ତର : ଆପଣଙ୍କର ଏ ଦାର୍ଶନିକ ତଥ୍ୟ ଥାଉ—ଆପଣ ମତେ ସିଧାସଳଖ ଉତ୍ତର ଦିଅନ୍ତୁ । ଛ' ସାତ ମାଇଲ ଅଙ୍କାବଙ୍କା ବାଲି କାଦୁଅ ରାସ୍ତାରେ ସାଇକେଲ ଠେଲି ମୁଁ ଏଠିକି ଆସିଚି କାହିଁକି ?
କମ୍ପାଉଣ୍ଡର : ଲତାକୁ ଦେଖିବାକୁ ।
ଡାକ୍ତର : ଲତା ?
କମ୍ପାଉଣ୍ଡର : ପରଶୁରାମବାବୁଙ୍କ ଝିଅ ।

ଡାକ୍ତର : ବେଶ୍···କନ୍ତୁ ଲଡା କାହିଁ ? ଏଠି ଏ କ ଫାର୍ଶ ଗ୍ଲଚ ? ସା'ନ୍ତ କୁଣିଆ ଢଙ୍ଗରେ ଗୋଡ଼ ଧୋଇବାର ଉପକ୍ରମ, କୁଶଳ ସମାଗ୍ଭର—ଥାଳ ଭର୍ତ୍ତି ଗ୍ଭ', ପାନ, ସିଗ୍ରେଟ୍—କାନରେ ଫୁସ୍‌ଫାସ୍ କଥା !! ଏ ଘରେ ଯେ ଜଣେ ରୋଗୀ ଅଛୁ, ଯାହାକୁ ଦେଖିବା ପାଇଁ ଏତେ ପରିଶ୍ରମ କରି ଜଣେ ଡାକ୍ତର ଆସିଚ—ତା'ର ସୂଚନା ତ କାହିଁ କଛୁ ମିଳୁନ !

କମ୍ପାଉଣ୍ଡର : ସୂଚନା···ମୁଁ ଭାବୁଥିଲ (ଭିତରକୁ ଗ୍ଭହିଁ) କଏ ? କୁଞ୍ଜବିହାରୀ ?

ବଣି : ନାଇଁ ଆଜ୍ଞା, ମୁଁ ବଣି ବାରିକ । (ବଣି ଆସିଲ)

କମ୍ପାଉଣ୍ଡର : ଏ ସବୁ କଣ ?

ବଣି : ପାଣି, ସାବୁନ, ଭଉଲିଆ—ହାତ ଧୋଇବେ ।

ଡାକ୍ତର : ଓ ! ହଁ ବଣି, ବାହାରେ ମୋ ସାଇକେଲରୁ ମୋ ବ୍ୟାଗ୍‌ଟା ନେଇଆସ ତ ! (ବଣି ବାହାରକୁ ଗଲ) ହୁଁ ! ଅପରିଷ୍କାର ହାତରେ ରୋଗୀ ଦେଖିବା ଉଚିତ ନୁହେଁ—ଏତକ ଜ୍ଞାନ ଏମାନଙ୍କର ତା ହେଲେ ଅଛୁ । (ହାତ ଧୋଇ) ଆପଣ ଧୋଇବେ ନାଇଁ ?

କମ୍ପାଉଣ୍ଡର : ଧୋଉଚ ।

ଡାକ୍ତର : (ଡାକଲେ) ବଣି ! (ବଣି ଆସିଲ)

ବଣି : ଆଜ୍ଞା ।

ଡାକ୍ତର : ତମ ବାବୁଙ୍କୁ କୁହ—ଲଡା ଦେଇଙ୍କି ମୁଁ ଦେଖିବ । କଣ ହେଲ, ମୋ ମୁହଁକୁ ଏମିତି ଆଁ କରି ଅନେଇଚ କାହିଁକ ? ମୋ' କଥା ଶୁଭିଲ ତ ?

ବଣି : ହଁ ଆଜ୍ଞା ! ଆପଣେ ଦେଖିବାକୁ ଆସିଚନ୍ତି ଯେତେବେଳେ···

ଡାକ୍ତର : ଯେତେବେଳେ ସେତେବେଳେ ନୁହେଁ—ମୋର ବେଳ ନାଇଁ—ମୁଁ ଏଇ ସାଥେ ସାଥେ ଦେଖିବି, ଯାଇ କୁହ ।

ବଣି : ଯାଉଚ ଆଜ୍ଞା ! (ଭିତରକୁ ଯାଉଥିଲ)

ଡାକ୍ତର : ଆରେ, ବ୍ୟାଗ୍‌ଟା ଆଣିଲ ନାହିଁ ?

ବଣି : ବେଗ୍ ତ ନାହିଁ ଆଜ୍ଞା !

ଡାକ୍ତର : ନାହିଁ ?

ବଣି : ନାଇଁ । ସାଇକଲ ଏ'ଟା ଥୁଆ ହେଇଚ—ବେଗ୍ ନାହିଁ ।

ଡାକ୍ତର : କ ଆଶ୍ଚର୍ଯ୍ୟ କଥା । ବ୍ୟାଗ୍ ତେବେ କଣ ହେଲ ?

ବଣି : ମୁଁ ଯଉଚ ଆଜ୍ଞା···ବାବୁଙ୍କୁ ଖବର ଦେବ । (ଗ୍ଭଲଗଲ)

ଡାକ୍ତର : କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ଆଜ୍ଞା !

ଡାକ୍ତର : ବ୍ୟାଗ୍‌ଟା କଣ ସାଇକଲରୁ ଖୋଲି କିଏ ନେଇଗଲା ? କିଛି ବୁଝିହେଉନି ।
(କମ୍ପାଉଣ୍ଡର ନିରୁତ୍ତର) କମ୍ପାଉଣ୍ଡରବାବୁ !
କମ୍ପାଉଣ୍ଡର : ମୁଁ ଭାବୁଥିଲି ସାର୍...
ଡାକ୍ତର : ବ୍ୟାଗ୍ ତ ନାହିଁ—ଆଉ ଭାବୁଚନ୍ତି କଣ ?
କମ୍ପାଉଣ୍ଡର : ମୁଁ ଭାବୁଥିଲି—ବ୍ୟାଗ୍ ଆଦୌ ଆସିନି ।
ଡାକ୍ତର : ମାନେ ?
କମ୍ପାଉଣ୍ଡର : ବ୍ୟାଗ୍‌ଟା ଆମ ଘରେ ରହିଯାଇଚ ।
ଡାକ୍ତର : ଘରେ ରହିଲା କେମିତି ?
କମ୍ପାଉଣ୍ଡର : ହଁ ଆଜ୍ଞା, ଘରେ ରହିଯାଇଚ ।
ଡାକ୍ତର : ଆପଣ ଆପଣଙ୍କ ସାଇକଲରେ ଆଣିବେ ବୋଲି ପରା ବ୍ୟାଗ୍‌ଟା ମୋ'ଠୁ ନେଲେ ?
କମ୍ପାଉଣ୍ଡର : ନେଇଚ ସତ କିନ୍ତୁ ଆଣି ନାହିଁ—ଘରେ ଛାଡ଼ିଦେଇ ଆସିଚ ।
ଡାକ୍ତର : ମୁଁ ବୁଝି ପାରୁନି ଆପଣ କଣ କହୁଚନ୍ତି । ଆପଣ ରୋଗୀ ଦେଖି ଆସିଲେ—ଅଥଚ ବ୍ୟାଗ୍‌ଟା ଛାଡ଼ିଦେଇ ଆସିଲେ ? ମୋ ହାତ ଗୋଡ଼ ଆପଣ ବାନ୍ଧିଦେଲେସିନା ! ବ୍ୟାଗ୍‌ରେ ଔଷଧ, ଇଞ୍ଜେକ୍‌ସନ, ଥର୍ମମେଟର ତ ଥିଲା—ମୋ ଷ୍ଟେଥେସ୍-କୋପ୍‌ଟା ବି ବ୍ୟାଗ୍‌ରେ ଥିଲା । ମୁଁ ଏବେ କରିବି କଣ ? ରୋଗୀ ଦେଖିବି କେମିତି ?
କମ୍ପାଉଣ୍ଡର : ସେଇ କଥା ମୁଁ ଭାବୁଚି ସାର୍...
ଡାକ୍ତର : କଣ ଭାବୁଚନ୍ତି ?
କମ୍ପାଉଣ୍ଡର : ବ୍ୟାଗଟା ଛାଡ଼ିଦେଇ ଆସିଲି କେମିତି ?
ଡାକ୍ତର : ଏଥିରେ ଆପଣଙ୍କର କିଛି ଭାବିବାର ନାହିଁ ଯେ, ସ୍ୱା ପରେ ସବୁଯାକ ଭାବନା ଚିନ୍ତା ମୋର । ଆପଣ ଚୁପ୍ ହୋଇ ଆରାମ୍‌ରେ ବସନ୍ତୁ । ଖାଇଁ ...ବଣିବାଉକ ଯେ ଭିତରକୁ ଯାଇଚ—ଯାଇଚ । ଏମାନଙ୍କର ବି କାହାରି ଦେଖା ଦର୍ଶନ ନାହିଁ । (ଚିନ୍ତିତ ଅବସ୍ଥାରେ ବସି ରହିଲେ)

[ପରଶୁରାମ ବାବୁଙ୍କ ଘରର ଭିତର ପ୍ରସ୍ଥ । ପରଶୁରାମ, କୁଞ୍ଜ, ବଣି ଓ ବୋଉଙ୍କ ଉପସ୍ଥିତିରେ ଆଲୋଚନା ଚାଲିଛି । ]

ବୋଉ : ଶୁଣୁଚ, ବଣି କଣ କହୁଚ ?
ପରଶୁ : କ'ଣରେ ବଣି ?
ବଣି : କହୁଚନ୍ତି—ମୋର ବେଲ ନାହିଁ—ଲଜ୍ଜା ଦେଇଙ୍କି ମୁଁ ଏଇସାତେ ଦେଖିବି । କି ଅଲାଜୁକ କଥା !

କୁଞ୍ଜ : ତୁ ଖୁବ ପଣ୍ଡିତ ହୋଇଗଲୁଣି ! ଦେଖିବାକୁ ଆସିଚନ୍ତି, ଦେଖିବେ—ଏଥିରେ ଅଲଜୁକ କଥା କଣ ରହିଲା ?

ବଣି : ମତେ କାହିଁକି ଲାଜମାଡ଼ିଲା ।

ପରଶୁ : ଆଗେ ତା'ହେଲେ ଖାଇବେ ନା ଲତାକୁ ଦେଖିବେ ?

କୁଞ୍ଜ : ନାହିଁ ନାହିଁ, ଆଗେ ଖାଇସାରନ୍ତୁ—ଖାଇ ସାରଲେ ମନଟା ତାଙ୍କର ଟିକିଏ ଭିନ୍ନ ଆଡ଼କୁ ଯିବ ।

ବୋଉ : ତୁ କଣ କହୁଚୁ ବା କୁଞ୍ଜ ! ଆଗେ ଖା'ନ୍ତୁ କି ପଛେ ଖା'ନ୍ତୁ, କି ମୋଟେ ନ ଖା'ନ୍ତୁ—ମୋ' ଝିଅ ପୁଣି ତାଙ୍କର ପସନ୍ଦ ହବନାହିଁ ? ଏମିତ କି ଡାକ୍ତର ହୋଇଚନ୍ତି କି ସେ ? ଏଇ କାନରେ ଗଣ୍ଡି ପଡ଼ିଲା—ଲତାକୁ ଦେଖିଲା ଷଣି ସେ କହିବେ ମୁଁ ଏଇଠି ବାହାହେବି—ହେଲା ?

ପରଶୁ : ହଁ ହେଲା । ତା'ହେଲେ ଆଗେ ଖାଇ ପଛରେ କନ୍ୟା ଦେଖିବେ ।

ବୋଉ : ଏ ଯାଏଁ ତ ମୁଁ ତାଙ୍କୁ ଟିକିଏ ଦେଖିପାରିଲି ନାହିଁ ?

ପରଶୁ : ଦେଖିଲ ବେଳ କଣ ଗୁଲିଗଲାଣି ? ତେମେ ଏମିତ ଉଚ୍ଛନ୍ନ ହଉଚ କାହିଁକି ? ତେମେ ଯାଅ—ବଢ଼ାବଢ଼ି କର ।

ବୋଉ : ବଢ଼ାବଢ଼ି ସବୁ ହେଇଚି—ଖାଲି ନେଇ ପରଷିବା କଥା ।

ପରଶୁ : କିଏ ପରଷିବ—ଲତା ?

ବଣି : ନାହିଁ ନାହିଁ, ଛି ! କେଉଁ କୁଆଡ଼ୁ ହଇ ନାହିଁ, ଦେଇ କେମିତ ଯାଇ ପରଷିବେ ।

ବୋଉ : ମୁଁ ନେଇ ପରଷନ୍ତି ଯେ, ମତେ କେମିତ ମାଡ଼ ମାଡ଼ ପଡ଼ୁଚ ।

କୁଞ୍ଜ : କାହାର ଯିବା ଦର୍କାର ନାହିଁ—ମୁଁ ନେଇ ପରଷିବ ।

ପରଶୁ : ଠିକ୍ କଥା—ଖାଇଲାବେଳେ ଆଉ କେହି ରହିଲେ ତାଙ୍କୁ ବ ମାଡ଼ ମାଡ଼ ପଡ଼ିବ ।

କୁଞ୍ଜ : ହାତ ଧୋଇବାକୁ ପାଣି ଦେଇଚୁଟି ବଣି ?

ବଣି : ହଁ, ହେଲେ ହାତ ଧୋଇଲାବେଳେ କଣ କହୁଥିଲେ···ରୋଗୀ ଦେଖିବା ଆଗରୁ ହାତ ଧୋଇ ସଫା କରିବା ଭଲ ।

ବୋଉ : ରୋଗ ! ମୋ ଘରେ ପୁଣି ରୋଗୀ କୁଆଡ଼ୁ ଆସିଲା ? ହଇଏ ?

ପରଶୁ : କଣ ତେମେ ସେଥିରୁ ପାଇବ ? ଡାକ୍ତର ମଣିଷ ସିଏ । ତାଙ୍କର କଥା କଥାକେ ରୋଗୀ ।···କୁଞ୍ଜ ତୁ ଯା !

କୁଞ୍ଜ : ଗଲି ମଉସା (ପ୍ରସ୍ଥାନ)

[ ଦାଣ୍ଡଘରର ଦୃଶ୍ୟ । ଡାକ୍ତର ଓ କମ୍ପାଉଣ୍ଡରଙ୍କ ମଧ୍ୟରେ କଥାବାର୍ତ୍ତା ଚାଲିଛି । ]

ଡାକ୍ତର : ଏଠି କଣ କ ପାଳା ଚାଲିଛି ? ମୁଁ ଚୁପ୍‌ଚାପ୍ ବସି ରହିଲି—ଆପଣ ଏମିତି ଚାଲିକି ଅନେଇ ବସି ରହିଛନ୍ତି ।

କମ୍ପାଉଣ୍ଡର : ନାଇଁ ଆଜ୍ଞା !

ଡାକ୍ତର : ଆପଣଙ୍କୁ ଦେଖି ମୁଁ ବୁଝି ପାରୁଛି ଯେ ଆପଣ ବରାବର ଅନ୍ୟମନସ୍କ ହଉଛନ୍ତି । କଣ ହେଉଛି ଆପଣଙ୍କର ? ବ୍ୟାଗ୍‌ଟା ହଜେଇ ଦେଇଛନ୍ତି ?

କମ୍ପାଉଣ୍ଡର : ନାଇଁ ଆଜ୍ଞା, ବ୍ୟାଗ୍ ହଜିବ କାହିଁକି ?

ଡାକ୍ତର : ତା'ହେଲେ ଏମିତି ଚୁପ୍‌ଚାପ୍ ବସିଛନ୍ତି କାହିଁକି ? କାହିଁକି ମତେ ଏମିତି ହଇରାଣ କରୁଛନ୍ତି ? ମୋର ସମୟର ମୂଲ୍ୟ ଅଛି ନା ନାହିଁ ? ଯାଇ ଦେଖନ୍ତୁ ଭେଣେ କଣ ହେଲା । ନହେଲେ ଭିତରକୁ ଖବର ପଠାନ୍ତୁ । ଏଇ···ପୁଣି ଚାଲିକୁ ଅନେଇ ବସିଲେ ?

କମ୍ପାଉଣ୍ଡର : ନାଇଁ ଆଜ୍ଞା, ମୁଁ ଭାବୁଥିଲି···କଏ···କୁଞ୍ଜବିହାରୀ ? ଏ ସବୁ କଣ ?

( ଜଳଖିଆ ସାମଗ୍ରୀ ନେଇ କୁଞ୍ଜ ଓ ବଣି ଆସିଲେ )

କୁଞ୍ଜ : ସାମାନ୍ୟ ଟିକେ ଜଳଯୋଗ ।

ଡାକ୍ତର : ଜଳଯୋଗ !

କମ୍ପାଉଣ୍ଡର : ହଉ, ରଖ ବାବୁ ରଖ—ଗୋଟାଏ ଥାଳି ସେଠି ଆଉ ଗୋଟାଏ ଥାଳି ଏଠି । ( ଥାଳି ରଖି ବଣି ଚାଲିଗଲା )

ଡାକ୍ତର : କମ୍ପାଉଣ୍ଡର ବାବୁ, କଣ କିଛି କହୁ ନାହାନ୍ତି ଯେ ?

କୁଞ୍ଜ : ସିଏ ଆଉ କଣ କହିବେ ?

ଡାକ୍ତର : ତା'ହେଲେ ଆପଣ କୁହନ୍ତୁ—ଆମେ କଣ ଏଠିକି ଆସିଚୁ ଖାଲି ଏମିତି ଗୁ' ଜଳଖିଆ ଖାଇବା ପାଇଁ ?

କୁଞ୍ଜ : ନାଇଁ ଆଜ୍ଞା···ଏ କଥା କିଏ କହିଲା ? ଅସଲ ଗୁରୁତର କାମ ଆପଣଙ୍କ ମୁଣ୍ଡ ଉପରେ ।

ଡାକ୍ତର : ତା'ହେଲେ ଏ ସବୁ କଣ ହଉଛି ? (ପାଣି ନେଇ ବଣି ଆସିଲା)

କୁଞ୍ଜ : କିଛି ନାଇଁ ଆଜ୍ଞା···ଇଏ ଗୋଟାଏ ବାଧ୍ୟ । ପିଇବା ପାଣି ଦେଲୁ ବଣି !

ବଣି : ଦେଲି ଆଜ୍ଞା ।

କୁଞ୍ଜ : ହଉ, ତୁ ଆ । (ଦୁହେଁ ଚାଲିଗଲେ)

ଡାକ୍ତର : ଆରେ ଆପଣ ଚାଲି ଯାଉଛନ୍ତି ଯେ ? କୁଞ୍ଜବାବୁ ? କି ଆଶ୍ଚର୍ଯ୍ୟ ? କମ୍ପାଉଣ୍ଡରବାବୁ ?

କମ୍ପାଉଣ୍ଡର : ଆଜ୍ଞା !
ଡାକ୍ତର : ମୋର ଅନୁମାନ ତା'ହେଲେ ଠିକ୍ ?
କମ୍ପାଉଣ୍ଡର : କୋଉ କଥା ?
ଡାକ୍ତର : ଏ ଘରେ କେହି ରୋଗୀ ନାହାନ୍ତି ।
କମ୍ପାଉଣ୍ଡର : ନାହାନ୍ତି ବୋଲି କଏ କହିଲା ?
ଡାକ୍ତର : ଲତାର କେଶ୍ ତେବେ ପ୍ରକୃତରେ ସିରିୟସ୍ ନୁହେଁ ?
କମ୍ପାଉଣ୍ଡର : ସି-ରି-ୟ-ସ୍—(ଡାକ୍ତରଙ୍କ ଆଡ଼କୁ କରୁଣଦୃଷ୍ଟିରେ ଚାହିଁ ନିଜେ ଖାଇ ବସିଲେ)
ଡାକ୍ତର : ଆପଣ ଦୟାକରି ରୋଗୀକୁ ଡାକନ୍ତୁ—ମୁଁ ଦେଖେଁ । ଓ, ଆପଣ ଖାଇବା ଆରମ୍ଭ କରିଦେଲେଣି ! ଆଚ୍ଛା ।

[ ଭିତର ପ୍ରଷ୍ଠ । ଉପସ୍ଥିତ ବୋଉ, କୁଞ୍ଜ ଓ ବଣି । ପରଶୁ ଆସିଲେ । ]

ବୋଉ : କୁଞ୍ଜ କହୁଚ ସିଏ ଏମିତି ଚଢ଼ିଚଢ଼ି ହଉଚନ୍ତି କାହିଁକି ?
କୁଞ୍ଜ : ଠିକ ଚଢ଼ିଚଢ଼ି ନୁହେଁ ମ—ସିଏ ଗୋଟାଏ ବାହାନା । ସିଏ କନ୍ୟା ଦେଖି ଆସନ୍ତି ସିଏ ଏମିତି ଟିକେ ଗୋଡ଼ ଲମ୍ବାନ୍ତି···ନାଇଁ ମଉସା ?
ପରଶୁ : ହଁ, ଏଥର ଲତାକୁ ସେଠିକି ନେବା କଥା । କଏ ନେବ ? କୁଞ୍ଜ ତୁ ?
କୁଞ୍ଜ : ନାଇଁ ନାଇଁ ମଉସା, ମୁଁ ସବୁ କଲି—ଏ କାମଟି ମୋ' ଦେଇ ହୋଇପାରିବ ନାହିଁ ।
ବୋଉ : ମୁଁ ବି ତ ଲତାକୁ ତାଙ୍କ ପାଖକୁ ନେଇ ଯିବା ଠିକ୍ ହବନାଇଁ ।
କୁଞ୍ଜ : ନା ।
ବୋଉ : ସେ ପୁଣି କୁଆଡ଼େ ଚଢ଼ିଚଢ଼ି ହଉଚନ୍ତି । ମୁଁ ଏ ପାଖେ କବାଟ ଉହାଳରେ ଥାଇ ଦେଖିବି ।
ପରଶୁ : ତା'ହେଲେ ମୁଁ ?
କୁଞ୍ଜ : ହଁ ମଉସା, ତମ ସାଙ୍ଗରେ ଲତା ଗଲେ ଠିକ୍ ହବ ।
ପରଶୁ : ଲତା ଲୁଗାପଟା ପିନ୍ଧିଲାଣି ?
ବୋଉ : ହଁ ।
ପରଶୁ : ହଉ ଯାଅ, ତାକୁ ଏଠିକି ଆଣ । (ବୋଉ ଗଲେ ଓ ଶାଢ଼ୀ ଗହଣାରେ ସୁସଜ୍ଜିତା ଲତାକୁ ନେଇ ଆସିଲେ । )
କୁଞ୍ଜ : ଏ କଣ ମାଉସୀ, ତାକୁ ଗୋଟାଏ ସିଲକ୍ ଶାଢ଼ୀ ଦେଲନାଇଁ ?
ବୋଉ : ମନାକଲା ପରା !

ବଣି : ଯୋଉ ଶାଢ଼ି ପିନ୍ଧିଲେ ବ ଦେଖି ଆମର ପଣ୍ଟମେନ୍ତେ ସୁନ୍ଦର—ତାଙ୍କୁ ପୁଣି ବାଛୁବ କଏ ?

ପରଶୁ : ହଉ ଆ' ମା'—ଆ' । (ଲତାର କଳୁ କୁଣ୍ଠିତ ଭାବ)

କୁଞ୍ଜ : ଏ' କଣ···ଆଜିକାଲି ଯୁଗରେ ଏ ସବୁ ଢଙ୍ଗ କଣ ଆଉ ଅଛି ? ଥଙ୍ଗ ଥଙ୍ଗ ହଉଚୁ କାହିଁକି ? ମଉସାଙ୍କ ସାଥିରେ ସିଧା ଚାଲିଯା । ମଫସଲ ଝିଅ ହେଲେ ବ ତ ପାଠଶାଠ ପଢ଼ିଚୁ ।

ବୋଉ : ନାଇଁ, ନାଇଁ, ପାଠ ପଢ଼ିଚୁ ବୋଲି କଣ ଠେଙ୍ଗ୍ ଠେଙ୍ଗ୍ ଚାଲିଯିବ ? ନା···ମୁଣ୍ଡଟା ଟିକିଏ ନୁଆଁଇ କରି ଯା—ସେଠି ତାଙ୍କ ଆଗରେ ସେମିତି ମୁଣ୍ଡନୁଆଁଇ ବସିବୁ ।

ପରଶୁ : ଆ' ମା—ଆ' । (ପରଶୁରାମ ଓ ଲତା ବାହେଁ ଗଲେ)

ବୋଉ : ହେ' ମା ମଙ୍ଗଳା !

[ ଦାଣ୍ଡଘର । ଡାକ୍ତର ଓ କମ୍ପାଉଣ୍ଡରଙ୍କ ଖିଆପିଆ ଶେଷହୋଇଚ । ]

ଡାକ୍ତର : କମ୍ପାଉଣ୍ଡରବାବୁ···

କମ୍ପାଉଣ୍ଡର : ନାଇଁ ଆଜ୍ଞା, ମୁଁ ଆଉ କିଛୁ ଖାଉନାଇଁ ।

ଡାକ୍ତର : ଆଉ ଦର୍କାର କ'ଣ ? ସେ କାମଟା ତ ମୋ' ଉପରେ ଛାଡ଼ିଦେଇ ଆପଣ ନିଶ୍ଚିନ୍ତରେ ଖାଇପିଇ ବସି ସିଗ୍ରେଟ ଟାଣୁଚନ୍ତି ।

କମ୍ପାଉଣ୍ଡର : ନାଇଁ ଆଜ୍ଞା···ଆରେ ପରଶୁରାମ ବାବୁ, ଆସନ୍ତୁ !

(ପରଶୁ ଓ ଲତା ଆସିଲେ)

ପରଶୁ : ବସ ମା···ବସ ।

ଡାକ୍ତର : କଣ ହେଇଚ ? ଚାଲିପାରୁନାହାନ୍ତି···ଆପଣ ତାଙ୍କୁ ଧରି ଧରି ଆଣୁଚନ୍ତି···

କମ୍ପାଉଣ୍ଡର : ବସ ମା ଲତା···ଏଇ ଚୌକିରେ ବସ । ସଙ୍କୋଚ କରୁଚ କାହିଁକି ? ବସ । (ଲତା ବସିଲା) ହଁ, ଆରେ ପରଶୁରାମବାବୁ ! ଚାଲିଯାଉଚନ୍ତି ଯେ ?

ପରଶୁ : ଆପଣ ତ ଅଛନ୍ତି···ମୁଁ ଆସୁଚି । (ପ୍ରସ୍ଥାନ)

ଡାକ୍ତର : କଣ ହେଇଚି ତମର ? ମୁଣ୍ଡ ତଳକୁ କରି ବସିଚ କାହିଁକି ? ସିଧା ହେଇ ବସ ।···କଣ ଭାରି କଷ୍ଟ ହେଉଚି ? ମୁଣ୍ଡ ସିଧା କରି ବସି ପାରୁନ ?··· ମୁଣ୍ଡ ଭାରି ଭାରି ଲାଗୁଚି ?···ବେକଗଣ୍ଠିରେ ଯନ୍ତ୍ରଣା ହେଉଚି···କୁହ । କିଛି ନ କହିଲେ ମୁଁ ତମ ମନ ଭିତର କଥା ଜାଣିବି କେମିତି ? କୁହ ।···କି ମୁସ୍କିଲ ! କମ୍ପାଉଣ୍ଡରବାବୁ ! ଇଏତ କିଛି କହୁନାହାନ୍ତି ।···କମ୍ପାଉଣ୍ଡର-ବାବୁ !···କଣ ? ଆପଣ ବ ବୋବା ପାଲଟି ଗଲେଣି ।···ଶୁଣ ଲତା ! ଏଠି ତ ଆଉ କେହି ନାହାନ୍ତି—ମୁଁ ଅଛି, ତମ କମ୍ପାଉଣ୍ଡର ମଉସା ଅଛନ୍ତି ।

ଲଜ ସଙ୍କୋଚ ନକର—କିଛି ନ ଲୁଚାଇ—ତମର ସବୁ କଥା ମତେ ପରିଷ୍କାର ଖୋଲି କୁହ···କୁହ ।

( ଲତା କିଛି କହୁନଥାଏ । ଡାକ୍ତର ହତାଶ ହୋଇପଡ଼ିଲେ । )

ଡାକ୍ତର : କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ସାର୍ !

ଡାକ୍ତର : ସିଏ ଚୁପ୍—ଆପଣ ଚୁପ୍—ମୁଁ କ'ଣ କରିବି ମତେ ଦୟାକରି କିଛି ବୁଦ୍ଧି ବତାନ୍ତୁ ।

କମ୍ପାଉଣ୍ଡର : ଆପଣ ତ ତାଙ୍କୁ ଦେଖୁଚନ୍ତି !

ଡାକ୍ତର : ମୁଁ ତ, ମୁଁ ସ୍ୱୟଂ ଅଶ୍ୱିନୀକୁମାର ହେଲେ ଭଲା ଏମିତ ଦେଖି ଦେଖି କିଛି ଜାଣି ପାରିବେ ? ଆଚ୍ଛା, ଆପଣ ଏ କେଶ୍‌ର ହିଷ୍ଟ୍ରି କିଛି ଜାଣନ୍ତି ?

କମ୍ପାଉଣ୍ଡର : ନା ସାର୍ !

ଡାକ୍ତର : କିଛି ଜାଣନ୍ତି ନାହିଁ ?

କମ୍ପାଉଣ୍ଡର : ମୁଁ ଖାଲି ଏତକ ଜାଣେ ଯେ ବଳପୁର୍ ପରଶୁରାମବାବୁଙ୍କ ଝିଅ ଲତା —ପଢ଼ାପଢ଼ି ବେଶ୍ କରିଚି—ଯେମିତ ସୁନ୍ଦରୀ ସେମିତ ବୁଦ୍ଧିମତୀ—ରନ୍ଧାବଢ଼ା ଘରକାମ ସବୁଥିରେ ଧୂରନ୍ଧର—ଏମିତ ଆଉ କେତେଟା କଥା ଛଡ଼ା ଆଉ କିଛି ମୁଁ ଜାଣେନା ।

ଡାକ୍ତର : କିନ୍ତୁ···କିନ୍ତୁ ଏଥିରୁ ତାଙ୍କର କି ବେମାରି ହୋଇଚି ମୁଁ ବୁଝିବି କିପରି ? କି ବିପଦରେ ଯେ ଆଣି ଆପଣ ମତେ ପକେଇଲେ ? ବୁଝିଲ ଲତା—ମୁଁ ତମକୁ ସ୍ପଷ୍ଟ କହି ଦଉଚି—ତମେ ରୋଗୀ—ମୁଁ ଡାକ୍ତର । (ଲତା ଉଠି ଠିଆହେଲା) କଣ ହେଲା ? ଉଠୁଚ କୁଆଡ଼େ ? ବସ । (ଜୋର୍‌ରେ) ବସ କହୁଚି । (ଲତା ପୁଣି ବସିଲା) ଦେଖି ତମ ହାତଟା—ନାଡ଼ୀ ଦେଖେଁ । ହାତ ଲୁଚଉଥ ନାହିଁ—ବାହାରକରି କହୁଚି ।

[ ଭିତର ପ୍ରଷ୍ଠ । ଝରକା ଫାଙ୍କରେ ବୋଉ, କୁଞ୍ଜ ଓ ପରଶୁ ବାଣ୍ଡଘରର ଦୃଶ୍ୟ ଦେଖୁଚନ୍ତି । ]

ବୋଉ : ଏଇଲେ ମା ! ଲତାର ହାତକୁ କଣ ସେ ଧରିଲେଣି !

କୁଞ୍ଜ : ମୁଦ ପିନ୍ଧେଇବେ କି କଣ !

ପରଶୁ : ଲତା ତା' ହାତକୁ ଝିଙ୍କିନଉଚି ।

ବୋଉ : ସିଏ ପୁଣି ଟାଣିଆଣୁଚନ୍ତି ।

ପରଶୁ : ଲତା ପୁଣି ଚିଙ୍କିନଉଚି···
କୁଞ୍ଜ : ସିଏ ପୁଣି ଝାଣି ଆଣୁଚନ୍ତି···
ବୋଉ : ହଇଏ, ସିଏ କଣ ବୁଢ଼ାଟାଏ···
ପରଶୁ : ବୁଢ଼ା କଣ ? କ ବୁଢ଼ା ?
ବୋଉ : ତାଙ୍କୁ ଚାଳିଶି କି ପଇଁଚାଳିଶ ବର୍ଷ ହେବ ।
କୁଞ୍ଜ : ଡାକ୍ତର ମଣିଷ—ବୟସ ହେଲେ କଣ ହେଲା ?
ପରଶୁ : ତମେ ତ ଖାସ୍ ମୋ ସାଙ୍ଗରେ ଲଗେଇଲ—ଡାକ୍ତର କ୍ୱାଁଇଁ କରିବ ।
ବୋଉ : ସ୍ୱା ବୋଲି ପଇଁଚାଳିଶ ବର୍ଷର ବୁଢ଼ା···ବାଳ ପାଚିଆସିଲାଣି···
କୁଞ୍ଜ : ଚାଳିଶ ପଇଁଚାଳିଶରେ କେହି ବୁଢ଼ା ହ'ନ୍ତି ନାହିଁ—ସେ ପୁଣି ଡାକ୍ତର ।
ବୋଉ : ହେଇଥ···ସିଏ କଣ ଲତାର ନାଡ଼ୀ ଦେଖିଲାଣି ?
କୁଞ୍ଜ : ହଁ ତ, ନାଡ଼ୀ ଦେଖୁଚନ୍ତି ।
ପରଶୁ : ଲତା ଛଟପିଟ ହଉଚି ।
କୁଞ୍ଜ : ଆଖି ପତ୍ର, ଜିଭ, ନାକପୁଡ଼ା···ସବୁ ଦେଖିଲେଣି ।
ବୋଉ : ଏଡ଼େ ଦେଖିଲାବାଲା ସିଏ ? ମୋ ଝିଅକୁ କଣ ରୋଗ ବେମାର ହେଇଚି ? ଡାକ୍ ଡାକ୍ ସେ କମ୍ପାଉଣ୍ଡରକୁ । କୁଆଡ଼ୁ ଗୋଟାଏ କାହାକୁ ଆଣି ଜୁଟାଇ ଦେଲ—ଡାକ୍ତର ବୋଲି ମୋ' ଝିଅକୁ ସେ ରୋଗୀ କରି ଛାଡ଼ିବ ? ମୋ ଝିଅର କି ବେମାର ହୋଇଚି ବୋଲି 'ସିଏ ତା' ନାଡ଼ୀ ଦେଖିଲା ? ସାଇ ଭାଇରେ ଏ କଥା ଜାଣିଲେ—
କୁଞ୍ଜ : ହେଇଥ, ଲତା କାନ୍ଦି କାନ୍ଦି ଉଠିଆସିଲାଣି । (ଲତା ଆସିଲା । ସେ କାନ୍ଦୁଚି)
ବୋଉ : ମୋ' ମା'ଟା···ମୋ ମା'ଟାଲୋ !

(ଝିଅକୁ କୁଣ୍ଢାଇଧରି କାନ୍ଦିବାକୁ ଲାଗିଲେ)

[ ଦାଣ୍ଡଘର । ଉପସ୍ଥିତ ଡାକ୍ତର ଓ ବଣି ]

ଡାକ୍ତର : ବଣି !
ବଣି : ଆଜ୍ଞା !
ଡାକ୍ତର : ଗିଲାସେ ପାଣି ମତେ ଦେଇପାରିବ ?
ବଣି : ଦେଲି ଆଜ୍ଞା···ନଅନ୍ତୁ । (ପାଣି ଦେଲା)
ଡାକ୍ତର : (ପାଣି ପିଇ) କୁଆଡ଼େ ସବୁ ଗଲେ ଏମାନେ ? ବଡ଼େ କାନ୍ଦାକଟା ପାଟିତୁଣ୍ଡ ପରେ ସବୁ ଶୁନ୍‌ଶାନ୍ । ମୁଁ ଏଠି ଏକା ବସିରହିଚି । ପରଶୁରାମବାବୁ କଣ କରୁଚନ୍ତି ?
ବଣି : ତାଙ୍କ ପେଟ ଟାଣୁଚି ବୋଲି କହିଲେ ।
ଡାକ୍ତର : କୁଞ୍ଜବାବୁ ?

ବଶି : ତାଙ୍କ ମୁଣ୍ଡ ବନ୍ଧୁଚ ।
ଡାକ୍ତର : ମା ?
ବଶି : ତାଙ୍କ ଦାନ୍ତମୂଳ ଧକ ଧକ ହଉଚ ।
ଡାକ୍ତର : ଲତା ?
ବଶି : ଶୋଇଚନ୍ତି ।
ଡାକ୍ତର : କମ୍ପାଉଣ୍ଡରବାବୁ ?
ବଶି : ଗାଲରେ ହାତ ଦେଇ ଆଁ କର ଅନେଇବସି କଣ ଭାବୁଚନ୍ତି ।
ଡାକ୍ତର : ମୋ' ପାଖକୁ ଆସିବାକୁ କେହି ରାଜି ନୁହନ୍ତି ?
ବଶି : ନାହିଁ ଆଜ୍ଞା—କେହି ଆସିବେ ନାହିଁ ।
ଡାକ୍ତର : ବେଶ୍, ତେବେ ଗୃଲ ମୁଁ ଯିବ ?
ବଶି : ଆପଣ ଝଞ୍ଜା ଭିତରକୁ ଯିବେ ?
ଡାକ୍ତର : ହଁ ଯିବ । ତମେ ଯାଇ ସେମାନଙ୍କୁ ଆଉଥରେ କୁହ । ସେମାନେ ନ ଆସିଲେ ମୁଁ ବାଧ୍ୟହୋଇ ଝଞ୍ଜା ଭିତରକୁ ଯିବ ।
ବଶି : ହଁ ଆଜ୍ଞା ।

[ ବଶି ଭିତରକୁ ଗଲା । ଟିକଏ ପରେ ପରଶୁ, କୁଞ୍ଜ, କମ୍ପାଉଣ୍ଡର ଓ ବୋଉ ଆସିଲେ । ସମସ୍ତେ ଯେମିତ ଭାଙ୍ଗି ପଡ଼ଚନ୍ତି । ]

ଡାକ୍ତର : ଦେଖନ୍ତୁ—ରୋଗ ବାହାନା କର ଆପଣମାନେ ଏମିତ ଲୁଚି ଛପି ରହିଲେ ଚଳିବ ନାହିଁ । ଏ ଘଟଣାର ଗୋଟାଏ ସମାଧାନ ଦରକାର ।
ପରଶୁ : କଣ—ଆଉ କ ସମାଧାନ କରବେ ?
ଡାକ୍ତର : କମ୍ପାଉଣ୍ଡର ଆପଣମାନଙ୍କୁ ମୋ କଥା କଣ କହିଥିଲେ ?
କୁଞ୍ଜ : କହିଥିଲେ—ଡାକ୍ତରବାବୁ ଅବବାହିତ—ଏଠି ବାହାହବାକୁ ତାଙ୍କର ରାଜି । ସେ କନ୍ୟା ଦେଖି ଆସିବେ ।
ଡାକ୍ତର : ଏ କଥା କଣ ସତ କମ୍ପାଉଣ୍ଡର ବାବୁ ?
କମ୍ପାଉଣ୍ଡର : ସତ । ଘର ସଂସାର ନକର ଆପଣ ଯୋଗ ହଇରାଣ ହଉଚନ୍ତି ସେଇଥିପାଇଁ ଭାବିଲ ଏମିତ ଗୋଟାଏ ଫାନ୍ଦ ପାତିଲେ ଯଦି ସୁଫଳ ଫଳେ !
ଡାକ୍ତର : ଅଥଚ ମତେ କହିଚନ୍ତି ଯେ, ବଳପୁରରୁ କଲ୍ ଆସିଚି—ପରଶୁରାମ ବାବୁଙ୍କ ଝିଅ ଲତାକୁ ଦେଖିବାକୁ ଯିବାକୁ ହେବ ।
କୁଞ୍ଜ : ଏ କଥା ସତ କମ୍ପାଉଣ୍ଡରବାବୁ ?

କମ୍ପାଉଣ୍ଡର : ସତ । ଡାକ୍ତରବାବୁଙ୍କୁ ମୁଁ ଜାଣେ—ସେଥିପାଇଁ କନ୍ୟା ଦେଖିବା କଥାଟା ନ କହି ଖାଲି ଲତାକୁ ଦେଖିଯିବା କଥାଟା କହିଥିଲି । ଏଇ ଦେଖିଯିବାଟା ଦୁଇ ଅର୍ଥକୁ ବୁଝାଏ ।

ଡାକ୍ତର : ସେଇଥିପାଇଁ ଜାଣିଶୁଣି ବ୍ୟାଗଟା ଛାଡ଼ିଆସିଲେ ?

କମ୍ପାଉଣ୍ଡର : ବ୍ୟାଗ୍ ଆଣିଥିଲେ ଲାଭ କଣ ହୋଇଥାନ୍ତା ? ଏଠିତ ରୋଗୀ କେହି ନାହାନ୍ତି !

ଡାକ୍ତର : ମା' କଣ କହୁଚନ୍ତି ?

ବୋଉ : ମୁଁ ଆଉ କଣ କହିବି ପୁଅ···ଡାକ୍ତର କ୍ୱାଁର୍ କରିବି ବୋଲି ଲୋଭ କରିଥିଲି···

ଡାକ୍ତର : ଅଥଚ କନ୍ୟା ଦେଖି ଆସିଲା ମୋ ପରି ଜଣେ ବୟସ୍କ ଡାକ୍ତର ।

ବୋଉ : ନାଇଁ ପୁଅ—ବୟସ କଥା ନୁହେଁ । ତମର ଏମିତ ଆଉ କ ବୟସ ହୋଇଚ କ ? ବାହାଘରଟା ନହେଲେ ସାଇ-ଭାଇରେ ଆମେ ଲୋକହସା ହୋଇଯିବୁ ।

ଡାକ୍ତର : କିନ୍ତୁ ମୋର ଏ ବୟସରେ ବାହାହେଲେ ମୁଁ ଯେ ଲୋକହସା ହେବି !

କମ୍ପାଉଣ୍ଡର : ସେ ବିଚାର ଆପଣ କରନ୍ତୁ । ଗୋଟାଏ ଝିଅ ଲୋକହସା ହବା ଆଉ ଆପଣ ଲୋକହସା ହବା···

ଡାକ୍ତର : ଆଚ୍ଛା, ଲତାକୁ ଡାକନ୍ତୁ । (ବୋଉ ସାଙ୍ଗେ ସାଙ୍ଗେ ଯାଇ ଲତାକୁ ଆଣି ଆସିଲେ)

ଡାକ୍ତର : ହାତଟା ଦେଖି ।

କମ୍ପାଉଣ୍ଡର : କଣ ପୁଣି ନାଡ଼ୀ ଦେଖିବେ ?

ଡାକ୍ତର : ନାଇଁ, ମୁଦି ପିନ୍ଧେଇବି ।

କୁଞ୍ଜ : (ଚୁପ୍ ଚୁପିରେ) କଣ ମୁଁ ସେତେବେଳେ କହୁଥିଲି···ମୁଦି ନିଶ୍ଚେ ପିନ୍ଧେଇବେ ।

ଡାକ୍ତର : ଏଇଟା ମୋ ବୋଉ ହାତ ମୁଦି । (ନିଜ ଆଙ୍ଗୁଳିରୁ ମୁଦି ବାହାରକରି ଲତାକୁ ପିନ୍ଧାଇଲେ)···ଆଚ୍ଛା, ମୁଁ ତ କନ୍ୟା ଦେଖିଲି—ପସନ୍ଦ କଲି—ଆପଣମାନେ ବରକୁ ଦେଖିବେ ନାହିଁ ?

ପରଶୁ : ବର···ବର ପୁଣି ଆଉ କିଏ ?

ଡାକ୍ତର : ଏଇ, ଦେଖନ୍ତୁ । (ପକେଟରୁ ଗୋଟିଏ ଲଫାଫା କାଢ଼ି ତା'ଭିତରୁ ଗୋଟିଏ ଫଟୋ ବାହାରକଲେ)

କୁଞ୍ଜ : କାହାର ଏ ଫଟୋ ? ଏକାବେଳେକେ ରାଜପୁତ୍ର ଭଳି ଚେହେରା !

ଡାକ୍ତର : ମୋ' ସାନଭାଇ···ସେ' ବି ଡାକ୍ତର । ଏମ୍. ବି. ବି. ଏସ୍ ପାଶ୍ କରି ପାଟନାରେ ଏମ୍. ଡି. କରୁଚି ।

କମ୍ପାଉଣ୍ଡର : ସାର୍—ସାର୍—ଆପଣ ସାର୍ ମତେ କହୁଥିଲେ ସେ ଆପଣଙ୍କ ସାନଭାଇ ଆପଣଙ୍କଠୁଁ ଭିନ୍ନେ ହୋଇଗଲେ ବୋଲି ଆପଣ ଆପଣଙ୍କର ସବୁ ପୈତୃକ ସମ୍ପତ୍ତି ତାଙ୍କୁ ଦେଇ, ନିଜେ ସରକାରୀ ଚାକିରି ଛାଡ଼ି ଏଠି ହରିପୁରରେ ଆସି ଡାକ୍ତରଖାନା ଖୋଲିଲେ !

ଡାକ୍ତର : ଜୀବନରେ ମୁଁ ବିବାହ କରିବି ନାହିଁ ବୋଲି ଠିକ୍ କରିବାରୁ ସେ ମୋ' ଉପରେ ଅଭିମାନ କରି ମୋ'ଠୁ ଦୂରେଇ ଯାଇଥିଲା । ତା'ପରେ ନିଜେ ତା' ଭୁଲ୍ ବୁଝିପାରି ମୋ ପାଖକୁ ପୁଣି ଫେରିଆସିଲା । ଆଜି ଡାକରେ ତା' ଚିଠି—ଏ ଫଟୋ ସବୁ ପାଇଲି । ଏଣିକି ତା' ବିବାହ, ତା' ଭଲମନ୍ଦ, ତା' ଭବିଷ୍ୟତ ସବୁ ସେ ମୋ ଉପରେ ଛାଡ଼ିଦେଇଛି ।

ବୋଉ : ମୋ ଝିଅକୁ ତା'ହେଲେ ଡାକ୍ତର ?

ଡାକ୍ତର : ହଁ—ଆମ କମ୍ପାଉଣ୍ଡରବାବୁ ଏ ସବୁର କର୍ତ୍ତା । ମୁଁ ରୋଗୀ ଦେଖି ଆସି କନ୍ୟା ଦେଖିଲି ।

କମ୍ପାଉଣ୍ଡର : ଆଉ ମା' ଆମର ପାଇଲେ ଡାକ୍ତର ଜ୍ୱାଇଁ ।

□□

## ଚରିତ୍ର

ଗଦାଧର : ମଧ୍ୟବୟସ୍କ ଗ୍ରାମବାସୀ

ରଙ୍ଗାଧର : ତାଙ୍କ ଯୁବକ ପୁତ୍ର

ସାଧୁଚରଣ : ମଧ୍ୟବୟସ୍କ ଗ୍ରାମବାସୀ

ଭକ୍ତଚରଣ : ତାଙ୍କ ଯୁବକ ପୁତ୍ର

ଡାକ୍ତର

କମ୍ପାଉଣ୍ଡର

[ଗ୍ରାମ୍ୟ ଅଞ୍ଚଳ । ଏକ ଡାକ୍ତରଖାନାର ମୁଖ୍ୟ କୋଠରି । ଏଇ କୋଠରି ସଂଯୁକ୍ତ ଆଉ ଗୋଟିଏ କୋଠରିକୁ ଯିବାପାଇଁ ଦ୍ୱାର ଅଛି । ଏକ ଡାକ୍ତରଖାନା ଉପଯୋଗୀ ବିଭିନ୍ନ ଉପକରଣ ଯଥା ସ୍ଥାନରେ ରହିଛି ।

ସମୟ—ପୂର୍ବାହ୍ନ । ଡାକ୍ତରଖାନାରେ କେହି ନାହାନ୍ତି । ଗଦାଧର ଓ ରଙ୍ଗାଧର ଆସିଲେ । ଗଦାଧରଙ୍କ ପରିଧାନ—ଧୋତି, ଜାମା ଓ କାନ୍ଧରେ ଗୁଡ଼ର ବା ଗାମୁଛା । ରଙ୍ଗାଧରର ପରିଧାନ ସାଧାରଣ ପ୍ୟାଣ୍ଟ ଓ ସାର୍ଟ । ଦୁହେଁ ଆସି କିଛି କ୍ଷଣ ଏଣେତେଣେ ଚାହିଁଲେ । ତା'ପରେ ରୋଗୀମାନଙ୍କ ପାଇଁ ଉଦ୍ଦିଷ୍ଟ ବେଞ୍ଚରେ ଦୁହେଁ ବସିଲେ । ]

ଗଦାଧର : ହୁଁ ବସ୍ ଏଠି । ବେଶ୍ ଜବ୍‌ବର ହୋଇ ବସ । ଏସବୁ କାମରେ ଜବ୍‌ବର ନ ହେଲେ ଠିକିଯିବୁ । ବସ୍, ଆଉ କେହି ରୋଗୀ ଆସିଲେ ଉଠିବୁ ନାହିଁ । ବସ୍ !

ରଙ୍ଗାଧର : ଡାକ୍ତରବାବୁ ତ ଆସିନାହାନ୍ତି ।

ଗଦା : ଆସିଲାବେଳ ହେଲେ ଆସିବେ—ତୁ ବସ୍ ।

ରଙ୍ଗା : ଏଠି ବସିବା ନା ତାଙ୍କ ବସାକୁ ଯିବା ?

ଗଦା : ନାଇଁବାବୁ, ବସାଠି କିଛି କାମ ନାହିଁ । ସବୁ କାମ ଏଇଠି । ଚୁଗ, କଇଁଚ, ଓଷଦ, ଇଂଜେକ୍‌ସନ, କାଗଜପତ୍ର ସବୁ ଏଇ ଡାକ୍ତରଖାନାରେ । ପକେଟରୁ ଟଙ୍କା ବାହାରିଲେ ସବୁ କାମ ଏଇଠି ଠ-ଠା-ଠି ଛିଡ଼ିଯିବ ।

ରଙ୍ଗା : ଟଙ୍କା ଆଣିଚଟି ବାପା ?

ଗଦା : ଗାଁରେ ଦୋଳଗୁନ୍ଧା କ ଦଶଘ ଭେଦା ବେଳେ ତୋର ଯୋଉ ବାପାକୁ ତୁ ଦେଖୁ, ଆଜ ଏ ବାପା ସେ ବାପା ନୁହେଁ । ସେତେବେଳେ ଘନା ବାକ୍‌ସ ଗୁଡ଼ାକ କୁଆଡ଼େ ହୁଡ଼ିଯାଏ କ ଖୁଚୁରା ଟଙ୍କାଗୁଡ଼ାକ କୁଆଡ଼େ ଉଭେଇ ଯାଏ—ହେଲେ ଏ କାମ ବେଳକୁ ସେ ଟଙ୍କା ବାକ୍‌ସ ମୁକୁଳା ପଡ଼ିଚି—ମୁକୁଳା । ଯେଉଁଠି ଜୀବନ ଉପରେ ଧକ୍‌କା ଲାଗିଲାଣି, ସେଠି ମୁଁ ଟଙ୍କାକୁ ଲୋଭ କରିବ ? ବେପରୁଆ ହୋଇ ଟଙ୍କା ଆଣିଚି, ଆଉ ବେପରୁଆ ହୋଇ ଖର୍ଚ୍ଚ କରିବ । ତୁ ଖାଲି ବସି ଦେଖ୍ ।···ହୁଁ, କେଇଟା ବାଜିଲା ?

ରଙ୍ଗା : (ବାପା ଆଡ଼େ କିଛିକ୍ଷଣ ଚାହିଁରହି) ମୁଁ କେମିତି ଜାଣିବ କେଇଟା ବାଜିଲା ?

ଗଦା : ଘଣ୍ଟା ଦେଖି କହ ।

ରଙ୍ଗା : ଘଣ୍ଟା କାହିଁ ?

ଗଦା : କରେ ! ତୋ ହାତ କଣ ଖାଲି ? ଘଣ୍ଟା କଣ ହେଲା ?

ରଙ୍ଗା : ଘଣ୍ଟା ପରା ସେମାନେ ଛଡ଼େଇନେଲେ !

ଗଦା : କିଏ ନେଲା ?

ରଙ୍ଗା : ତେମେ ଜାଣିନ ?

ଗଦା : ଆରେ ବାବୁ, କେତେ ବେଳ ତ ଆସୁଚ, ଦନ ଦନ ଘାଡ ଘାଡ ଧର ଗ୍ଭଲିବ । ତୁ ମତେ ଏଠି ଆଉ ଜେରା ନକର ସଫା ସଫା କହ—ଘଣ୍ଟା କଣ ହେଲା ?

ରଙ୍ଗା : ତେମେ ତ ବାପା ମତେ ଓଲଟି ଜେରା କଲଣି । ସେମାନେ ପରା ମତେ ମାର ଜବରଦସ୍ତି ମୋ'ଠୁ ଘଣ୍ଟାଟା ଛଡ଼େଇନେଲେ !

ଗଦା : ଏଁ ···ଜବରଦସ୍ତ ଛଡ଼େଇନେଲେ ?

ରଙ୍ଗା : ହଁ ।

ଗଦା : ଏତେ ଦାମିକା ଘଣ୍ଟାଟା ସେମାନେ ଛଡ଼େଇ ନେଲେ—ତୁ ଅଟକାଇ ପାରିଲୁ ନାହିଁ ?

ରଙ୍ଗା : ମୋର କଣ ଅଟକେଇ ରଖିବା କଥା ଯେ ମୁଁ ଅଟକେଇ ରଖନ୍ତି ?

ଗଦା : (ବିରକ୍ତ ହୋଇଯାଇ) ରଙ୍ଗା !

ରଙ୍ଗା : ମୋ ଆଡ଼କୁ ଏମିତ କଟମଟ କର ଅନେଇଲେ ମୁଁ ଆଉ କଣ କରିବ ? ତେମେ ତ ବାପା ସବୁକଥା ଭୁଲିଯାଉଚ ।

ଗଦା : କ'ଣ ଭୁଲିଚ ? ଦେଲୁ ମୋ ମନେ ପକେଇ କଣ ମୁଁ ଭୁଲିଚ ?

ରଙ୍ଗା : କଥା ହେଲା ଯେ, ସେମାନେ ମତେ ମାର ମୋ ହାତରୁ ଜବଦସ୍ତ ଘଣ୍ଟାଟା ଛଡ଼େଇନେଇଚନ୍ତି ! ତେମେ ତ ବାରମ୍ବାର ଏକଥା ମତେ କହୁଚ ।

ଗଦା : ଓହୋ-ହୋ···ମନେପଡ଼ିଲା । ତୋର କଥା ଠିକ୍ । ଏକଥାଟା ମୋର ଭୁଲିବାର ନୁହେଁ ଯେ···ଏଇ ଘଟଣାରୁ ମନଟା ଟିକିଏ ବିଚଳିତ ହେଇପଡ଼ିଚ—ଏବେ ମନେପଡ଼ିଲା—ତୋର କଥା ଠିକ୍ । (ଏପାଖ ସେପାଖ ଗ୍ଭହିଁ) ଡାକ୍ତରବାବୁଙ୍କର ହେଲା କଣ ? କେଇଟା ବାଜିଲା ?

ରଙ୍ଗା : (ସତର୍କତାର ସହ ପକେଟ ଭିତରୁ ଘଣ୍ଟା ଦେଖି) ଆଠଟା ସତର ।

ଗଦା : କେମିତ ଜାଣିଲୁ ?

ରଙ୍ଗା : ଘଣ୍ଟା ଦେଖି ।

ଗଦା : କରେ କଥା ହେଲା ପରା ସେମାନେ ଘଣ୍ଟା ଛଡ଼େଇ ନେଲେ···ତୁ ପୁଣି ଘଣ୍ଟା ପାଇଲୁ କେଉଁଠୁ ? ଘଣ୍ଟା ଦେଖିଲୁ କେମିତ ?

ରଙ୍ଗା : ମୋ ହାତରୁ ସିନା ଯେମାନେ ଘଣ୍ଟା ଛଡ଼େଇ ନେଲେ···ହେଲେ ମୋ ପକେଟ ! ପକେଟରେ କଣ ଘଣ୍ଟା ରହିବ ନାହିଁ ?

ଗଦା : ଅଛି ?

ରଙ୍ଗା : (ଘଣ୍ଟା ଦେଖାଇ) ଏଇ ପରା !

ଗଦା : ହଉ ହଉ, ରଖ ! ହୁସିଆରରେ ରଖ । ତେବେ ଯାହା ଆମର କଥା ହେଇଚି—ଯେ ଘଣ୍ଟାଟା ସେମାନେ ଜବରଦସ୍ତ ତୋ'ଠୁ ଛଡ଼େଇନେଲେ···

ରଙ୍ଗା : ନେଲେ···ସେଥିପାଇଁ ଘଣ୍ଟାଟା ମୋ ହାତରୁ ଆସି ପକେଟରେ ରହିଚି ।

ଗଦା : ଠିକ୍ ।···ଆଠ ତ ବାଜି ଗଲାଣି । ଡାକ୍ତର ବାବୁ ଏତେ ବେଳ ଯାଏ ଗଲେ କୁଆଡ଼େ ?

ରଙ୍ଗା : ସେ ଭିତର ଘରେ କିଏ ଅଛନ୍ତି ନା କଣ ?

ଗଦା : (ଡାକଲେ) ଭିତରେ କିଏ ଅଛନ୍ତି ଆଜ୍ଞା ?

ରଙ୍ଗା : କେହି ଶୁଣୁନାହାନ୍ତି ।

ଗଦା : କେହି ନଥିବେ ।

ରଙ୍ଗା : ଥିଲାପରି ଜଣାପଡୁଚି । (ଡାକିଲା) ଭିତରେ କିଏ ଅଛନ୍ତି ଆଜ୍ଞା ?

କମ୍ପାଉଣ୍ଡର : (ଭିତରୁ) ଅଛି—ଇ-ଇ···

ଗଦା : କିଏ ଆଜ୍ଞା ?

କମ୍ପା : (ଭିତରୁ) ସେ କଥା ବାହାରବାଲା ଜାଣିବା ଦରକାର ନାହିଁ । ବାହାରବାଲା ଚୁପ୍ ହେଇ ବସନ୍ତୁ ।

ରଙ୍ଗା : (ଟିକିଏ ପରେ) କଣ କରିବା ବାପା ? ଚୁପ୍ ହେଇ ବସିବା ?

ଗଦା : ଚୁପ୍ ହେଇ ବସିଲେ କଣ କାମ ଚଳିବ ?

ରଙ୍ଗା : ସେ ପରା କହିଲେ !

ଗଦା : ସେ ବଦ୍ୟା ବି ମତେ ଜଣାଅଛି । (ଡାକଲେ) ହେଇଢ ଆଜ୍ଞା, ଟିକିଏ ଶୁଣନ୍ତେ ନାଇଁ ?

କମ୍ପା : (ଭିତରୁ) ସେଇଠୁ କୁହନ୍ତୁ, ମୁଁ ଶୁଣୁଚି—ମତେ ଶୁଭୁଚି ।

ରଙ୍ଗା : ଇଏ ତ ଡାକ୍ତରବାବୁ ନୁହନ୍ତି !

ଗଦା : ନା—ଡାକ୍ତରବାବୁ ଆସିଲେ ଏଠି ଏ ଚୌକିରେ ବସିବେ । (ବଡ଼ ପାଟିରେ) ଶୁଣନ୍ତୁ ଆଜ୍ଞା, ଟିକିଏ ବାହାରକୁ ଆସିଲେ ଗୃରି ଭଲହୁଅନ୍ତା ।

କମ୍ପା : (ଭିତରୁ) ଭିତର କାମ ଶେଷ ନ ହେଲେ ମୁଁ ବାହାରକୁ ଯାଇପାରିବ ନାହିଁ ।

ରଙ୍ଗା : ଭାରି ଟାଣୁଆ ଲୋକ ତ !

ଗଦା : ତୁ ପାଗଳ ହେଲୁ ପୁଅ—ଏ ଟାଣପଣ ରହିବ ?···ତୁ ଦେଖ । (ବଡ଼ପାଟିରେ) ଭାରି ଆଡ଼ୁଆରେ ପଡ଼ଯାଇଚୁ ଆଜ୍ଞା ! ଆପଣ ନ ଆସିଲେ ଆମେ ଭିତରକୁ ଯିବୁ ତ ? (ବିବ୍ରତ, ବିରକ୍ତ ହୋଇ କମ୍ପାଉଣ୍ଡର ଆସିଲେ)

କର୍ମୀ : କିଏ ଆପଣ ?

ଗଦା : କମ୍ପାଉଣ୍ଡର ବାବୁ ନା ? ହଁ ତ କମ୍ପାଉଣ୍ଡର ବାବୁ ! ଦଣ୍ଡବତ ଆଜ୍ଞା !

କର୍ମୀ : କଣ ଦରକାର ?

ଗଦା : ଆପଣ କମ୍ପାଉଣ୍ଡର ବାବୁ !

କର୍ମୀ : କୁହନ୍ତୁ କଣ କହୁଛନ୍ତି ?

ଗଦା : ଆପଣ ଆସନ୍ତୁ ଆଜ୍ଞା—ବସନ୍ତୁ ଏଠି ।

କର୍ମୀ : ମୁଁ ବସିବି !!

ରଙ୍ଗା : ମୁଁ ଉଠିଯାଉଚି ସାର୍, ଆପଣ ଏଇଠି ବାପାଙ୍କ ପାଖରେ ବସନ୍ତୁ ।

କର୍ମୀ : ସେ କଥା ନୁହେଁ । ଆପଣ ଉଠି କିଛି ଲାଭନାହିଁ । ମୁଁ ଯଦି ବସିବି, ତେବେ ଏଠି ଯେତେ ରୋଗୀ ଅଛନ୍ତି କି ଏଠିକି ଯେତେ ରୋଗୀ ଆଜି ଆସିବେ, ସିଏ ସମସ୍ତେ ଏଠୁ ଯାଇନପାରି ବସିରହିବେ ।...ବୁଝିଲେ, ମୁଁ ବସିବା ଲୋକ ନୁହେଁ—ମୋର ତେଣେ ହଜାରେ କାମ ।

ଗଦା : ଶୁଣନ୍ତୁ, ଶୁଣନ୍ତୁ କମ୍ପାଉଣ୍ଡର ବାବୁ ! ମୋର ପଦେ କଥା ।

କର୍ମୀ : କଣ ? (ଉଭୟ ଗଦା, ରଙ୍ଗା ଉଠି ଠିଆହେଲେ । )

ଗଦା : ଟଙ୍କା ଖର୍ଚ୍ଚ କରିବାକୁ ମୁଁ ତିଆର ଅଛି ।

କର୍ମୀ : ଟଙ୍କା !!

ଗଦା : ହଁ । ଟଙ୍କା ମୁଁ ଖର୍ଚ୍ଚ କରିବି । ଆପଣ ବିଶ୍ୱାସ କରନ୍ତୁ—ମୁଁ ହଟିବା ଲୋକ ନୁହେଁ । ଯାହା ଦରକାର, ଯେତେ ଦରକାର, ମୁଁ ଖର୍ଚ୍ଚ କରିବି ।

କର୍ମୀ : ଖର୍ଚ୍ଚ କରିବେ !

ଗଦା : ହଁ ।

କର୍ମୀ : ଟଙ୍କା !

ଗଦା : ହଁ, ଟଙ୍କା ।

କର୍ମୀ : ବେଶ୍ କରନ୍ତୁ—ଖର୍ଚ୍ଚ କରନ୍ତୁ ।

ଗଦା : ମାନେ ?

କର୍ମୀ : ମାନେ ମୁଁ ବୁଝେଇବି ?

ଗଦା : ଆପଣ ପଚାରିଲେ ନାହିଁ—କାହିଁକି, କାହାପାଇଁ—କେତେ ଟଙ୍କା ମୁଁ ଖର୍ଚ୍ଚ କରିବି ?

କର୍ମୀ : ହେଇତ ବାବୁ, ଟଙ୍କାଟା ଯଦି ମୋର ହୋଇଥା'ନ୍ତା, ଆଉ ଆପଣ ଖର୍ଚ୍ଚ କରିବାକୁ ? ଏମିତି ହାତମୁଠା ଖୋଲି ବସନ୍ତେ—ତେବେ ମୋର ଯାହା ଜାଣିବାର କଥା, ଯାହା ବୁଝିବାର କଥା, ଯାହା ପଚାରିବାର କଥା, କି ଯାହା କରିବାର କଥା, ମୁଁ କରନ୍ତି । ଟଙ୍କା ଆପଣଙ୍କର, ଖର୍ଚ୍ଚ ଆପଣ କରିବେ...

ଗଦା : ଶୁଣନ୍ତୁ ଆଜ୍ଞା, ଆପଣ ଟିକିଏ କୃପା ଦୃଷ୍ଟି ନ ପକାଇଲେ—

କମ୍ପା : ଆପଣ ଖର୍ଚ୍ଚ କରିପାରିବେ ନାହିଁ ?

ଗଦା : ନା ।

କମ୍ପା : ଧନ୍ଦା । ଆପଣ ଅନ୍ତରରେ ଟଙ୍କା ଖର୍ଚ୍ଚ କରିବେ—ଆଉ ମୁଁ ଟିକିଏ ଦୃଷ୍ଟି ଖର୍ଚ୍ଚ କରିପାରିବି ନାହିଁ···ଧନ୍ଦା ।

ଗଦା : ଆପଣ ବୋଧହୁଏ ବୁଝିପାରିଲେ ନାହିଁ ମୋ କଥାଟା ।

କମ୍ପା : ବୁଝାନ୍ତୁ ।

ଗଦା : ଆମର ଖଣ୍ଡେ ସାର୍ଟିଫିକେଟ୍ ଦରକାର ।

ରଙ୍ଗା : ହଁ ସାର୍, ଖଣ୍ଡେ ଡାକ୍ତର ସାର୍ଟିଫିକେଟ୍ ଦରକାର ।

କମ୍ପା : ଏଥର ପ୍ରକୃତରେ ମୁଁ ଆପଣଙ୍କ କଥା କିଛି ବୁଝିପାରିଲି ନାହିଁ ।

ଗଦା : ସେଇକଥା ଆଜ୍ଞା, ଆପଣ ଆମ କଥା ନବୁଝିଲେ ଆମେ ଟଙ୍କା ଖର୍ଚ୍ଚ କରି କେତେ—ନକରି କେତେ ? ଶୁଣନ୍ତୁ, ମୁଁ ବୁଝେଇଦଉଚି । ···ଆମ ଗାଁ ନୂଆପାଲରେ ଆଜି ଗୋଟାଏ ଦଙ୍ଗାହାଙ୍ଗାମ ମାରପିଟ୍ ହେଇଯାଇଚି ।

କମ୍ପାଉଣ୍ଡର : ଏଥିରେ ନୂଆ କଥା କିଛି ନାହିଁ ।

ଗଦା : ଆମ ଗାଁର ସାଧୁଚରଣ ଓଝା ଆଉ ତା' ପୁଅ ଭକ୍ତଚରଣ ଓଝା ଆମକୁ ମାରିଚନ୍ତି—ପିଟିଚନ୍ତି ।

କମ୍ପାଉଣ୍ଡର : ଆପଣମାନେ କିଏ ?

ଗଦା : ଆମେ ? ମୁଁ ହେଲି ଗଦାଧର ବସ୍ତିଆ, ଆଉ ଇଏ ମୋ ପୁଅ ରଙ୍ଗାଧର ବସ୍ତିଆ ।

କମ୍ପାଉଣ୍ଡର : ଓ ! ସେ ବାପ ପୁଅ ଦୁହେଁ ଆପଣ ବାପ ପୁଅ ଦୁହିଁଙ୍କୁ ମାରିଚନ୍ତି—ପିଟିଚନ୍ତି ।

ରଙ୍ଗା : ଖୁବ୍ ! ମାରି ନାରି ନସ୍ତାନ୍ତ କରିଦେଇଚନ୍ତି । ଜବରଦସ୍ତ ମୋ ହାତରୁ ଘଣ୍ଟା ଛଡ଼େଇ ନେଇଚନ୍ତି ।

କମ୍ପାଉଣ୍ଡର : ହୁଁ, ଦେଖୁଚି ହାତରେ ଘଣ୍ଟା ନାହିଁ—ଘଣ୍ଟାପିନ୍ଧା ଚିହ୍ନଟା ଅଛି ।

ରଙ୍ଗା : ଆଜ୍ଞା—ଆଜ୍ଞା !

କମ୍ପାଉଣ୍ଡର : କିନ୍ତୁ ହାତଟାକୁ ପକେଟ୍ ଭିତରେ ନେଇ ରଖୁଚ କାହିଁକି ?

ଗଦା : ସେଇଟା—ସେଇଟା ତା' ଅଭ୍ୟାସ ।

କମ୍ପାଉଣ୍ଡର : ଆଚ୍ଛା···ତା'ପରେ ?

ଗଦା : ବର୍ତ୍ତମାନ ଆମ ପାଳି ।

କମ୍ପା : ଆପଣଙ୍କ ପାଳି···ମାନେ ? ଆପଣ ତାଙ୍କୁ ମାରିବେ ?

ରଙ୍ଗା : ମାରନ୍ତୁ ନାହିଁ କାହିଁକି ? ହେଲେ ମାରନ୍ତୁ କାହାକୁ ? ଓଝା ବାପ ପୁଅ ବଡ଼େ କାହାନ୍ତି ?

କମ୍ପାଉଣ୍ଡର : ସିଏ କାହାନ୍ତି ତ, ଏଠିକି ଆସିଚନ୍ତି କାହିଁକି ? ଏଠି କାହାକୁ ମାରବେ ?

ରଙ୍ଗା : ଏଠିକି ଆସିଚୁ ପରା…

ଗଦା : (ବାଧାଦେଇ) ରଙ୍ଗା !

ରଙ୍ଗା : ବାପା !

ଗଦା : ତୁ ରହ ପୁଅ—ଏମିତି ଅଗଚଲା ଢଙ୍ଗ ଧରନା । ଏ ସବୁ ବ୍ୟାପାର ମୋ ଉପରେ ଛାଡ଼ିଦେ' ।

ରଙ୍ଗା : ଦେଲି ।

କମ୍ପାଉଣ୍ଡର : ଏବେ ଆପଣଙ୍କ ପାଳି କଥା କୁହନ୍ତୁ ଗଦାଧରବାବୁ !

ଗଦା : ଆମ ପାଳି ଆମେ ମକଦ୍ଦମା କରିବୁ । ଆମେ ବେଆଇନ୍ କାମ କରିବୁ ନାହିଁ । ଆଇନ୍‌କାନୁନ୍ ମାନି, ପୁରା ଗଣ କାର୍ତ୍ତିକ ମତରେ…

କମ୍ପାଉଣ୍ଡର : ଗଣକାର୍ତ୍ତିକ ! ସେ ପୁଣି କି ମତ ?

ଗଦା : ଗଣକାର୍ତ୍ତିକ—ଗଣେଶ ଆଉ କାର୍ତ୍ତିକଙ୍କ ମତ—ଯୋଉ ମତରେ ଆଜିକାଲି ଦୁନିଆ ଚାଲିଚି ।

କମ୍ପାଉଣ୍ଡର : ଓ, ବୁଝିଲି ! ଗଣତାନ୍ତ୍ରିକ ମତ ।

ଗଦା : କାର୍ତ୍ତିକ ନୁହେଁ ?

ରଙ୍ଗା : ନାଇଁ ବାପା, ତାନ୍ତ୍ରିକ ମତ । କାର୍ତ୍ତିକ ହେଲା ସେ ଓଝା ବାପ ପୁଅଙ୍କ ମତ । କାର୍ତ୍ତିକକୁମାର ହଉଚନ୍ତି ମାରଧରବାଲା ତ !

ଗଦା : ଛାଡ଼ ପୁଅ, ସେଥିରୁ କଣ ମିଳିବ ? ଏଇ କମ୍ପାଉଣ୍ଡର ବାବୁ ଯାହା କହିଲେ ସେଇ ମତରେ ଚାଲିବୁ—ଆମେ ଉଚିତ ଅଦାଲତରେ ମକଦ୍ଦମା କରିବୁ ।

କମ୍ପାଉଣ୍ଡର : ଆଉ ସେଇଥିପାଇଁ ଡାକ୍ତର ସାର୍ଟିଫିକେଟ ନେବାକୁ ଆସିଚନ୍ତି ?

ଗଦା : ଆପଣ ତ ଜାଣିଚନ୍ତି ସବୁ ।

କମ୍ପାଉଣ୍ଡର : କିଛି ଜାଣି ନାହିଁ । ଆହୁରି ଅନେକ କଥା ଜାଣିବାର ଅଛି ।… ତାହାହେଲେ ଆପଣଙ୍କ ଗାଁ ନୂଆପାଟଣାର ସାଧୁଚରଣ ଓଝା ଓ ତାଙ୍କ ପୁଅ…

ଗଦା : ଭକ୍ତଚରଣ ଓଝା…

କମ୍ପାଉଣ୍ଡର : ଆପଣ ଶ୍ରୀ…

ଗଦା : ଗଦାଧର ବଡ଼ିଆ

କମ୍ପାଉଣ୍ଡର : ବଡ଼ିଆ ଓ ତାଙ୍କ ପୁଅ…

ରଙ୍ଗା : ରଙ୍ଗା—ରଙ୍ଗାଧର ବଡ଼ିଆ—ମୁଁ—ମୋ ନାଁ ରଙ୍ଗାଧର ବଡ଼ିଆ ।

କମ୍ପାଉଣ୍ଡର : ବୁଝିଲି—ସେ ବାପ ପୁଅ ଦୁହେଁ ଆପଣ ବାପ ପୁଅ ଦୁହିଁଙ୍କୁ···

ରଙ୍ଗା :
ଗଦା : } ମାଣଚନ୍ଦ୍ର ।

କମ୍ପାଉଣ୍ଡର : କ ମାଡ଼ ?

ଗଦା : ଆଜ୍ଞା !

କମ୍ପାଉଣ୍ଡର : କ ମାଡ଼ ?

ଗଦା : ବୁଝିଲେ କମ୍ପାଉଣ୍ଡର ବାବୁ, ମା—ମାଡ଼···ମାଡ଼ ।

କମ୍ପାଉଣ୍ଡର : ଆରେ ବାବୁ କ ମାଡ଼ ?

ରଙ୍ଗା : ଗଣକାର୍ତ୍ତିକ । ବୁଝିଲେ କମ୍ପାଉଣ୍ଡର ବାବୁ, ପୂରା କାର୍ତ୍ତିକଆ ମାଡ଼ ନଦ୍ଦଦେଇଗଲେ ।

କମ୍ପାଉଣ୍ଡର : ଚିହ୍ନ ?

ଗଦା : (ହତାଶ ହେଲା ଭଳି) ଆଜ୍ଞା !

କମ୍ପାଉଣ୍ଡର : ଚିହ୍ନ । ମାଡ଼ ଯେ ନଦ୍ଦଦେଇଗଲେ, ତା'ର ଚିହ୍ନ କଣ ଅଛି ? ଦେଖାନ୍ତୁ, କୋଉଠି ମୁଣ୍ଡ ଫାଟିଚି କ ଆଖି ଫୁଟିଚି କ ଦାନ୍ତ ଭାଙ୍ଗିଚି କୁହନ୍ତୁ । ଡାକ୍ତରବାବୁ ଅସିବା ପୂର୍ବରୁ ମୁଁ ସବୁ ରପୋର୍ଟ ଠିକ୍ କରି ରଖିଥିବ !

ଗଦା : ଆପଣ କଣ ଜାଣିନାହାନ୍ତି କମ୍ପାଉଣ୍ଡରବାବୁ ?

କମ୍ପାଉଣ୍ଡର : କୋଉକଥା ?

ଗଦା : ଏ ଯୋଉ ମାଡ଼—ମାନେ ଯୋଉ ମାଡ଼ରେ ଡାକ୍ତର-ସାର୍ଟିଫିକେଟ ଦରକାର ହୁଏ, ସେ ମାଡ଼ରେ କଣ ଚିହ୍ନ ରହେ ?

କମ୍ପାଉଣ୍ଡର : ଚିହ୍ନ ତେବେ ଯାଏ କୁଆଡ଼େ ?

ଗଦା : ଭିତରକୁ । ମାଡ଼ ସିନା ପିଠିରେ, ମୁଣ୍ଡରେ, ଦେହରେ ହୁଏ—ହେଲେ ଚିହ୍ନସବୁ ଭିତରକୁ ଚାଲିଯାଏ ।

କମ୍ପାଉଣ୍ଡର : ହୁଁ, ଏଇ ତା'ହେଲେ ଆପଣଙ୍କର ଗଣତାନ୍ତ୍ରିକ ମତ ?

ଗଦା : ଆପଣଙ୍କୁ କଣ କୋଉ କଥା ଅଜଣା ଅଛି ?

କମ୍ପାଉଣ୍ଡର : ନାଇଁ ଆଜ୍ଞା, ସବୁ ଜଣା । ଆପଣମାନେ ଏବେ ଯା'ନ୍ତୁ ।

ଗଦା : କୋଉଠିକି ଆଜ୍ଞା ?

କମ୍ପାଉଣ୍ଡର : ଘରକୁ । ଚାଲିକରି ଯିବା ଦରକାର ନାହିଁ—ରିକ୍ସାରେ ବି ଯା'ନ୍ତୁ ନାହିଁ । ଟଙ୍କା ଅଛି, ଖର୍ଚ୍ଚ କରି ଟାକ୍ସିରେ ଯା'ନ୍ତୁ ।

ଗଦା : ସାର୍ଟିଫିକେଟ ?

କମ୍ପା : ମିଳିବ ନାହିଁ ।

ଗଦା : ତା' ହେଲେ ଡାକ୍ତରବାବୁ ଆସିଲେ···

କର୍ମା : ମୁଁ ଯାହା କହୁଚି, ଡାକ୍ତରବାବୁ ଠିକ୍ ସେଇଆ କହିବେ—ପଦେ ଏପାଖ ସେପାଖ ନାହିଁ—ବୁଝିଲେ ? ମାନେ ମାନେ ଫେରଯାନ୍ତୁ···ମିଛଟାରେ ମୋର ଏତେ ସମୟ ନଷ୍ଟ ହେଲା ।

(କହୁ କହୁ ଭିତର କୋଠରିକୁ ଚାଲିଗଲେ)

ରଙ୍ଗା : ସେ କଣ ଚାଲିଗଲେ ବାପା ?

ଗଦା : ଯାଆନ୍ତୁ ! ଡାକ୍ତରବାବୁଙ୍କ ଆସିବା ବେଳ ହୋଇଗଲାଣି—ସେ ଆସନ୍ତୁ ।

(ଏତିକବେଳେ ରଙ୍ଗା ବାହାରକୁ ଚାହିଁ ଚମକିଉଠିଲା)

ରଙ୍ଗା . ବାପା !

ଗଦା : କଣ ହେଲା ? ଏମିତି ଚମକିଲୁ କାହିଁକି ?

ରଙ୍ଗା : ଏଇ ଦେଖିଲ ଏଣେ—ଓଝା ବାପ ପୁଅ ।

ଗଦା : କାହାନ୍ତି ?

ରଙ୍ଗା : ଏଇ ସେ ସଡ଼କ ଧାର ଗଛମୂଳରେ ଠିଆହୋଇଚନ୍ତି ।

(ଦୁହେଁ ବିବ୍ରତ ହୋଇପଡ଼ିଲେ)

ଗଦା : ଡାକ୍ତରଖାନାକୁ ଆସିବେ କି ?

ରଙ୍ଗା : କେଜାଣି ? (ଟିକିଏ ରହି) ଏଇ ପରା ଫାଟକ ଖୋଲି ସିଧା ଡାକ୍ତରଖାନା ହତା ଭିତରକୁ ପଶିଲେଣି ।

ଗଦା : କଣ କରିବା ?

ରଙ୍ଗା : ମାରିବା ।

ଗଦା : କଣ କହିଲୁ ?

ରଙ୍ଗା : ମାରି ଛତୁ କରିଦେବା ।

ଗଦା : ତୁ ବାଉଳା ହେଲୁ ପୁଅ ! ଡାକ୍ତରଖାନା ହତାକୁ ପରା ଥନା ହତା ଲାଗିଚି । ଏଇଠା ମାରଧରରେ ଜାଗା ନୁହେଁ !···କଣ କରିବା ? ଘାରି ଅଡ଼ୁଆ ହୋଇଥିଲା ।

ରଙ୍ଗା : ମୋ ମନ ଯାହା ହଉଚି ନା ?

ଗଦା : ମନକଥା ମନରେ ରଖି ତୁ ଆ' ପୁଅ !

ରଙ୍ଗା : କୋଉଠିକି ?

ଗଦା : କମ୍ପାଉଣ୍ଡରବାବୁଙ୍କ ପାଖକୁ ଆ ।

(ଦୁହେଁ ଭିତର କୋଠରି ଦୁଆରମୁହଁ ପାଖକୁ ଗଲେ)

ଆଜ୍ଞା, କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : (ବାହାରକୁ ଆସି) ଏ କଣ ? ଆପଣମାନେ ଯାଇନାହାନ୍ତି ?

ଗଦା : ଆଉ ଯିବା କଥା ନୁହେଁ କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ଯିବେ ନାହିଁ ତ, ଏଠିକି କାହିଁକି ଆସିଲେ ? ତେଣେ ବାହାରେ ରୋଗୀମାନେ ଯେଉଁଠି ବସନ୍ତି ସେଇ ବାହାର ବାରଣ୍ଡାରେ ଯାଇ ବସନ୍ତୁ ।

ଗଦା : ଆମେ ତ ରୋଗୀ ନୋହୁଁ ଆଜ୍ଞା—ଆମେ ଏ ଘର ଭିତରେ ବସିବୁ ।

କମ୍ପାଉଣ୍ଡର : ଏଇଟା କାହାର ବସିବା ଘର ନୁହେଁ ।

ଗଦା : ଏଇଟା କି ଘର ?

କମ୍ପାଉଣ୍ଡର : ଏଇଟା ରୋଗୀ ପରୀକ୍ଷା ଘର ।

ଗଦା : ହଉ ପଛେ, ଆମେ ଏଇ ଘର ଭିତରେ ରହିବୁ ।

କମ୍ପାଉଣ୍ଡର : (ଦୃଢ଼ ଗଳାରେ) ଯା'ନ୍ତୁ, ଚାଲିଯା'ନ୍ତୁ ଏଠୁ—ଯା'ନ୍ତୁ କହୁଚି !

ଗଦା (କମ୍ପାଉଣ୍ଡରଙ୍କ ହାତ ଧରି) ବୟସରେ ମୁଁ ଆପଣଙ୍କ ବାପ ପରି—ହେଲେ ଧର୍ମରେ ଆପଣ ମୋର ବାପ ।

କମ୍ପାଉଣ୍ଡର : ବାପ !!

ଗଦା : ହଁ ଆପଣ ମୋର ଧର୍ମବାପ । (କମ୍ପାଉଣ୍ଡରଙ୍କ ଗୋଡ଼ ପାଖରେ ବସି) ମୁଁ ଆପଣଙ୍କ ଗୋଡ଼ ଧରୁଚି—ଆପଣ ଆମକୁ ଏଠୁ ତଡ଼ିଦିଅନ୍ତୁ ନାହିଁ । ଆମେ ଏ ଘର ଭିତରେ ସେ ମେଜ ତଳେ ଟିକିଏ ଛପି ରହିଯିବୁ ।

କମ୍ପାଉଣ୍ଡର : ଛପିରହିଯିବେ ? କାହିଁକି ?

ଗଦା : ଆଉ କିଛି ପଚାରନ୍ତୁ ନାହିଁ ।

ରଙ୍ଗା : ହେଇଟି···ବାପା···

ଗଦା : ତୁ ରହ ପୁଅ, ମୁଁ ମୋ ବାପା ସହିତ କଥାବାର୍ତ୍ତା କରୁଚି ।···ହେଇଟି, ବାପା ।

ଡାକ୍ତର : (ବାହାରୁ କମ୍ପାଉଣ୍ଡର ବାବୁ !

ରଙ୍ଗା : ହେଇ, ଡାକ୍ତରବାବୁ ଆସିଲେଣି !

ଗଦା : ଆପଣ ଯା'ନ୍ତୁ ବାପା, ଆମେ ଭିତରକୁ ଯାଉଚୁ ।

କମ୍ପାଉଣ୍ଡର : ଏ କି ପିଲା ଖେଳ ଏଠି ଚାଲିଚି !

ଗଦା : ମୁଁ କଣ ପିଲା ନୁହେଁ ବାପା ? ଆପଣଙ୍କ ଆଖିରେ ମୁଁ ପିଲାଟିଏ । କବାଟଟା ଆଉଜେଇ ଦେଇ ଆପଣ ଯାନ୍ତୁ ।···ଆ ରଙ୍ଗା ।

(ଦୁହେଁ ଭିତରକୁ ପଶିଗଲେ । କମ୍ପାଉଣ୍ଡର ବାଧ୍ୟ ହେଲା ଭଳି କବାଟ ଆଉଜେଇ ଦେଲେ···ଡାକ୍ତର ଆସିଲେ । )

ଡାକ୍ତର : କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ଆଜ୍ଞା···ଆ···ଜ୍ଞା···ସାର୍ !

ଡାକ୍ତର : କଣ ହେଲା ଆପଣଙ୍କର ?

କମ୍ପାଉଣ୍ଡର : କିଛି ନାହିଁ ସାର୍ ।

ଡାକ୍ତର : କେମିତ ବଡଲୋକ ଜଣା ପଡ଼ୁଚନ୍ତି ।
କମ୍ପାଉଣ୍ଡର : ନାହିଁ ସାର୍ ।
ଡାକ୍ତର : ପଣ୍ଡାବାବୁଙ୍କ ଘରୁ କିଏ ଆସିଥିଲେ କି ?
କମ୍ପାଉଣ୍ଡର : ପଣ୍ଡାବାବୁ···ପଣ୍ଡାବାବୁ···
ଡାକ୍ତର : ଆସି ନାହାନ୍ତି କେହି ?
କମ୍ପାଉଣ୍ଡର : ନାହିଁ ଆଜ୍ଞା ।
ଡାକ୍ତର : ରୋଗୀ କେହି ଆସିଲେଣି ?
କମ୍ପାଉଣ୍ଡର : ରୋଗୀ···
ଡାକ୍ତର : ନାହିଁ···ବେଶି କେହି ଆସି ତ ନାହାନ୍ତି । ମୁଁ ଟିକିଏ ପଣ୍ଡାବାବୁଙ୍କ ଘର ଆଡ଼୍ ବୁଲିଆସେ ।
କମ୍ପାଉଣ୍ଡର : ଯାନ୍ତୁ ସାର୍ !

[ସାଧୁଚରଣ ଓ ଭକ୍ତଚରଣ ଆସିଲେ । ଦୁହିଁଙ୍କଠାରେ ବ୍ୟଗ୍ରଭାବ । ବେଶଭୂଷା ଗଦାଧର ଓ ରଙ୍ଗାଧରର ଅନୁରୂପ । ]

ସାଧୁ } ଭକ୍ତ } : ଦଣ୍ଡବତ ଆଜ୍ଞା !
କମ୍ପାଉଣ୍ଡର : ଶୁଣନ୍ତୁ, ଶୁଣନ୍ତୁ ! ଆପଣମାନେ ଯାଇ ସେ ବାହାର ବାରଣ୍ଡାରେ ବସନ୍ତୁ । ଡାକ୍ତର ବାବୁ ରୋଗୀ ଦେଖି ଯାଉଚନ୍ତି—ଆସିଲେ ଆପଣଙ୍କ କଥା ବୁଝିବେ ।
ସାଧୁ : ନାହିଁ ଆଜ୍ଞା ଡାକ୍ତର ବାବୁ ! ଆପଣ ଟିକିଏ ଆମ କଥା ବୁଝିଦେଇ ଯୁଆଡ଼େ ଯିବାର ଯା'ନ୍ତୁ । ଏଇ ଆପଣଙ୍କର ପାଉଣା । ଦେ' ପୁଅ, ଟଙ୍କା ବାହାରକର ।
ଡାକ୍ତର : ପାଉଣା ଥାଉ—କଣ ହେଇଚ କୁହନ୍ତୁ ।
ସାଧୁ : ମୋ ସଂସାର ତ ଉଚ୍ଛନ୍ନ ହେଇଗଲାଣି ବାବୁ ।
ଡାକ୍ତର : କଣ ହେଇଚି କୁହନ୍ତୁ ।
ଭକ୍ତ : (କାନ୍ଦ କାନ୍ଦ ହେଇ) ବାପା···
ସାଧୁ : କଣ ପୁଅ—କାନ୍ଦବୁ ? କାନ୍ଦ । ଡାକ୍ତର ବାବୁ ତ ଅଛନ୍ତି—କମ୍ପାଉଣ୍ଡର ବାବୁ ଅଛନ୍ତି । କାନ୍ଦ—ସେମାନେ ଦେଖନ୍ତୁ ।
ଡାକ୍ତର : କାନ୍ଦୁ ସେ କାନ୍ଦବେ କାହିଁକି ?
ସାଧୁ : କାନ୍ଦଲେ ଆପଣ ବଳେ ଜାଣିପାରବେ ।
ଡାକ୍ତର : କାନ୍ଦବାଟା କଣ ତାଙ୍କର ରୋଗ ?
ଭକ୍ତ : ନାହିଁ ଆଜ୍ଞା, ସେମିତ କିଛି ରୋଗ ମୋର ନାହିଁ ।

ଡାକ୍ତର : ତାହେଲେ ମିଛଟାରେ କାନ୍ଦବେ କାହିଁକ ?
ସାଧୂ : ମିଛଟାରେ ନୁହେଁ ଆଜ୍ଞା···ମିଛଟାରେ କଣ କଏ କାନ୍ଦେ ? ପିଲାଟା ମୋର କାନ୍ଦ କାନ୍ଦ ନସ୍ତାନ୍ତ ହେଇଗଲାଣି ।
ଭକ୍ତ : (କାନ୍ଦଉଠିଲା)
ଡାକ୍ତର : କ ଆଶ୍ଚର୍ଯ୍ୟ କଥା ! କମ୍ପାଉଣ୍ଡର ବାବୁ, ଏସବୁ କଣ ଏଠି ହଉଚ ?
କମ୍ପାଉଣ୍ଡର : (ଭକ୍ତକୁ) ଶୁଣ୍ଣୁ, ଶୁଣ୍ଣୁ···ହୋ ବାବୁ, ଟିକଏ ଶୁଣ୍ଣୁ ମୋ କଥା ।
ଭକ୍ତ : କଣ ?
କମ୍ପାଉଣ୍ଡର : ନକାନ୍ଦଲେ କଣ ଚଳିବନାହିଁ ?
ଭକ୍ତ : ଆଜ୍ଞା ?
କମ୍ପାଉଣ୍ଡର : ମୁଁ କହୁଚ···ନକାନ୍ଦଲେ କଣ ଚଳିବନାହିଁ ?
ସାଧୂ : ଆପଣମାନେ ଚଳେଇଲେ ଚଳିବ । ତା'ରତ ହେଇ କୋହଘର ଉଠିଆସୁଚ —ସେ କରିବ କଣ ?
ଭକ୍ତ : (କାନ୍ଦୁଥାଏ)
ଡାକ୍ତର : (କଥାରେ ଜୋର୍ ଦେଇ) ଆପଣ ଆଗେ ଚୁନ ହେଲେ—ଚୁନ ହୁଅନ୍ତୁ ।
ସାଧୂ : ହଉରେ ପୁଅ, ଚୁନ ହ ।
ଡାକ୍ତର : ଏସବୁ ଫାର୍ସ ଛାଡ଼ ମୋତେ ଖୋଲଖୋଲ କୁହନ୍ତୁ—କାହିଁକ ସେ କାନ୍ଦୁଚନ୍ତ —ଆପଣ ତାଙ୍କୁ କାହିଁକ କାନ୍ଦବାକୁ କହୁଲେ ।
ସାଧୂ : ଘରୁ ବାହାରିଲା ବେଳଠୁ ପୁଅ ମୋର ବାଟଯାକ କାନ୍ଦ କାନ୍ଦ ଆସୁଥିଲା । ଏଠି ଡାକ୍ତରଖାନା ପାଖ ହେଲାରୁ ଟିକଏ ଚୁନ ପଡ଼ିଲା ।
ଡାକ୍ତର : କାହିଁକ ?
ସାଧୂ : ଚକ୍ଷୁଲଜ୍ଜା ବୋଲି ଗୋଟାଏ ଜନିଷ ଅଛି ତ ?
ଡାକ୍ତର : ଆଉ ଏଠି ଆମର କାହାର ଚକ୍ଷୁନାହିଁ କ ତାଙ୍କର ଲଜ୍ଜା ନାହିଁ···ଏଇଆ ?
ସାଧୂ : ଛାଡ଼ନ୍ତୁ ଆଜ୍ଞା, ସେ ଚୁନ ହେଲାଣି ।
ଡାକ୍ତର : ଏବେ କୁହନ୍ତୁ, କାହାର କଣ ହେଇଚ । ଚଞ୍ଚଳ, ମୋର ସମୟ ନାହିଁ ।
ସାଧୂ : ଆମ ଗାଁ ନୂଆପାଣରେ···
କମ୍ପାଉଣ୍ଡର : ଜାଣେ ।
ଡାକ୍ତର : ଜାଣନ୍ତ ?
କମ୍ପାଉଣ୍ଡର : ଏଁ !! ହଁ-ହଁ ସାର୍, ନୂଆପାଣ ଗୋଟାଏ ବଖ୍ୟାତ ଗାଁ ତ, କଏ ନ ଜାଣେ ?
ଡାକ୍ତର : ଓ !
ସାଧୂ : ଆମ ଗାଁରେ ଗୋଟାଏ ଦଙ୍ଗାହଙ୍ଗାମା ହୋଇଯାଇଚ ।

କମ୍ପାଉଣ୍ଡର : ତା'ବି ଜାଣେ ।

ସାଧୁ : ଆମ ଗାଁର ଗଦାଧର ବଡ଼ିଆ ଆଉ ତା'ପୁଅ ରଙ୍ଗାଧର ବଡ଼ିଆ···

କମ୍ପାଉଣ୍ଡର : ତାଙ୍କୁ ବି ଜାଣେ ।

ଡାକ୍ତର : ସେମାନଙ୍କୁ ଆପଣ କପରି ଜାଣିଲେ ? (କମ୍ପାଉଣ୍ଡର କେବଳ ଗୁହିଁ ରହିଲେ) କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ସାର୍ !

ଡାକ୍ତର : ବଡ଼ିଆ ବାପ ପୁଅଙ୍କୁ ଆପଣ କେମିତି ଜାଣିଲେ ?

କମ୍ପାଉଣ୍ଡର : ଏଇଠି, ଏଇଠି ଜାଣିଲି ସାର୍ !···ଇଏ ଏଇଠି କହୁ ଯାଉଚନ୍ତି ତ, ତାଙ୍କ କଥା ଶୁଣୁ ଶୁଣୁ ମୋ ପାଟିରୁ ଏମିତି ବାହାରିପଡ଼ିଲା ।

ଡାକ୍ତର : ଓ ! (ସାଧୁଙ୍କୁ) ହଁ, ତୁମକୁ କଣ ହେଲା ?

ସାଧୁ : ଏଇ ବଡ଼ିଆ ବାପ ପୁଅ ଦୁହେଁ ଦଙ୍ଗାହାଙ୍ଗାମରେ ଆମ ବାପ ପୁଅ ଦୁହିଁଙ୍କୁ ମାରିଲେ ।

ଡାକ୍ତର : ମାରିଲେ ?

ଭକ୍ତ : ଖୁବ୍ । ମାରି ମାରି ଗଇଁଆ କରିଦେଇଚନ୍ତି ।

ଡାକ୍ତର : ଆପଣମାନଙ୍କ ପରିଚୟ ?

ସାଧୁ : ମୋ ନାଁ ସାଧୁଚରଣ ଓଝା, ଆଉ ଇଏ ମୋ ପୁଅ···

କମ୍ପାଉଣ୍ଡର : (ଈଷତ ଗମ୍ଭୀର ଭାବେ) ଭକ୍ତଚରଣ ଓଝା ।

ଭକ୍ତ : ହଁ ଆଜ୍ଞା, କମ୍ପାଉଣ୍ଡର ବାବୁ ଠିକ୍ କହୁଚନ୍ତି—ମୋ ନାଁ ଭକ୍ତ ଚରଣ ଓଝା ।

ଡାକ୍ତର : କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ସା···ସାର୍ !

ଡାକ୍ତର : ଆପଣ ଏ ସମସ୍ତଙ୍କୁ ତା'ହେଲେ ଜାଣିଚନ୍ତି ?

କମ୍ପାଉଣ୍ଡର : ସାର୍ ?

ଡାକ୍ତର : ଜାଣନ୍ତି ତ ?

କମ୍ପାଉଣ୍ଡର : ନାଇଁ ସାର୍ । ମୁଁ—ମୁଁ କାହାରିକୁ ଜାଣେନା ।

ଡାକ୍ତର : ଜାଣନ୍ତି ନାହିଁତ ଯୁଆଙ୍କ ନାଁ ଭକ୍ତଚରଣ ବୋଲି କହୁଚନ୍ତି କେମିତି ?··· ତୁମକୁ କେମିତି ଜାଣିଲେ ?

କମ୍ପାଉଣ୍ଡର : ଏଇ···ଏଇ ଦେଖନ୍ତୁ ସାର୍, ତାଙ୍କ ହାତରେ ତାଙ୍କ ନାଁ ଲେଖା-ହୋଇଚି ।

ଡାକ୍ତର : ଓ···ତା'ହେଲେ ସାଧୁଚରଣ ବାବୁ···

ସାଧୁ : ଆଜ୍ଞା !

ଡାକ୍ତର : ଆପଣଙ୍କ ଗାଁର ଗଦାଧର ବଡ଼ିଆ ଓ ତାଙ୍କ ପୁଅ—

ଭକ୍ତ : ରଙ୍ଗାଧର ବସ୍ତିଆ—
ଡାକ୍ତର : ଆପଣ ବାପ ପୁଅ ଦୁହିଁଙ୍କୁ ମାରଚନ୍ତି ?
ସାଧୁ : ହଁ ଆଜ୍ଞା, ସେ ବାପ ପୁଅ ଆମ ବାପ ପୁଅ ଦୁହିଁଙ୍କୁ ମାରଚନ୍ତି ।
କମ୍ପାଉଣ୍ଡର : ହରିବୋ···ଲ ।
ଡାକ୍ତର : କମ୍ପାଉଣ୍ଡରବାବୁ !
କମ୍ପାଉଣ୍ଡର : ସାର୍ !
ଡାକ୍ତର : କଣ ହେଇଚ ଆପଣଙ୍କର ?
କମ୍ପାଉଣ୍ଡର : କଚ୍ଛୁ ଜାଣିହଉନ ସାର୍ ।
ଡାକ୍ତର : କିନ୍ତୁ ମୁଁ ଜାଣିଚ ।
କମ୍ପାଉଣ୍ଡର : କଣ ସାର୍—କଣ ଜାଣିଚନ୍ତି ?
ଡାକ୍ତର : ଜାଣିଚ ଏଇଆ ଯେ ଆପଣ ଏ ମାଡ଼ ଫୌଜଦାରୀ କଥା···
କମ୍ପାଉଣ୍ଡର : ସେଇ କଥା ସାର୍ ! ଏଇ ଯେ ମାଡ଼ ଫୌଜଦାରୀ ଦଙ୍ଗାହାଙ୍ଗାମ ହେଲ—ଏଥିରେ କଏ କାହାକୁ ମାରଚ···
ସାଧୁ : ସେମାନେ ଆମକୁ ମାରଚନ୍ତି ଆଜ୍ଞା ! ସେ ବାପ ପୁଅ ଆମ ବାପ ପୁଅଙ୍କୁ ମାରଚନ୍ତି ।
କମ୍ପାଉଣ୍ଡର : (ସ୍ପଷ୍ଟ ଗଳାରେ) ମାରଚନ୍ତି ତ ଭଲକଥା । ହେଲେ କି ମାଡ଼ ?
ସାଧୁ : ଆଜ୍ଞା ?
କମ୍ପାଉଣ୍ଡର : କି ମାଡ଼ ?···କି ମାଡ଼ ?
ଡାକ୍ତର : ଠେଙ୍ଗା ମାଡ଼, କି ଢେଲ ମାଡ଼, କି ହାତହତିଆର ମାଡ଼ ?
ଭକ୍ତ : ମିଶାମିଶି ମାଡ଼···ମିଶାମିଶି ମାଡ଼ ନଦ୍ଦେଇଗଲେ ।
ସାଧୁ : ସେଇ ଅପମାନରେ ପୁଅ ? ମୋର ବାଟଯାକ କାନ୍ଦକାନ୍ଦ ଆସୁଥିଲା ।
ଡାକ୍ତର : ମାଡ଼ଖାଇ ଆପଣମାନେ ତା'ହେଲେ ଆହତ ହୋଇଚନ୍ତି ?
ସାଧୁ : ହଁ ଆଜ୍ଞା, ମାଡ଼ ଯେତେବେଳେ ଖାଇଚୁ ଆହତ ହେଇନୁ କଣ ? ହେଇଚୁ !
ଡାକ୍ତର : ଚିକିତ୍ସା ପାଇଁ ମୋ ପାଖକୁ ଆସିଚନ୍ତି ତ ?
ସାଧୁ : ନାଇଁ ଆଜ୍ଞା, ଆପଣ ଖଣ୍ଡେ ସାର୍ଟିଫିକେଟ୍ ଦିଅନ୍ତୁ—ଡାକ୍ତରୀ ସାର୍ଟିଫିକେଟ୍ ।
ଡାକ୍ତର : ଚିକିତ୍ସା କରାଇବେ ନାହିଁ ?
ଭକ୍ତ : ଚିକିତ୍ସା ହଉ ନହଉ, ସାର୍ଟିଫିକେଟ ଦିଅନ୍ତୁ—ଆମେ ମକଦ୍ଦମା କରିବୁ । ଏ ମାଡ଼ର ଚିକିତ୍ସା ହେଲ ମକଦ୍ଦମା ।
କମ୍ପାଉଣ୍ଡର : ଆପଣମାନେ ତା'ହେଲେ ମକଦ୍ଦମା କରିବେ ?
ସାଧୁ : ହଁ, ମକଦ୍ଦମା କରିବୁ ।
କମ୍ପାଉଣ୍ଡର : ହରିବୋଲ ।

ଡାକ୍ତର : କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ସାର୍ !

ସାଧୁ : ଆଜ୍ଞା, କମ୍ପାଉଣ୍ଡର୍ ବାବୁ ଯେତେ ହରିବୋଲ ପକାନ୍ତୁ ପଛେ ଆମେ ମକଦ୍ଦମା କରିବୁ । ଆପଣ ଖଣ୍ଡେ ସାର୍ଟିଫିକେଟ୍ ଦିଅନ୍ତୁ ।

ଡାକ୍ତର : ଠିକ୍ ଅଛୁ, ମୁଁ ସାର୍ଟିଫିକେଟ୍ ଦେବି···

କମ୍ପାଉଣ୍ଡର : ଆଜ୍ଞା—ଆଜ୍ଞା—ଆପଣ ଯେ ସାର୍ଟିଫିକେଟ ଦେବେ, ଏମାନଙ୍କ ଦେହରେ ମାଡ଼ର ଚିହ୍ନ ? କେଉଁଠି କଣ ଭାଙ୍ଗିଚି, କ ଫୁଲିଚି···

ଡାକ୍ତର : ସେଇ କଥା ମୁଁ କହୁଚି···ଆପଣ ଦେଖନ୍ତୁ ।

କମ୍ପାଉଣ୍ଡର : ହଁ, କୁହନ୍ତୁ ବାବୁମାନେ—ମାଡ଼ଖାଇ କେଉଁଠି କଣ ହୋଇଚି, ଦେଖାନ୍ତୁ ।

ସାଧୁ : ଆଜ୍ଞା, ଆପଣ ଏତେ ଗମ୍ଭୀରକୁ ନଯାଇ ସେମିତ ଉପରେ ଉପରେ ଖଣ୍ଡେ ସାର୍ଟିଫିକେଟ ଦେଇଦିଅନ୍ତୁ ।

ଡାକ୍ତର : କଛୁ ନଜାଣି ନଶୁଣି ମୁଁ ସାର୍ଟିଫିକେଟ୍ ଦେବ ?

(ସାଧୁ ବସିପଡ଼ି ଡାକ୍ତରଙ୍କ ଗୋଡ଼ ଧରିପକେଇଲେ)

ସାଧୁ : ମୁଁ ଆପଣଙ୍କର ଗୋଡ଼ ଧରୁଚି, ଆପଣ ଆମକୁ ଉଦ୍ଧାର କରନ୍ତୁ ।

ଡାକ୍ତର : ଏ' ! କଣ···ଗୋଡ଼ ଛାଡ଼ନ୍ତୁ ।

ସାଧୁ : ନାଇଁ ଆଜ୍ଞା, ଛାଡ଼ିବ ନାଇଁ ।

ଡାକ୍ତର : ସାଧୁ ବାବୁ !

ସାଧୁ : ମୁଁ ବାବୁ ନୁହେଁ ଡାକ୍ତରବାବୁ—ମୁଁ ଆପଣଙ୍କ ଅଧମ ପୁଅ । ଆପଣ ମୋ ଧରମ ବାପ ।

କମ୍ପାଉଣ୍ଡର : (ଈଷତ୍ ନମ୍ରସ୍ୱରରେ) ହରିବୋଲ ।

ଭକ୍ତ : ହେଇଥ ବାପା···

ସାଧୁ : ଚୁପ୍ ! ମୁଁ କାହାର କଥା ଶୁଣିବନାହିଁ । ମୁଁ ମୋ ବାପ ଗୋଡ଼ ଧରି ଅଳି-କରୁଚି—ଖଣ୍ଡେ ସାର୍ଟିଫିକେଟ୍ ।

ଡାକ୍ତର : (ରାଗି) ଚୁପ୍ କରନ୍ତୁ । ଯା'ନ୍ତୁ, ବସନ୍ତୁ ସେଠି—ଯା'ନ୍ତୁ । (ସାଧୁ ଗୋଡ଼ ଛାଡ଼ି ଯାଇ ବେଞ୍ଚରେ ବସିଲେ) ଗୋଟାଏ ଫାର୍ମ ଭୁଲିଚ ଏଠି ? ମୁଁ ଆପଣମାନଙ୍କୁ ତନ୍ନ ତନ୍ନ ପରୀକ୍ଷା କରି ସାର୍ଟିଫିକେଟ୍ ଦେବ ।

ସାଧୁ : ଆପଣଙ୍କ ଦୟା ।

ଡାକ୍ତର : କମ୍ପାଉଣ୍ଡର ବାବୁ—

କମ୍ପାଉଣ୍ଡର : ଖୋଲନ୍ତୁ—ଦେହରୁ ଜାମାପଟା ସବୁ ଖୋଲନ୍ତୁ ।

ଡାକ୍ତର : ଏଠି କଣ—ସେ ଘରକୁ ଏମାନେ ଯା'ନ୍ତୁ ।

କମ୍ପାଉଣ୍ଡର : ମିଛଟାରେ ସେ ଘରକୁ ଯିବେ କାହିଁକି—ଏଇଠି କାମ ସାରିଦିଅନ୍ତୁ ।
ଡାକ୍ତର : ଏମାନଙ୍କ ପରି ଆପଣଙ୍କ ମୁଣ୍ଡ ବି ଖରାପ ହେଇଗଲାଣି ନା କଣ ? ଏଠି କି ପରୀକ୍ଷା କରିବେ ? ଏମାନଙ୍କୁ ସେ ଘରକୁ ନେଇ ଟେବୁଲ୍ ଉପରେ ଶୁଆନ୍ତୁ । ...ମୋ ମୁହଁକୁ ଏମିତି ଚାହିଁ ରହିଚନ୍ତି କଣ ? ସେ ଘରକୁ ଯା'ନ୍ତୁ ।...ଏ ! ଏ କଣ ? ଘରର କବାଟଟା ବନ୍ଦ ହେଇଚି କାହିଁକି ? କବାଟ ଖୋଲନ୍ତୁ ।
କମ୍ପାଉଣ୍ଡର : କବାଟଟା ଆଜ୍ଞା ଦେଇଦେଇଥିଲି...

[ଡାକ୍ତର ଉଠିଯାଇ କୋଠରି ଆଡ଼କୁ ଗଲେ । ପଛେ ପଛେ କମ୍ପାଉଣ୍ଡର ]

ଡାକ୍ତର : କାହିଁକି ଦେଇଥିଲେ ? ଘରେ କଣ କେହି ନୂଆବୋହୂ ଅଛନ୍ତି ? ଖୋଲନ୍ତୁ !
କମ୍ପାଉଣ୍ଡର : ଖୋଲୁଚି ସାର୍ । (ଖୋଲିଲେ)
ଡାକ୍ତର : ଏଁ ! ଏ କଣ ? ଏମାନେ କିଏ ? କମ୍ପାଉଣ୍ଡର ବାବୁ, ଟେବୁଲ୍ ଉପରେ ଶୋଇଚନ୍ତି ଏ ଦିଜଣ କିଏ ? କିଏ ଏମାନେ ? (କମ୍ପାଉଣ୍ଡର ନିରୁତ୍ତର) କି ଆଶ୍ଚର୍ଯ୍ୟ ! ଆପଣଙ୍କ ପାଟିରେ କଥା ନାହିଁ ? କମ୍ପାଉଣ୍ଡର ବାବୁ !
କମ୍ପାଉଣ୍ଡର : ଆଜ୍ଞା !
ଡାକ୍ତର : ଏ ଦି'ଜଣ କିଏ ?
କମ୍ପାଉଣ୍ଡର : ଏ ଦିଜଣ ସାର୍...ଇଏ...ମାନେ...ଇଏ ହେଉଚନ୍ତି ମୋ ପୁଅ ।
ଡାକ୍ତର : ଆପଣଙ୍କ ପୁଅ !
କମ୍ପାଉଣ୍ଡର : ଯିଏ ଆଜ୍ଞା ଯେମିତି ଆପଣଙ୍କର ପୁଅ, ଇଏ ସେମିତି ମୋ ପୁଅ ।
ଡାକ୍ତର : ମୁଁ କିଛି ବୁଝିପାରୁନି କମ୍ପାଉଣ୍ଡରବାବୁ !
କମ୍ପାଉଣ୍ଡର : ମୁଁ ହେଲେ ସାର୍ କିଛି ବୁଝିଚି ନା ବୁଝିବାର ସୁଯୋଗ ଏମାନେ ଦେଉଚନ୍ତି ? (ଗଦାଧରକୁ) ହଇଏ, ମେଜତଳେ ପଶି ଛପି ରହିବାର କଥା ଥିଲା—ମେଜ ଉପରକୁ ଉଠିଲ କାହିଁକି ?
ଗଦା : (କୋଠରି ଭିତରୁ) ଆଜ୍ଞା, ମେଜତଳେ ଛପିରହିଥିଲୁ । ସବୁକଥା ଆମ କାନରେ ପଡ଼ିଲା ପରେ ମେଜ ଉପରକୁ ଉଠିଆସିଲୁ ।
କମ୍ପାଉଣ୍ଡର : କାହିଁକି ? ମେଜଟା କଣ ତମର ?
ଗଦା : (ଭିତରୁ) ଡାକ୍ତର ବାବୁ ଯେବେ ପରୀକ୍ଷା କରିବା କଥା, ତେବେ ଆମକୁ ଆଗେ ପରୀକ୍ଷା କରନ୍ତୁ ।
ରଙ୍ଗା : (ଭିତରୁ) ଆମକୁ ଆଗେ ସାର୍ଟିଫିକେଟ୍ ଦିଅନ୍ତୁ ।
ଗଦା : (ଭିତରୁ) ଆମେ...ଆଗେ ଆସିଚୁ ।

ଡାକ୍ତର : ଇଏ ତା' ହେଲେ ନୂଆପାଟ୍ଣର ସେଇ ଗଦାଧର ବସ୍ତିଆ ଆଉ ରଙ୍ଗାଧର ବସ୍ତିଆ ?

ସାଧୁ : କଏ—କଏ ସେ ଘରେ ? ଗଦା ବସ୍ତିଆ ଆଉ ରଙ୍ଗା ବସ୍ତିଆ !

(ସାଧୁ ଓ ଭକ୍ତ ଦୁହେଁ ଆଗେଇ ଆସୁଥିଲେ, କମ୍ପାଉଣ୍ଡର ତାଙ୍କୁ ଅଟକେଇଲେ ।)

କମ୍ପାଉଣ୍ଡର : ହଁ। ହଁ।—ଆସ୍ତେ—ଆସ୍ତେ ସାଧୁବାବୁ ! ସେମାନେ ତ ଘର ଭିତରେ ଅଛନ୍ତି—ଆପଣ ସେ ଘରକୁ ନ ଯାଇ ଏଇ ପାଖରେ ଥାଇ ଯାହା କୁଶଳ ସମାଚାର ବୁଝିବାର କଥା ବୁଝନ୍ତୁ ।

ସାଧୁ : ହଇରେ ହେ ବସ୍ତିଆ ! (ଗଦାଧର ଓ ରଙ୍ଗାଧର ପଦାକୁ ବାହାରିଆସିଲେ)

ଗଦା : ପାଟି ଫୁଟଉନା ସାଧୁଆ—ପାଟି ଫୁଟଉନା କହିଦଉଚି ।

ସାଧୁ : ଦେଖୁଚନ୍ତି, ଦେଖୁଚନ୍ତି ଡାକ୍ତର ବାବୁ, ଆପଣଙ୍କ ସାମନାରେ ସେ ମତେ କଣ କହିଯାଉଚି !

ଗଦା : ମୁଁ କହୁଚି ନା ତୁ କହୁଚୁ ! ଡାକ୍ତରବାବୁ ଆଜ୍ଞା ସାକ୍ଷୀ—ସେଇ କୁହନ୍ତୁ—କଏ କାହାକୁ କଣ କହିଲା ! ମୋର କଣ ନାଁ ନାହିଁ ନା ଗାଁ ନାହିଁ—ତୁ ମତେ ତୁ' ତା' ରେ' ସ୍' କହିବୁ ?

ସାଧୁ : ନାହିଁ ତତେ ଫୁଲ ମହାପ୍ରସାଦ ଦେଇ ପୂଜା କରିବ ! ଗୈର…

ଗଦା : ପାଜି…

ସାଧୁ : ସଇତାନ…

ଗଦା : କୁକୁର…

ଡାକ୍ତର : କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ଉପଯୁକ୍ତ ଭାଷା ପ୍ରୟୋଗରେ ଉଭୟେ ପ୍ରବୀଣ । କେହି କାହାକୁ ଊଣା ନୁହନ୍ତି !

ଡାକ୍ତର : ଆଉ ଆପଣ ଏଠି ଠିଆହୋଇ ସେ ଦୃଶ୍ୟ ଉପଭୋଗ କରୁଚନ୍ତି !

କମ୍ପାଉଣ୍ଡର : ଏମାନେ ତ ସାର୍ କେହି କାହାରିକୁ କିଛି କୁହାଇ ଦଉନାହାନ୍ତି କ କରେଇ ଦଉନାହାନ୍ତି ।

ଡାକ୍ତର : ଆଗେ ଏ ବସ୍ତିଆ ବାପ ପୁଅ ଦୁହିଁଙ୍କୁ ଏଠୁ ବାହାରକରିଦିଅନ୍ତୁ ।

ଗଦା : କାହିଁକି ଆଜ୍ଞା ? ଆମର ଅପରାଧ ?

ଡାକ୍ତର : ଆପଣ ଆଗେ ଗଲେ ଏଠୁ !

ଭକ୍ତ : ହଁ, ଯା ଏଠୁ । ହେ ରଙ୍ଗା—ଯା ଏଠୁ ।

ରଙ୍ଗା : ତୁ କଏ ? ତୁ କଏ କହିବାକୁ ବା—ତୁ କଏ ?

ଭକ୍ତ : ଡାକ୍ତରବାବୁ କହୁଚନ୍ତି ତେମେ ଦି'ଟା ଯାଅ ଏଠୁ ।

ରଙ୍ଗା : ଡାକ୍ତରବାବୁଙ୍କ କଥା ବୁଝିବାକୁ ଏଠି କମ୍ପାଉଣ୍ଡର ବାବୁ ଅଛନ୍ତି—ତୁ ଚୁପ୍ !

ଭକ୍ତ : ଋ ଚୁପ୍ !
କମ୍ପାଉଣ୍ଡର : ସମସ୍ତେ ଚୁପ୍ । କେହି ପାଟି ଗୁଣ୍ଡ କରନ୍ତୁନାହିଁ ।
ଡାକ୍ତର : ଆପଣ ଟେବୁଲ ଠିକ୍ କରନ୍ତୁ—ମୁଁ ଏମାନଙ୍କୁ ପରୀକ୍ଷା କରିବ ।
ଗଦା : ଆମକୁ ତ ଆଜ୍ଞା—ଆମକୁ ପରୀକ୍ଷା କରିବେ ତ ?
ଡାକ୍ତର : ନା, ଏ ଓଝା ବାପ ପୁଅ ଦୁହିଁଙ୍କୁ ।
କମ୍ପାଉଣ୍ଡର : ମୁଁ କହୁଥିଲି ସାର୍...
ଡାକ୍ତର : କଣ ?
କମ୍ପାଉଣ୍ଡର : ଏ ବସ୍ତିଆ ବାପ ପୁଅ ଦୁହେଁ ଆଗେ ଆସିଥିଲେ । ସେମାନଙ୍କୁ ଆଗେ ପରୀକ୍ଷା କରିଦେଲେ...
ଡାକ୍ତର : ଓ ! ଆପଣ ତା'ହେଲେ ଏମାନଙ୍କ ପକ୍ଷ ନଉଚନ୍ତି ?
କମ୍ପାଉଣ୍ଡର : ନାଇଁ ସାର୍—କ୍ଷମା କରନ୍ତୁ । ମତେ ଏ ଦୋଷରେ ଦୋଷୀ କରନ୍ତୁ ନାହିଁ । ମୁଁ ଏତେ ବଡ଼ କଥା କହିବ ?
ଡାକ୍ତର : ଶୁଣନ୍ତୁ, ଆମ ସମୟ ନଷ୍ଟ ନ କରି ଟେବୁଲ ଠିକ୍ କରନ୍ତୁ—ମୁଁ ସାଙ୍ଗେ ସଙ୍ଗେ ଆସୁଚି । (ଚାଲିଗଲେ)
ଗଦା : ଡାକ୍ତରବାବୁ କୁଆଡ଼େ ଗଲେ ଆଜ୍ଞା ?
କମ୍ପାଉଣ୍ଡର : କୁଆଡ଼େ ଚଲେ ପଚାରନ୍ତୁ ନାହିଁ—ଏଇ ସାଙ୍ଗେ ସାଙ୍ଗେ ଆସି ଓଝା ବାପ ପୁଅ ଦୁହିଁଙ୍କୁ ପରୀକ୍ଷା କରିବେ ।
ଗଦା : ଆଉ ଆମ କଥା ?
କମ୍ପାଉଣ୍ଡର : ଆପଣଙ୍କ କଥା ଆପଣ ଜାଣନ୍ତୁ...ମୁଁ ଟେବୁଲ ଠିକ୍ କରେ ।
ଗଦା : କମ୍ପାଉଣ୍ଡରବାବୁ—ଆପଣ ମୋ ଧରମବାପ ।
କମ୍ପାଉଣ୍ଡର : ଡାକ୍ତରବାବୁଙ୍କ ହୁକୁମ...ମୋ ଜନମକଲା ବାପର ସାଧ ନାହିଁ ଏପାଖ ସେପାଖ କରିବାକୁ—ଧରମବାପ କଥା କଏ ପଚାରେ ?
ଗଦା : ହଉ ରଙ୍ଗା, ଆ ବାପ—ଆ ଯିବା ।
ରଙ୍ଗା : ତେମେ ବୁଝୁଚ ବାପା, ଡାକ୍ତରବାବୁ ତାଙ୍କ ନିଜ ମନକୁ ଏକଥା କହୁଚନ୍ତି ?
ଗଦା : ଆଉ ?
ରଙ୍ଗା : ଏ ଅଇଁଠାଚଟା କୁକୁର ଦ'ଟା ତାଙ୍କୁ ଶିଖେଇ ମନେଇ ଏ କାମ କରିଚନ୍ତି ।
ଭକ୍ତ : ଶୁଣୁଚଟି ବାପା...ଏ ରଙ୍ଗା କଣ କହୁଚ !
ରଙ୍ଗା : ଠିକ୍ କହୁଚ...ଯାହା କହୁଚ ଠିକ୍ କହୁଚ...ଡାକ୍ତରବାବୁ ତମ କଥାରେ ଭୁଲିଯାଇଚନ୍ତି ।
ସାଧୁ : ଯଦି ଭୁଲିଯାଇଚନ୍ତି, ତେବେ ସେଇଟା ଆମ ପାରିଲାପଣିଆ...ତୋ ଦେହ କାହିଁକି ସହୁନ ?

ରଙ୍ଗା : ବାପା !
ଗଦା : କଣ ପୁଅ ?
ରଙ୍ଗା : ଆମେ ଯିବାନି ।
ଗଦା : ଯିବାନି ?
ରଙ୍ଗା : ନା, ଯିବାନି...ଏଠୁ ଆମେ ଗଲେ ସିନା ଡାକ୍ତରବାବୁ ଏ ଢ଼'ଙ୍ଗାଙ୍କୁ ଘଷାଘଷା କରିବେ ! ଏ ଘର ଛାଡ଼ି ଆମେ ଯିବାନି ।
ଭକ୍ତ : କଣ ଜବରଦସ୍ତ ରହିବ ?
ଗଦା : ହଁ—ହଁ, ଜବରଦସ୍ତ ରହିବୁ ।
ସାଧୁ : ଶୁଣୁଚନ୍ତି କମ୍ପାଉଣ୍ଡରବାବୁ ସ୍ଯା'କଥା ?
କମ୍ପାଉଣ୍ଡର : ଡାକ୍ତରବାବୁ ହୁକୁମ ଦେଇଗଲେ । ମୁଁ ହୁକୁମ ଶୁଣାଇଦେଲି । ହୁକୁମ କେମିତି ତାମିଲ୍ ହବ ସେ କଥା ତମେ ଜାଣ—ସିଏ ଜାଣନ୍ତି...ମୁଁ ଚୁପ୍ ।
ଭକ୍ତ : ହେଲେ ଆମେ ଚୁପ୍ ରହିପାରିବୁ ନାହିଁ ।
ରଙ୍ଗା : ଚୁପ୍ ରହିବୁ ନାହିଁ, କଣ କରିବୁ ? କଣଟା କରିବୁ ଶୁଣେ !
ଭକ୍ତ : ଭଲରେ ଭଲରେ କହୁଚି ରଙ୍ଗା ଏଠୁ ଗୁଳିଯା ।
ରଙ୍ଗା : ନ ଗଲେ ?
ଭକ୍ତ : ନଗଲେ...
ରଙ୍ଗା : ହିଁ, ନ ଗଲେ ?
ଭକ୍ତ : ନ ଗଲେ...
ରଙ୍ଗା : ଆରେ କହିଲୁ ତ...ନଗଲେ ?
ଭକ୍ତ : ବାପା, କୁଆଡ଼େ ଗଲ ବାପା ?
ସାଧୁ : ଅଛୁ ପୁଅ... ଠିକ୍ ଜାଗାରେ ଅଛୁ ।
ରଙ୍ଗା : ତମେ ଠିକ୍ ଜାଗାରେ ଅଛ ତ ବାପା ?
ଗଦା : ହଁ ପୁଅ, ଅଛୁ ।

(ଦେଖାଗଲା ପରସ୍ପରର ସମ୍ମୁଖୀନ ହେବାପାଇଁ ଭକ୍ତ ପଛରେ ସାଧୁ ଓ ରଙ୍ଗା ପଛରେ ଗଦା ପ୍ରସ୍ତୁତ ହେଇ ରହିଲେଣି । )

କମ୍ପାଉଣ୍ଡର : (ଆଗେଇ ଯାଇ) ଆରେ ଆରେ...ଏ କଣ ! ଆପଣମାନେ ସମସ୍ତେ କଣ ହାତ ଠୋକାଠେକ ହେଇ ତିଆରି ହେଇଗଲେଣି । ସତକୁ ସତ କଣ...
ଭକ୍ତ : ଆପଣ ଦୂରିଯା'ନ୍ତୁ ଆଜ୍ଞା—
ରଙ୍ଗା : ହଁ ଆଜ୍ଞା, ଆପଣ ଘୁଞ୍ଚିଯା'ନ୍ତୁ—ମୁଁ ବୁଝୁଚି ତା' କଥା ।

ଭକ୍ତ : ଜାଣିଚୁ ରଙ୍ଗା, ତୋ' ଦାନ୍ତପାଟି ଉଡ଼େଇଦେବ ।
ରଙ୍ଗା : ତୋ ନାକ ଦଣ୍ଡା ଚୂନା କରିଦେବ ।
ସାଧୁ : ହେ ବଗ୍ରିଆ, ପୁଅ ପଛରେ ଲୁଚୁଚୁ କଣ ? ହିମ୍ମତ୍ ଅଛି ତ ସାମନାକୁ ବାହାରିଆ । ଆଜି ତୋର ଦିନେ କି ମୋର ଦିନେ ।
ଗଦା : ତୁ ମତେ ଡରଉଚୁ ସାଧୁଆ ! ଜାଣିଥା, ଛ' ମାସ ଜେଲ୍ ଯିବ ପଛେ ତତେ ଆଜି ଛାଡ଼ିବିନାହିଁ ।
ସାଧୁ : ମୁଁ ଫାଶୀଖୁଣ୍ଟରେ ଝୁଲିବ ପଛେ—ତତେ ଆଜି ଧନ ପାଞ୍ଜିରୁ ମୂଳପୋଛ କରିବ ।
ଗଦା : ହଉ, ଆ ବାହାରିପଡ଼୍ । ଆଜି ତ ଏଇଠି ଦେଖାଦେଖି ହେଇଯିବା···ମୁହଁ ପୋଛୁଚୁ କଣ ବା ? ବାହାରିପଡ଼୍ ।
ସାଧୁ : ଆରେ ମୁହଁ ପୋଛୁ ହାତ ଚକ୍‌କଣ କରୁଚ, ତୋ ପିଠିରୁ ଗୁଳ ଉତାରି ତତେ ମାଟିରେ ମିଶାଇଦେବ ।
ରଙ୍ଗା : ବାପା, ଆସିବଟି ତମେ ଏ ଘର ଭିତରକୁ, ଆସ ।
ଭକ୍ତ : ଏମିତ ଗଲବାଲ !! ଯିବାବାଲ ଆମେ । ଡାକ୍ତରବାବୁ ଆମକୁ ପରୀକ୍ଷା କରିବେ । ଆସିବଟି ବାପା, ଆସ !

ରଦା } : ଆମେ ଯିବୁ ।
ରଙ୍ଗା }

ସାଧୁ } : ଆମେ ଯିବୁ ।
ଭକ୍ତ }

ସମସ୍ତେ : ଆମେ ଯିବୁ—ଆମେ ଯିବୁ—ଆମେ ଯିବୁ ।

[ ଠେଲପେଲ ହେଇ ଗୃହଜଣଯାକ ଘରଭିତରକୁ ପଶିଗଲେ । ଘରଭିତରେ କମ୍ପମତେ ଆହୁରି ଜୋର୍‌ରେ ପାଟିତୁଣ୍ଡ ମାର୍‌ଧର ଚାଲିଲା । ]

"ବାହାର ଏଘରୁ···"
"ତୁ ବାହାର···"
"ତୁ ବାହାର···"
"ଦେ' ତା' ବେକଟଣ୍ଟାକୁ ଚିପାଏ ଦେ'···"
"ହୁଁ···"
"ମରଗଲି ଲେ ବୋଉ !"
"ଦାନ୍ତପାଟି—ହଁ—ଦାନ୍ତପାଟି···"
"ଇରେ ବାପ୍‌ରେ···"

"ହୁଁ...ହୁଁ...ଛାଡ଼ିବ ନାହିଁ..."
"ହୁଁ..."
"ହୁଁ..."

କମ୍ପାଉଣ୍ଡର : ସାର୍—ସାର୍—ସାର୍ କାହିଁ ଗଲେ ? ସାର୍, ଘର ଭିତରେ ଯୁଦ୍ଧ ଆରମ୍ଭ ହୋଇଗଲାଣି । କଣ କରିବି ? (ଭିତରୁ ଉପରୋକ୍ତ କ୍ରମରେ ଶବ୍ଦ ଶୁଣାଯାଉଥାଏ) କଣ କରିବି ?...ହଁ ...କବାଟ...କବାଟ ବନ୍ଦ । (କବାଟ ବନ୍ଦ କରିଦେଲେ) କବାଟ ଉପରେ ତାଲା ବନ୍ଦ । ହୁଁ କରୁଥା ଘର ଭିତରେ ଯୁଦ୍ଧ ।

(କବାଟ ବନ୍ଦ ପରେ ମଧ୍ୟ ଘର ଭିତରେ ମାରଧର ଚାଲିଥାଏ; କିନ୍ତୁ ବାହାରକୁ ଶବ୍ଦ କମ୍ ଶୁଣାଯାଉଥାଏ । ଏହିଠାବେଳେ ଡାକ୍ତର ଆସିଲେ ।)

ଡାକ୍ତର : କଣ...କଣ ହୋଇଛି ? ଏତେ ଜୋର୍‌ରେ ପାଟି ହଉଥିଲା କାହିଁକି ? କିଏ ପାଟି କରୁଥିଲା...ଆପଣ ?

କମ୍ପାଉଣ୍ଡର : ମୁଁ କି ପାଟି କରିବି ସାର୍ ? ସେ କ୍ଷମତା ମୋର କାହିଁ ? ଏ ସବୁ ଘଟଣା ଦେଖି ମୋ ପାଟି ବରଂ ଆପେ ଆପେ ବନ୍ଦହୋଇଯାଉଛି ।

ଡାକ୍ତର : ସେ ଚାରିଜଣ କୁଆଡ଼େ ଗଲେ ?

କମ୍ପାଉଣ୍ଡର : ଘର ଭିତରେ...

ଡାକ୍ତର : କାହିଁକି ? ମୁଁ ପରା ଆପଣଙ୍କୁ କହିଗଲି, ଓଝା ବାପ-ପୁଅଙ୍କୁ ସେ ଘରକୁ ନିଅନ୍ତୁ, ମୁଁ ଆସି ପରୀକ୍ଷା କରିବି !

କମ୍ପାଉଣ୍ଡର : ସେଇ କଥା ସାର୍ ! ଆପଣ ପରୀକ୍ଷା କରିବେ ବୋଲି...(ଘରଭିତରୁ ଗୋଳମାଳ ଶୁଭୁଥାଏ)

ଡାକ୍ତର : (କାନପାରି) ଏ କଣ ? ଘରଭିତରୁ କଣ ଗୋଳମାଳ ଶୁଭୁଛି ?

କମ୍ପାଉଣ୍ଡର : ଚାଲିଚି...

ଡାକ୍ତର : କଣ ଚାଲିଚି ?

କମ୍ପାଉଣ୍ଡର : ପରୀକ୍ଷା ପାଇଁ ପ୍ରିପାରେସନ୍...ପ୍ରସ୍ତୁତ ।

ଡାକ୍ତର : କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ଆଜ୍ଞା, ଓଝା ବଣିଆ ଚାରିଜଣ ଏକାଠି ହେଲେ ଯାହା ଚାଲିବାର କଥା—ସେଇଆ ଚାଲିଚି ।

ଡାକ୍ତର : ଏ କବାଟଟା ବନ୍ଦ୍ ହେଇଚି କାହିଁକି ?

କମ୍ପାଉଣ୍ଡର : ମୁଁ ବନ୍ଦକରିଦେଇଚି ।

ଡାକ୍ତର : କାହିଁକି ?

କମ୍ପାଉଣ୍ଡର : ଘରଭିତରେ ସେମାନେ ଯେମିତି ଆରମ୍ଭ କରିଦେଲେ, ମୁଁ ସାଙ୍ଗେ ସାଙ୍ଗେ କବାଟ ବନ୍ଦ୍‌କରି ତାଲା ଠୁଙ୍କି ଦେଲି ।

ଡାକ୍ତର : କଣ ଯେ ମୁଁ ଆପଣଙ୍କୁ କହିବି ? ଖୋଲନ୍ତୁ—ତାଲା ଖୋଲନ୍ତୁ ।

କମ୍ପାଉଣ୍ଡର : ମୋ କଥା ଶୁଣନ୍ତୁ ସାର୍ !

ଡାକ୍ତର : ତାଲା ଖୋଲନ୍ତୁ ।

କମ୍ପାଉଣ୍ଡର : ମୋ କଥା ମାନନ୍ତୁ ସାର୍ ! କବାଟ ଖୋଲିଦେଲେ ସେମାନେ ଯାହାର ଭୀମ ଦୁଃଶାସନ ଯୁଦ୍ଧ ପରି ଘର ସାରା ଧାଁଧପଡ଼ କରି ଏସବୁ ଔଷଧପତ୍ର, ଆଲମିରା, ଆପଣଙ୍କ ଏ ଚେୟାର ଟେବୁଲ୍ କିଛୁ ବାକୀ ରଖିବେ ନାହିଁ । ସବୁ ମାଟିରେ ମିଶାଇଦେବେ ।

ଡାକ୍ତର : ଆଗେ ଆପଣଙ୍କୁ ମାଟିରେ ମିଶାଇଦେବା ଉଚିତ । ଘର ଭିତରେ ଗୃହ-ଗୃହଣୀ ଲୋକଙ୍କର ମାରପିଟ ଧୂମ୍‌ଧାମ୍ ଚାଲିଛି—ଆଉ ଆପଣ ବାହାରୁ ତାଲା ଠୁଙ୍କି ଦେଇଚନ୍ତି ! ···ଗୃହିଁ ରହିଚନ୍ତି କଣ ? ଖୋଲନ୍ତୁ ।

(ଭିତରୁ ଗୋଳମାଳ ଏକାବେଳକେ ବନ୍ଦ ହୋଇଗଲା)

କମ୍ପାଉଣ୍ଡର : ସାର୍ ! ସାର୍ ! ଭିତରୁ ଆଉ କିଛି ଶୁଭୁନି ।

ଡାକ୍ତର : ହେ ଭଗବାନ···କାହାର ଯେ କଣ ହୋଇଥିବ ?···ଖୋଲନ୍ତୁ ଚଞ୍ଚଳ ।

କମ୍ପାଉଣ୍ଡର : ଖୋଲିଲି ସାର୍—ଖୋଲିଲି ।

(କମ୍ପାଉଣ୍ଡର ତାଲା ଖୋଲିଲେ । ଡାକ୍ତର ଦୁଆରମୁହଁରେ ଠିଆ-ହେଲେ ।)

ଡାକ୍ତର : ତା'ହେଲେ ବାବୁମାନେ···ଖବର କଣ ?

(ଯନ୍ତ୍ରଣାକ୍ଲିଷ୍ଟ ମୁହଁରେ ଦାନ୍ତପାଟିକୁ ଘୃପିଧରି ଗଦାଧର ଏ ଘରକୁ ବାହାରିଆସି ବସିପଡ଼ିଲେ ।)

ଗଦା : ଖବର ଆଉ କିଛି ନାହିଁ ଡାକ୍ତରବାବୁ ! ଆମ କାମ ଶେଷ ହୋଇଯାଇଚି । ଏଥର ଆପଣଙ୍କ କାମ ଆରମ୍ଭ କରିଦିଅନ୍ତୁ ।

ଡାକ୍ତର : ମୋ କାମ ?

ଗଦା : ହଁ ଆଜ୍ଞା, ଆଉ ଡେରି କରନ୍ତୁ ନାହିଁ । ବିନ୍ଧା ଆରମ୍ଭ ହୋଇଗଲାଣି । ···ଓହୋ ପୁଅ କୁଆଡ଼େ ଗଲା ?

ସାଧୁ : ତମ ପଛେ ପଛେ···

(ଡାଳୁକୁ ଘୃପିଧରି ସାଧୁ ଆସି ଗଦାଧରଙ୍କ ପାଖରେ ବସିପଡ଼ିଲେ । ମୁହଁ ଆଖିରେ ଯନ୍ତ୍ରଣା । ପରେ ପରେ ତଳକୁ

ମୁହଁ କରି ରଙ୍ଗା ଓ ଭକ୍ତ ଆସିଲେ । ଦୁହିଁଙ୍କ ଡାହାଣ ହାତପାପୁଲି ମୁଠା ହୋଇଚି । କେଶବାଣ ସ୍ୱପର୍ଶିତ ।)

ଡାକ୍ତର : ହଁ, ଶ୍ରୀଯୁକ୍ତ ବସ୍ତିଆ, ଆପଣଙ୍କର କଣ ହୋଇଚି ?

ଗଦା : ଦାନ୍ତ ।

ଡାକ୍ତର : ଭାଙ୍ଗିଚି ?

ଗଦା : ଭାଙ୍ଗିଚି ତ, ହେଲେ ପୂରା ଭାଙ୍ଗିଚି କି ଅଧା ଭାଙ୍ଗିଚି ଆପଣ ଦୟାକରି ଟିକେ ଦେଖନ୍ତୁ ।

ଡାକ୍ତର : ଆଉ ଓଝା ମହାଶୟ, ଆପଣଙ୍କର ?

ସାଧୁ : ଠିକ୍ ଜାଣୁ ନାହିଁ ଉପରୁ କେଶ ପୁଳାଏ ଉପୁଡ଼ିଯାଇଚି । ତେବେ କେତେ ଉପୁଡ଼ିଛି—ଚମ କେତେ ଛୁଡ଼ିଚି, ଆପଣ ଦେଖନ୍ତୁ ।

ଡାକ୍ତର : ଆଉ ବାବୁ ରଙ୍ଗାଧର ଆଉ ଭକ୍ତଚରଣ ? ତମ ଦୁହିଁଙ୍କର···

ଗଦା : ସେମାନେ ତ ଆଜ୍ଞା କର୍ତ୍ତା···ସେମାନଙ୍କର କାହିଁକି କଣ ହେବ ?

ଡାକ୍ତର : ତା ଅର୍ଥ···ରଙ୍ଗାଧର ବସ୍ତିଆ ସାଧୁଚରଣଙ୍କ କେଶ ଉପାଡ଼ିଛନ୍ତି ଆଉ ଭକ୍ତଚରଣ ଓଝା ଗଦାଧର ବସ୍ତିଆଙ୍କ ଦାନ୍ତ ଭାଙ୍ଗିଚନ୍ତି ?

(ଡାକ୍ତରଙ୍କ ଏ ପ୍ରଶ୍ନରେ କାହାରି ତୁଣ୍ଡରେ କଥା ନାହିଁ । କେବଳ ରଙ୍ଗା ଓ ଭକ୍ତ ମଧ୍ୟରେ ଟିକଏ ଦୃଷ୍ଟି ବିନିମୟ ହେଲା ।)

କଣ ହେଲା···ସମସ୍ତେ କଣ ଚୁପ୍ ?

ଗଦା : ଏଇ କଥାଟାରେ ଆମେ ଟିକଏ ସନ୍ଦେହରେ ପଡ଼ିଯାଇଚୁ ?

ଡାକ୍ତର : ସନ୍ଦେହ !

ସାଧୁ : କଥାଟା ବୋଧହୁଏ ଓଲଟପାଲଟ ହୋଇଯାଇଚି ।

ଡାକ୍ତର : ମାନେ ଆପଣଙ୍କ ପୁଅ ଆପଣଙ୍କ କେଶ ଉପାଡ଼ିଚନ୍ତି, ଆଉ ତାଙ୍କ ପୁଅ ତାଙ୍କ ତାଙ୍କ ଦାନ୍ତ ଭାଙ୍ଗିଚନ୍ତି ?

ରଙ୍ଗା }
ଭକ୍ତ } : ଅସମ୍ଭବ ନୁହେଁ ।

ଡାକ୍ତର : ଏ କଥା ତମେ ଦୁହେଁ କହୁଚ ?

ରଙ୍ଗା : କଥା କଣ କି ସାର୍···ଆମେ ସମସ୍ତେ ଯେମିତି ଠେଲାଠେଲି ହୋଇ ସେ ଘର ଭିତରକୁ ପଶିଯାଇଚୁ, ସାଙ୍ଗେ ସାଙ୍ଗେ ଗୋଳମାଳ ମାରପିଟ୍ ଆରମ୍ଭ ହୋଇଗଲା ।

ଭକ୍ତ : ସେଇ ସାଙ୍ଗେ ସାଙ୍ଗେ କମ୍ପାଉଣ୍ଡରବାବୁ ଘର କବାଟ ବନ୍ଦ କରିଦେଲେ । ଘର ଅନ୍ଧାର ହୋଇଗଲା ।

ରଙ୍ଗା : ମାରପିଟ୍ ଚାଲିଥାଏ । ମୁଁ ମାରୁଛି, ସେ ମାରୁଛି—ସେ ମାରୁଛି—ମୁଁ ମାରୁଛି । ହେଲେ ଅନ୍ଧାରରେ କାହା ମାଡ଼ କୁଆଡ଼େ ଯାଇ କାହା ଦେହରେ ବାଜିଲା କିଛି ବୁଝିହେଲାନାହିଁ ।

ଡାକ୍ତର : ବର୍ତ୍ତମାନ ତା'ହେଲେ ବୁଝିପାରୁଛ ଯେ ମାଡ଼ଟା ଓଲଟପାଲଟ ହୋଇ-ଯାଇଛି ।

ରଙ୍ଗା : ମୋ ହାତରେ ଏ ଭଙ୍ଗା ଦାନ୍ତ—ବାପାଙ୍କ ଦାନ୍ତ ପରି ଜଣାପଡ଼ୁଛି । ବାପା ପାନ ଖାଆନ୍ତି ନାହିଁ···ସଫା ଦାନ୍ତ ।

ଭକ୍ତ : ଆଉ ମୋ ହାତରେ ଏ ଉପୁଡ଼ା କେଶ—ଅଧା କଞ୍ଚା ଅଧା ପାଚିଲା ।

ଡାକ୍ତର : ତମ ବାପାଙ୍କ କେଶ ସହିତ ମିଶିଯାଉନି ?

ଭକ୍ତ : ଆଜ୍ଞା !                    (କମ୍ପାଉଣ୍ଡର ଭିତରକୁ ଗଲେ)

ଡାକ୍ତର : (ଗଦା ଓ ସାଧୁଙ୍କୁ) ଆଉ ଆପଣ ଦୁହେଁ···

ଗଦା : ଆମେ ଦୁହେଁ ଖାଲି ପଞ୍ଝା ମିଳେଇଥିଲୁ । ହାତ ଆମର ପଞ୍ଝାରେ ଅଟକି ପଡ଼ିଗଲା ।

ସାଧୁ : ସେଥିପାଇଁ ମୋ କେଶ ଉପୁଡ଼ିଗଲା···ମୁଁ କିଛି କରିପାରିଲି ନାହିଁ ।

ଗଦା : ମୋ ଦାନ୍ତ ଭାଙ୍ଗିଗଲା···ମୁଁ ହାତ ଉଠେଇପାରିଲିନାହିଁ ।

ଡାକ୍ତର : ଭଲ···ଗାଁରେ ତେବେ ମାରପିଟ୍ କିଛି ହେଇନଥିଲା !

ସାଧୁ : ନାଇଁ ଆଜ୍ଞା···ଖାଲି ଯାହା ପାଚିରୁଣ୍ଡି ହେଇଥିଲା—ଏଠି ସବୁ ଫଏସଲା ହୋଇଗଲା ।

ଡାକ୍ତର : ହୁଁ ···କମ୍ପାଉଣ୍ଡରବାବୁ ! (କମ୍ପାଉଣ୍ଡର ଆସିଲେ) ।

କମ୍ପାଉଣ୍ଡର : ଆମ କାମ ଆରମ୍ଭ କରିବା ସାର୍ !

ଡାକ୍ତର : ହଁ, କାଗଜପତ୍ର ଆଣନ୍ତୁ ।

ଗଦା : କାଗଜପତ୍ର !

ଡାକ୍ତର : ମୁଁ ରିପୋର୍ଟ ଲେଖିବି । ଆପଣମାନେ ସାର୍ଟିଫିକେଟ ନେବେ—ଥାନାରେ ଏତଲା ଦେବେ । ଏବେତ ସାର୍ଟିଫିକେଟ୍ ଦବାରେ କିଛି ଅସୁବିଧା ନାହିଁ । ଆଖି ଆଗରେ ଦେଖୁଛି କେଶ ଉପୁଡ଼ିଛି—ଦାନ୍ତ ଭାଙ୍ଗିଛି ।

ଗଦା : ହେଲେ ଆଜ୍ଞା···ଏତଲା···କିଏ କାହା ନାଁରେ ଦେବ ?···ଓଃହୋଏ, ତମେ କଣ ତମ ପୁଅ ନାଁରେ ଏତଲା ଦେବ ?

ସାଧୁ : ଆଉ ତମେ ? ତମେ କାହା ନାଁରେ ଏତଲା ଦେବ ?

ଗଦା : ଶୁଣିଲେ ତ ଆଜ୍ଞା ? ରିପୋର୍ଟ ଥାଉ । ଆଗେ ଔଷଧପତ୍ର ଦେଇ ଆମକୁ ଭଲ କରନ୍ତୁ ।

ଡାକ୍ତର : ଔଷଧ ତ ମୁଁ ଦେବି—ହେଲେ ଥାନାକୁ ଯାଇ ମୁଁ ଆପଣମାନଙ୍କ ନାଁରେ ଏତଲା ଦେବି । ଏଠି ଡାକ୍ତରଖାନାକୁ ଆସି ଆପଣମାନେ କ କାଣ୍ଡ କରିଚନ୍ତି···

ଗଦା : ଆପଣ ଆଜ୍ଞା ଆଉ ଥାନାକୁ କାହିଁକି ଯିବେ—ଏତଲା ଦବାର କଥା ତ ଆମେ ଏଇଠି ଆପଣଙ୍କ ପାଖରେ ଏତଲା ଦଉଚୁ ।

ସାଧୁ : ହଁ ଆଜ୍ଞା, ଆପଣ ଡାକ୍ତର—ଆପଣ ଥାନାବାବୁ—ଆପଣ ଜଜ୍—ଆପଣ ଯାହା ରାୟ ଦେବେ ଆମର ସଇ ।

କମ୍ପାଉଣ୍ଡର : ସାର୍ !

ଡାକ୍ତର : କଣ କହୁଚନ୍ତି ?

କମ୍ପାଉଣ୍ଡର : ମୁଁ ନୁହେଁ ସାର୍—ଏମାନେ ଯାହା କହୁଚନ୍ତି !

ଡାକ୍ତର : ଏମାନେ ବୋଇଲେ···ମୋ ପୁଅ ନା ଆପଣଙ୍କ ପୁଅ ?

(ଏ କଥାରେ ସମସ୍ତେ ହସିଉଠିଲେ । କିନ୍ତୁ ହସିଲାବେଳେ ଗଦା ଓ ସାଧୁଙ୍କ ମୁହଁ ବିକୃତ ହୋଇଯାଉଥାଏ ।)

ସାଧୁ : ଦେଖୁଚନ୍ତି ତ ଆଜ୍ଞା ! ବନ୍ଧା ଛୁଟିକା ଗୁଲିଚ ବୋଲି···

ଗଦା : ଏତେ ବଢ଼ ହସ କଥାଟାରେ ଆମେ ଦୁହେଁ ମନଖୋଲା ହସିପାରୁନୁ ।

ଡାକ୍ତର : (ହସି) ହଉ ଚାଲନ୍ତୁ—ଦୁହେଁ ଯାଇ ସେ ଘରେ ଟେବୁଲ ଉପରେ ଶୁଅନ୍ତୁ । ···କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : କରିଚ ସାର୍—ଛୁରି, କଇଞ୍ଚି, ଫରସେପ୍, ତୁଳା, ବ୍ୟାଣ୍ଡେଜ୍ ସବୁ ରେଡ଼ି କରି ରଖିଚ ।

ଡାକ୍ତର : ଆସନ୍ତୁ ! ( ସମସ୍ତେ ଭିତର ଘରକୁ ଗଲେ )

□□

## ଚରିତ୍ର

ଲକ୍ଷ୍ମୀ—ଅବିବାହିତା ଗ୍ରାମ୍ୟ ବାଳିକା

ବାସ—ଅବିବାହିତା ଗ୍ରାମ୍ୟ ବାଳିକା

ସର—ବିବାହିତା ଗ୍ରାମ୍ୟ ବଧୂ । ଲକ୍ଷ୍ମୀର ବଡ଼ଭଉଣୀ—

ଉର—ବାସର ଖୁଡ଼ୀ—ଚାଳିଶବର୍ଷବୟସ୍କା

ମଣି—ଜଣେ ମଧ୍ୟବୟସ୍କା ବିଧବା

[ଏକ ଗ୍ରାମ । ବିଂଶ ଶତାବ୍ଦୀର ପ୍ରାୟ ଷଷ୍ଠ ଦଶକର କଥା । ଗ୍ରାମଟି ଏ ପର୍ଯ୍ୟନ୍ତ ସହରୀ ସଭ୍ୟତା ବା ଆଧୁନିକ ସଭ୍ୟତାଠାରୁ ଯଥାସମ୍ଭବ ଦୂରରେ ରହିଛି । ଏହି ଗ୍ରାମର ଗୋଟିଏ ଅତି ସାଧାରଣ ପରିବାରର ଘୁଲଘରର ଭିତର ଅଗଣାର ଦୃଶ୍ୟ···ଅଗଣାର ଗୋଟିଏ ପାଖକୁ ଲଗି ଗାଈ-ଗୁହାଳ । ମଞ୍ଚରେ କିନ୍ତୁ କେବଳ ଗୁହାଳର ଦ୍ୱାରବନ୍ଧ ଦୃଶ୍ୟମାନ ।

ସମୟ—ସକାଳବେଳା ଗାଈଦୁହାଁର ବେଳ । ଗୁହାଳ ସଂଲଗ୍ନ ପିଣ୍ଡା ଉପରେ ଠିଆହୋଇଚନ୍ତି ଗୃହିଣୀ ଉର । ବୟସ ପ୍ରାୟ ଚାଳିଶ । ସେ ଗୁହାଳକୁ ଯାଇ ଗାଈ ଦୁହିଁବା ପାଇଁ ନିଜକୁ ପ୍ରସ୍ତୁତ କରୁ କରୁ ତାଙ୍କ ଝିଆରୀ ବାସକୁ ଡାକିଲେ । ବାସ ପ୍ରାୟ ସତର ଅଠର ବର୍ଷ ବୟସର ଅବିବାହିତା ଝିଅ । ]

**ଉର :** ବାସ···ଲେ ବାସ !

**ବାସ :** (ଭିତରୁ) କଣ ଖୁଡ଼ୀ ?

**ଉର :** ଠେକଟା ଆଣି ଆ ।

**ବାସ :** (ଭିତରୁ) କଣ ଗାଈ ଦୁହିଁବୁ କି ଖଡ଼ୀ ?

**ଉର :** ହଁ, ଶିକା ଉପରେ ଠେକଟା ଅଛି, ଆଣ । (ଠେକ ନେଇ ବାସ ଆସିଲା) ଠେକ ପୋଡ଼ା ହୋଇଚଟି ?

**ବାସ :** ହଁ, କାଲି ଘଡରୁ ପରି ଠେକ ପୋଡ଼ିକ ରଖିଚି ।

**ଉର :** ହଉ, ଆ ।

**ବାସ :** ହେଇତ ଖୁଡ଼ୀ···

**ଉର :** କଣ ?

**ବାସ :** (ଟିକିଏ ନମ୍ର ସ୍ୱରରେ) ଏ ଠେକରେ ଆଉ ଜେଗା ଧରିବ ନାହିଁ । କାଲି ଘଡରେ ଦେଖିଲନି, ଠେକ କେମିତି ଉଛୁଳିପଡ଼ିଲା ।

**ଉର :** ଡାଆଣୀଟାଏ କଲେ, ଆଖିଦଉଚୁ !

**ବାସ :** ମଲା ଆପଣାଘର କଥା ·ତ···ଆଖିଦେଲି କାହା ଉପରେ ? ତୁ ତ ନିଜେ ଦୁହୁଁଥିଲୁ, ଦେଖିଲୁ ନାଇଁ—କ୍ଷୀର ଉଛୁଳି ଭୂଇଁରେ ଢାଳିହୋଇଗଲା ! ଆଉ ଗଡୁଟାଏ ଆଣିବି ଖୁଡ଼ୀ ?

ଉର : ହଉ ଆଣ ।···ଏଇ ଧଉଳ ଗାଈ କାନଗୋଇ ଘରେ ଥିଲା ଯେ, ଠେକ ତଳରେ ବି କ୍ଷୀର ପଡ଼ୁ ନଥିଲା—ଏଇନେ ଦେଖ୍ । ଇଏ କାନଗୋଇ ଘର ଗାଈପରା ! କ୍ଷୀର ଉଚ୍ଛୁଳିବ ନାହିଁ ! [ବାସ ଗଡ଼ୁଟାଏ ଆଣି ଆସିଲା]

ବାସ : ମୁଁ ମୋଟେ ଏକଥା ମାନିବି ନାହିଁ । ଧଉଳୀ କିଣ କାନଗୋଇ ଘରେ ଖାଉନଥିଲା ? ଇଏ ତୋ ହାତଗୁଣ । ତୋ ହାତଗୁଣରୁ ଧଉଳ ପା’କରୁ ପାଞ୍ଚ-ପା’ରେ ଆସି ହେଲଣି ।

ଉର : (ଟିକିଏ ନମ୍ରସ୍ୱରରେ) ହେଇତ ବାସ—ବାଛୁରିଟାକୁ ଫିଟେଇ ସାଙ୍ଗେ ସାଙ୍ଗେ ଝଟେଇ ପକେଇବୁ । ଯେମିତ ହାଉଁଆ ବାଛୁରିଟା ହେଇଟନା, ଚରରେ ମୁହଁ ଦଉ ଦଉ ପାଏ କ୍ଷୀର ଶୋଷିନଉଚି ।

(ବାସ ଗୁହାଳଭିତରକୁ ଯାଉ ଯାଉ ଚମକି ଅଟକିଗଲା ।)

ବାସ : ଇଲେ ଝୁଡ଼ୀ : ଗୁହାଳ କବାଟ କିଏ ମେଲା ? ବାଛୁରି କିଏ ଆଗରୁ ଫିଟିଯାଇ ମନ ଇଚ୍ଛା ପିଇଲାଗିଚି ?

ଉର : ଇଲେ କେମିତ ଫିଟିଲା ! ଏଁ ? ଇଏ କିଏ ? ନକ୍ଷୀ ! ହଇଲେ ନକ୍ଷୀ, ତୁ ଏଠି କଣ କରୁଚୁ ?

(ବାସର ସମବୟସ୍କା ଓ ପ୍ରାୟ ସମ-ଅବସ୍ଥାସମ୍ପନ୍ନ ଲକ୍ଷ୍ମୀ ଗୁହାଳ ଭିତରୁ ବାହାରି ଆସିଲା ।)

ଲକ୍ଷ୍ମୀ : ଦେଖିଲ ନାନୀ, କେଡ଼େ ଖୁସିରେ ଲଞ୍ଜ ହଲେଇ ଗୋଡ଼ କଚ୍ଚୁଡ଼ି ପିଉଚି ! ପଶୁଜାତି ହେଲେ କଣ ହେଲା—ମା’ ପୁଅ ପରା !

ଉର : ପୋଡ଼ଯାଉ ତା’ ମାଆ ପୁଅ ! ମୋ ଠେକ ପଛେ ଏଣେ ଖାଲି ପଡ଼ିବ— ସ୍ତା’କୁ ଖୁସି ନାଗିଚି । ଆଲୋ ବାସ, ଚୁହିଁଚୁ କଣ ? ବାଛୁରି ବାନ୍ଧ୍ ।

ଲକ୍ଷ୍ମୀ : (ଈଷତ୍ କଡ଼ାଗଳାରେ) ଏ ବାସ, ଏଠିକି ଆ-ନାହିଁ କହୁଚି ।

ଉର : କଣ କହଲୁ ? ବାଛୁରି ବାନ୍ଧା ହବ ନାହିଁ ? ଆଲୋ, ପିଇଗଲା ବା ପିଇଗଲା ! ମୋର ବେଳାକର କ୍ଷୀର ପିଇଗଲା ।

ଲକ୍ଷ୍ମୀ : କୋଉଠି ତନି ବେଳାର କ୍ଷୀର ପିଇଗଲା ? ଏଇନେ ତ ଗୋଡ଼କୁ ଗୋଡ଼ ବାଛୁରି ଫିଟେଇଲି—

ଉର : ତୁ ତାହାହେଲେ ବାଛୁରି ଫିଟେଇଚୁ ?

ଲକ୍ଷ୍ମୀ : ହଁ, କଅଁଳା ବାଛୁରି—ତା’ ମା’ଠୁ କ୍ଷୀର ଖାଇବ ନାହିଁ !

ଉର : ଦବୁଟିଲେ ବାସ ମୋ ହାତକୁ ପଘାଟା ।

ଲକ୍ଷ୍ମୀ : ହୁସିଆର ନାନୀ, ଧଉଳୀକ ଚହ୍ନୁଚଟି ! ତା’ ବାଛୁରି ଦେହରେ ହାତ ଦେଲେ ଏମିତ ହୁରୁଡ଼େଇ ଦେବ ଯେ—ନାତ ଉପରେ ନାତ କସିଦେଇଯିବ ।

ଉର : ନକ୍ଷୀ, ଭଲଦଶା ଅଛୁ ତ ମୋ ଗୁହାକୁ ବାହାରଯା କହୁଚି ।

ଲକ୍ଷ୍ମୀ : ହଅ ତ କେମିତ ବାହାରକରଦେବ—ମୁଁ ଦେଖେଁ ।

ବାପ : ସେ ଏଇ ଅଷ୍କାରେ ନୁଗା ଭଡ଼ିଲାଣି ଖୁଡ଼ୀ, ତୁ ଗୁଲଆ ।

ଉର : ମୁଁ ତୋର କ ଦୋଷ କରଥିଲ ଲୋ ନକ୍ଷୀ ! କାଇଁକ ମୋ ଦାନାରେ ତୁ ଧୂଳ ଦଉଚୁ ?

ଲକ୍ଷ୍ମୀ : ତମେ କେମିତ ମାସକର କଅଁଳା ବାଛୁରୀଟାର ଦାନାରେ ଧୂଳ ଦଉଚ ?

ଉର : ଆଲେ ପିଇଗଲା ବା—ବାନ୍ଧପକା ।

ଲକ୍ଷ୍ମୀ : ପିଇବ ବୋଲ ପଘା ଫିଟେଇ ଦେଇଚ—ବାନ୍ଧବ ପୁଣି କାହିଁକ ?

ଉର : ଏ ବେଳା ତାହେଲେ ମୁଁ ଗାଈ ଦୁହିଁବ ନାଇଁ ?

ଲକ୍ଷ୍ମୀ : ଧଉଳୀ ବେଳାକେ କେତେ କ୍ଷୀର ଦଉଚ ?

ଉର : ତୋ ମୁଣ୍ଡ-ଗଣ୍ଡିଟା ଦଉଚି । ସବୁ ତ ପିଆଇଦେଲୁଣି ।

ଲକ୍ଷ୍ମୀ : ଏଇନେ କହୁଥିଲ ନା—ବେଳାକେ ପାଞ୍ଚପା' । ବୁଝିଲ ନାନୀ, ମା' କ୍ଷୀରରେ ଆଗ ଛୁଆର ଅଧିକାର । ଧଉଳୀପୁଅ ବଉଳା ତା' ଭାଗଟା ଆଗେ ପିଇସାରୁ, ତେଣିକ ତମ ଭାଗ ତମେ ଦୁହିଁବ ।

ଉର : ମନ ହଉଚି, ଏ ଠେଙ୍ଗକ ଏଇଠି କଗୃଡ଼ ଭାଙ୍ଗିଦିଅନ୍ତି ।

ଲକ୍ଷ୍ମୀ : ସେଇଟା ତ ମାଟି ଠେକଟାଏ । ସେ ପିତଳ ଗଡ଼ୁଟାକୁ ଏ ପଥରରେ ପିଟି ଛତୁ କରଦେଲେ ବ କଛ ଲାଭ ହବ ନାହିଁ । ବଉଳା ପେଟ-ପୁରା ପିଇ ନ ସାରବାଯାଏ, ମୁଁ ଛାଡ଼ିବ ନାଇଁ ।

ଉର : ତୁ ମୋ ଘୁହାଲେ ପଶି ବାଛୁରୀ ଫିଟେଇବାକୁ କଏସେ ?

ଲକ୍ଷ୍ମୀ : ଶୁଣୁଚୁ ଲୋ ଧଉଳୀ, ଉର ନାନୀ କହୁଚ—ମୁଁ କଏସେ ?

ଉର : (ବଡ଼ପାଟିରେ) ନକ୍ଷୀ !

ଲକ୍ଷ୍ମୀ : ଏଡ଼େ ଜୋର୍‌ରେ ପାଟି କରନ ନାନୀ, କଅଁଳା ବାଛୁରୀଟା ଚମକୁଚ ।

ଉର : ତୁ ଗୁଲ ତୋ ଅପା ପାଖକୁ—ତୋ ରଙ୍ଗ ମୁଁ ବାହାରକରଦଉଚ ।

ଲକ୍ଷ୍ମୀ : ଏଡ଼େ ବଡ଼ କାମଟାଏ ଯେତେବେଳେ କରଚ, ଅପା ପାଖରେ ଏକଥା ପଡ଼ିବ ବୋଲ ମୁଁ ଆଉ କଣ ଜାଣିନ ? ତେମେ ଗୋଟାଏ କାମ କର ନାନୀ—ଠେକଟା ଏଇଠି ରଖିଦେଇ ଅପା ପାଖକୁ ଯାଅ । ମୁଁ ବଉଳାକୁ ପିଆଇ, କ୍ଷୀର ଦୁହିଁ, ତମ ଶିକାରେ ରଖି ପଛରେ ଯିବ ।

ଉର : ହଉ ହେଲ । ଠେକ ରହିଲା—କାନରେ ଗଣ୍ଠି ପଡ଼ିଲା—ତୁ ଆ ତୋ ଅପା ପାଖକୁ; ମୁଁ ଦେଖୁଚ ।

[ଲକ୍ଷ୍ମୀ ଗୃହର ଅଗଣା । ସେମିତ ଗୁଳଘର । ସେମିତ ସାଧାରଣ ଅବସ୍ଥା । ତେବେ, ଏମାନେ ଯେ ଦିନେ କଛୁମାତ୍ରାରେ ଅବସ୍ଥାସମ୍ପନ୍ନ ଗୃହସ୍ଥ ଥିଲେ, ତା'ର କଣ୍ଠିତ ଆଭାସ ଏଠିସେଠି ଦେଖିବାକୁ ମିଳେ ।

ପୂର୍ବବର୍ତ୍ତୀ ଦୃଶ୍ୟର କଛୁ ସମୟ ପରର ଘଟଣା । ମଞ୍ଚରେ ଉପସ୍ଥିତ ଲକ୍ଷ୍ମୀ ଓ ତା'ର ବଡ଼ଭଉଣୀ ସର । ସର ବିବାହିତା—ବୟସ ପ୍ରାୟ ତେଇଶି ଚବଶ ।]

ଲକ୍ଷ୍ମୀ : ତୁ ମୋଟେ ଜାଣିନୁ ଅପା ! ମୁଁ ସବୁଦିନେ ପରା ଦେଖୁଚ—ବାଛୁରୀଟା ପାଇଁ ଟୋପେ କ୍ଷୀର ନରଖି ସବୁ ଦୁହିଁଦାହିଁ ନେଇଯାଉଚନ୍ତି । ତା' ପଞ୍ଜରାହାଡ଼ ଦୋହଲିଲଣି ।

ସର : ଯ୍ୟା ବୋଲି ତୁ ତାଙ୍କ ଗୁହାଳେ ପଶି ବାଛୁରୀ ଫିଟେଇଦବୁ ? ଏଇଟା କୋଉ ରାଜ୍ୟର କଥା ? ତାଙ୍କ ଗାଈ କେତେ କ୍ଷୀର ଦେଲା—ତାଙ୍କ ବାଛୁରୀ କଣ ଖାଇଲା ନ ଖାଇଲା, ଏ କଥା ବୁଝିବାକୁ ତୁ କଏ ?

ଲକ୍ଷ୍ମୀ : ସେ ଗାଈ ବାଛୁରୀ ତାଙ୍କର ନୁହେଁ—ଆମର ।

ସର : ଆମର କେମିତ ହେଲା ? ଗାଈ ତ ସିଏ ପାଳିବାକୁ ନେଲେ । ଏ ବର୍ଷଟା କ୍ଷୀର ସେ ଖାଇବେ । ବାଛୁରୀଟାରେ ଅଧେ ଭାଗ ତାଙ୍କର···

ଲକ୍ଷ୍ମୀ : ଅଧେ ଭାଗ ବୋଲି ତ ବାଛୁରୀଟାକୁ ସେମାନେ ନଜର ଦଉନାହାନ୍ତି ।

ସର : ଏ କଥା ତାଙ୍କୁ ମୁହଁରେ କହିଲେ ହ'ନ୍ତା ନାହିଁ ?

ଲକ୍ଷ୍ମୀ : କାଲି କହିଥିଲି ତ···କାଇଁ···ମୋ' କଥା ଶୁଣିଲା କଏ ?

ସର : ତା' ହେଲେ ତୁ ଏଇଆ କରିବୁ ? ଜବରଦସ୍ତି ତାଙ୍କ ଗୁହାଳେ ପଶି ବାଛୁରୀ ଫିଟେଇଦବୁ ?

ଲକ୍ଷ୍ମୀ : ପଶୁଟାଏ ବୋଲି ଯଦି ତାଙ୍କ ମନରେ ଦୟା ନ ହବ, ସେ ଏଇ ଶାସ୍ତି ଭୋଗିବେ ।

ସର : ଲକ୍ଷ୍ମୀ !

ଲକ୍ଷ୍ମୀ : ଗାଈ ଜନ୍ମକଲାବେଳକୁ ମୁଁ ଏଠି ନଥିଲି—ମାଉସୀଘରକୁ ଯାଇଥିଲି । ପାଞ୍ଚଦିନ ହୋଇଗଲା, ମୁଁ ମାଉସୀଘରୁ ଆସିଲି । ଏ ପାଞ୍ଚଦିନ ହେଲା ମୁଁ ଦେଖୁଚ ଅପା—ଏଗୁଡ଼ାକ ଏଡ଼େ ନିର୍ଦ୍ଦୟ···

ସର : ପୁଣି ସେଇ କଥା ତୁ କହିଲୁ ! ଏ କଥା ଦେଖିବାକୁ, ବୁଝିବାକୁ ତୁ କଏ ? ସାଇପଡ଼ିଶାରେ ଘର କଣ ରହିଛେ—ଗୁଳକୁ ଗୁଳ ଲଗିଛୁ । କ'ଣ ସିଏ ଆସି କହିଗଲା ଶୁଣିଲୁ ତ ? ଆସି ସତର-ଅଠର ବର୍ଷର ଝିଅଟି ହେଲୁ—ଏବେ ପରମଣିଷଙ୍କଠୁ ଶୁଣିବାକୁ କଣ ତୋତେ ଭଲଲାଗୁଚ ।

ଲକ୍ଷ୍ମୀ : ମୋତେ ସତର-ଅଠର ହଉ କି ସତୁରି-ଅଶୀ ହଉ; ମୋ' ଆଖିଆଗରେ ଯଦି ସିଏ ବାଳୁଙ୍ଗାଟାକୁ ଏମିତି ଦରମରି କରି ରଖିବେ, ତେବେ ସାଇପଡ଼ିଶା ପରି ଆପଣା ମୁଁ କିଛି ମାନିବି ନାହିଁ ।

ସର : ତୁନି ହ' କହୁଚି, ଦିନକୁ ଦିନ ମୁହଁ ବେଶି ବଢ଼ିଯାଉଚି । ଏମିତି ଭାଗ୍ୟ ନେଇ ଜନ୍ମିଛୁ ଯେ ଜନ୍ମ ହେବାର ବର୍ଷଟାଏ ଭିତରେ ଗୋଟି ଗୋଟି କରି ବାପ ମା' ସମସ୍ତିଙ୍କୁ ଖାଇଲୁ; ଅଧ ଶ୍ରାଦ୍ଧାରେ ମାମୁ ଆସି ନେଇଯାଇଥିଲେ ଯେ, ଏଇ ଢଙ୍ଗ ଦେଖି ସିଏ ବି ସମ୍ଭାଳି ପାରିଲେ ନାହିଁ—ଏଠି ଆଣି ଛାଡ଼ିଦେଇ-ଗଲେ । ଆଉ ଏଇନେ ବସିଚୁ ମତେ ଜଳେଇ ପୋଡ଼ି ମାରିବାକୁ ! ଏଇଥର ତୋ ଭିଣୋଇ ଆସନ୍ତୁ, ମୁଁ ବୁଝୁଚି ତୋ' କଥା । ମା'ଛେଉଣ୍ଡ ଭଉଣୀ ବୋଲି ତତେ ଆଦର କରି ବଢ଼େଇଥିଲି କ'ଣ ତୋ'ର ଏଇ ଗୁଣ ଦେଖିବାକୁ ? (ଟିକିଏ ରହି) ଆଲୋ ବେଳ ଆସି ଏତେ ହେଲାଣି—ଠାକୁରପୂଜା ଆଜି ହବନାହିଁ ? ଯା' ଗାଧୋଇପଡ଼ି ବାରିରୁ ଫୁଲ ଦି'ଟା ଆଣ । ଲକ୍ଷ୍ମୀ, ଲକ୍ଷ୍ମୀ—ମୁହଁ ଫୁଲେଇ ବସିଲୁ କାହିଁକି ? ଉଠ୍ ।

ଲକ୍ଷ୍ମୀ : ଶାମଭାଇ ଏଥର ଘରକୁ ଆସିଲେ ମୋ' କଥା ତୁ କ'ଣ ବୁଝିବୁ ଆଗେ କହୁସାର—ମୁଁ ଉଠିବି ।

ସର : (ହସିପକାଇ) ସେ କ'ଣ ଆଉ ମିଛରେ କହନ୍ତି ତୁ ଉଦ୍ଦଣ୍ଡୀଟାଏ ।...ସୁନା-ଭଉଣୀଟାଏ ପରି—ତୁ କ'ଣ ବୁଝିପାରୁନୁ ଆମ ଅବସ୍ଥା ! ତୁ ଆଖିରେ ସିନା ସବୁ ଦେଖିନୁ...ଲୋକଙ୍କ ମୁହଁରୁ ତ ଶୁଣୁଥିବୁ, ଏଇ କାନଗୋଇ ଘର ଥିଲା କ'ଣ—ଆଜି ଆସି ହେଲାଣି କ'ଣ ? ତୁ ଏଇ ଢଙ୍ଗ ଧରିଲେ ବାରଲୋକ ବାରକଥା କହିବେ, ଶେଷକୁ ମୁଁ ସିନା କାନ୍ଦି କାନ୍ଦି ମରିବି । ଯା ଉଠ୍, ଗାଧୋଇ ଯା'...

ଲକ୍ଷ୍ମୀ : ତା'ହେଲେ ଅପା ତୁ କ'ଣ କହୁଚୁ ଯେ ଦୋଷଟା ତାଙ୍କର ନୁହେଁ ମୋର ?

ସର : ନାଇଁଲୋ ନାଇଁ, ଦୋଷ ତାଙ୍କର ନୁହେଁ କି ତୋର ନୁହେଁ—ସବୁଦୋଷ ମୋର । ତୁ ଗଲୁ !

ଲକ୍ଷ୍ମୀ : ଯାଉଚି ! ହେଲେ ଏ ପଟାପଟି କଥା ଚଳିବ ନାହିଁ ଅପା ! ତୁ ସେ ଉପର ନାମୀକି ଡାକି କହିଦେ—ସିଏ ଯଦି କଅଁଳା ବାଳୁଙ୍ଗାଟାର ପେଟ କାଟି ତା' ଠେକି ଭର୍ତ୍ତି କରିବ, ତା'ହେଲେ ମୁଁ ତାକୁ ସହଜରେ ଛାଡ଼ିବି ନାହିଁ ।

ସର : ଆଲୋ ମୁଁ ତାକୁ ଆଜି କହୁଚି—ପୁଣି ସାତଥର କରି କହିବି, ତୁ ଯା, ଉଠ୍ ।
(ଲକ୍ଷ୍ମୀ ଉଠିକରି ଗଲା ।)

[କିଛିଦିନ ପରର କଥା । ଉର-ବାପଙ୍କ ଗୃହ ଅଗଣା । ସମୟ —ପୂର୍ବାହ୍ଣ । ଉପସ୍ଥିତ ଉର ଓ ଜଣେ ବିଧବା ମଧ୍ୟବୟସ୍କା ସ୍ତ୍ରୀ—ମଣି ।···ସେ ଆସି ଘିଅ କିଣୁଚନ୍ତି ।]

ମଣି : ଏ କାନ ଉଠିବାଦିନୁ ଏ କଥା ଶୁଣାନଥିଲି ଲେ ମା ! ତୋ' ଗୁହାଳେ ପଣି ସିଏ ବାଛୁରି ଫିଟେଇଦେଲା ! ବାଛୁରିଟାପେଇଁ ଟୋକୀଟା ମନ ଏମିତି ତଟିଚି !

ଉର : ମନ କାହିଁକି ତଟିବ ବା ମାଉସୀ ! ସେଇଟା ସେମିତି କଳଆଖୋରଣୀ ଅଣ୍ଡି ଗିରଣ୍ଡିଟାଏ ନା ! ତୁ ଦେଖିଥା'ନ୍ତୁ କ' ସେଦିନ, ଯେମିତି ଅଣ୍ଡାରେ ଲୁଗାକାନିକ ବେଢ଼େଇଆଣି ଆଖି ତରାଟି ମତେ ଗୃହିଁଲା ! ସାତଟା ମରଦ କାହିଁକି ଭଲ ତା କୁ ସରହେବେ ?

ମଣି : ଆଲେ ବାପା-ମା' ତ ନାହାନ୍ତି । ମାମୁଁଘରୁ ଆସି ଭଉଣୀ ପାଖରେ ବଢ଼ିଲା । ଘରଜ୍ୱାଇଁଆ ଭଣେଇ ଯେ, ସିଏ ତ ପେଟ ଗୃଷଣ୍ଡିକ ପାଇଁ ବର୍ଷକ ବାରମାସ ବିଦେଶରେ—ଏଇଟା କଥା ଶୁଣୁଚି କିଏ ? ଏମିତି ଦୁର୍ଦ୍ଦଣ୍ଡ ହେଇ ବଢ଼ୁଚି ।

ଉର : ତା' ଦୁର୍ଦ୍ଦଣ୍ଡପଣିଆ ତା' ଘରେ ନା ମୋ ଘରେ ! କଥାରେ କହନ୍ତି—ନ ଦେଖିବା ନୋକ ଦେଖ, ନା କଇଁଚ କାନ୍ଥିଚି ବେକ !! ନାଁ ସିନା କାନଗୋଇ ଘର !···ବାରହାତ ଶାଢ଼ୀ ତ ଆସି ହୁଡ଼ା ଖିଅରେ ରହିଲାଣି —ଏଇଥିରେ ଝିଅଙ୍କ ଗୃରୁଖି ଦେଖ ! ବାଛୁରିଟାପେଇଁ ମନ ତରଳିଯାଉଚି !

ମଣି : ଆଉ ଏଣିକି ଆସୁନାହିଁ ତ ?

ଉର : ନାହିଁ; ସେଇଦିନୁ ତା' ଅପା ତାକୁ ଜବତ୍ କରଦେଇଚି । ହେଲେ ତାକୁ କୋଉ ବିଶ୍ୱାସ ! ଏଇ ପରା, ମୁଁ ତା'କୁ ଦ୍ୱ'ବେଳା ଏମିତି ଗୁହାଳ ଦୁଆରମୁହଁରେ ଜଗି ବସୁଚି । ହଁ, ମାଉସୀ ! କେତେ ଦେବ କହୁବଟି ? ପାଏ ?

ମଣି : ହଁ ଲେ ଝିଅ—ଘିଅ ସେରକୁ ତ ମୁଠାଏ ଟଙ୍କା, ସେଇ ପାଏ ଦେଇ ଥା । ହଁ, କେତେ ଲେଖା ହଉଚି ?

ଉର : ମିଛ କହିବି କାହିଁକି ମାଉସୀ—ଆଠଦିନକୁ ସେରେ ଘିଅ ହଉଚି । କାଠ ଗାଈଟାଏ ଏକା ! କ୍ଷୀର ପୋଷେକୁ ଲହୁଣି ପୋଷେ ।

ମଣି : ହଁ—ଲେ ! କରଥିଲେ ପାଇ । ତୁ ଗାଈଟା ପିଠିରେ ସେମିତି ଲଗିଚୁ ବୋଲି ପାଉଚୁ ନା । ହଉ ଦେ, ଆଉ ଟିକିଏ ଲଭ ପକେଇଦେ ।···ଆଲେ ଉର, ଏଇ ଯେ ଶାଢ଼ୀଟା କ'ଣ ଏଇଥର ହାଟପାଳରୁ ଆଣିଚୁ ?

ଉର : ଛୁଆଲେ ! ଏ ହାଟରେ ପୁଣି ଏ ଦରବ କୋଉଠି ମିଳବ ବା ? କରୁଣି ସାହୁ ମହାଜନ ଢ' ସେର ଘିଅ ନେଇଥିଲା ଯେ, ସେଇ ବାବଦକୁ ଏ ଖଣ୍ଡିକ କଟକରୁ ଆଣିଦେଇଚି । ଏଇ ସୁଦର୍ଶନଚକ୍ର ଦାନ ପିନ୍ଧିଚି ।...ଏ କ'ଣ ମାଉସୀ—ଏକାବେଳକେ ଅଠଣା କାଟିଦେଉଚ ? ନାଇଁ ନାଇଁ—ଆଉ ଗୁରଣା ଦଅ ।

ମଣି : ଗୁରଣା । ନାଇଁଲେ ଟ୍ଟୁଅ, ଗୁରଣା ନୁହେଁ—ଏଇ ଏତେକ ଅଛୁ, ନେ । ହେଲା ?

ଉର : ତେମେ ତ ଦଉଚ—ମୁଁ ଆଉ କହିବି କ'ଣ ? ଏଇ ପଗ୍ ମିଶ୍ରଘର ଘିଅ ନବ ବୋଲି ପାଞ୍ଚଟଙ୍କା ବନ୍ଧନା ଦେଇଯାଇଚି ।

ମଣି : ଇଏ...ପଇସା କେଇଟା ଯେ...

ଉର : ହଉ, ଯାଅ ମାଉସୀ, ଯାଅ । (ଘିଅ ନେଇ ମଣି ଚାଲିଗଲା) ।) ଆଲେ ବାସ, ବାଛୁରି ଫିଟା—ମୁଁ ଗାଈ ଦୁହିଁସାର ଗାଧୋଇଯିବି ।
(ବାରପଟୁ ଧଇଁସଇଁ ହୋଇ ବାସ ଆସିଲା ।)

ବାସ : ଆଲେ ବୁଢ଼ୀ, ଏଣେ ତୁ ବାଟେକ ଆସିନ୍ । ଶାଗପଟାଳିରେ ଏଇଟା କାହା ଗାଈ ଗୋଟାଏ ଆସି ଚରୁଚି । ମୋତେ ମାରଗୋଡ଼େଇଲା ।

ଉର : ଆଲେ କଣ କହୁଚୁ ତୁ ? ତାଟି ତ ବନ୍ଧାହେଇଚି, ଗାଈ କୋଉବାଟେ ଆସିଲା ? ଗୁଲିଲୁ, ଗୁଲିଲୁ—ମୋର ଏଡ଼େ ସୁନ୍ଦର ଶାଗପଟାଳି...

ବାସ : ରହ—ମୁଁ ଗୋଟାଏ ଠେଙ୍ଗା ନଏ ।
(ବାସ ହାତରେ ଠେଙ୍ଗା । ଦୁହେଁ ଶାଗପଟାଳିକୁ ଆସିଲେ ।)

ଉର : କାହା ଗାଈ ଏଇଟା ? ମାର୍-ମାର୍ ବା ତାକୁ—ମାର୍ ।

ବାସ : (ଠେଙ୍ଗାକୁ ଭୂଇଁରେ ପିଟି) ହାସ୍-ହାସ୍ ଗୋରଣୀ—ହାସ୍ । ଏଇଟା ଉପର ସାହି ଗଉଡ଼ଘର ଗାଈ ନା କ'ଣ ?

ଉର : ଗଲା ନା ନାଇଁ ବା ?

ବାସ : ହଁ, ସେ ବର କୋଳି ଗଛ ସେ ପାଖ ବାଡ଼ ଡେଇଁ ପଳାଇଲାଣି । ଆଉ ତ କାଇଁ ଦିଶୁ ନାଇଁ ।

ଉର : କେମିତି ବା ? ସେ ପୁରୁଷେ ଉଞ୍ଚର ବାଡ଼ ସେ ଡେଇଁଲା କେମିତି ? ଗୁଲିଲୁ ଗୁଲିଲୁ, ଦେଖେଁ... (ଦୁହେଁ ଆଗେଇଗଲେ ।)

ବାସ : ସତ ଗୋ ବୁଢ଼ୀ, ବାଡ଼ ଡେଇଁନ—ଭାଙ୍ଗି ଦେଇଚି ।

ଉର : ନାଇଁ ତ, ଇଏ ଭଙ୍ଗା ନୁହେଁ, ଖୁଣ୍ଟାକୁ କିଏ ଓପାଡ଼ିଦେଇଚି ।

ବାସ : ହଁ ତ—ଶାବଳରେ କିଏ ଖୋଳି ଖୁଣ୍ଟାକୁ ଏମିତି କରିଚି ।

ଉର : କିଏ ଏ କାମ କଲା ? ମୁଁ ପରା ସେଇଥିପା କହୁଚି—ତାଟି ତ ବନ୍ଧା—ଗାଈ ପଶିଲା କୋଉବାଟେ ? ଏଇଟା ପୁଣି ଆମ ଏ ସାଇର କାହାର ଗାଈ ନୁହେଁ । କାହା ହାତଗୋଡ଼ ଛିଡ଼ିପଡ଼ିଲା ? କିଏ ମୋ ବାଡ଼ ଭାଙ୍ଗିଲା ?

ବାସ : ଘଣ୍ଟାଏ ତଳେ ମୁଁ ଦେଖିଥିଲି ଖୁଡ଼ୀ, ଆମ ପୋଖରୀ ହୁଡ଼ାରୁ ଏ ଗାଈଟାକୁ ନକ୍ଷୀ ଏଣିକି ତଡ଼ୁଥିଲା ।

ଉର : ଆଲେ ସିଏ ସିନା ଗାଈଟାରୁ ତଡ଼ୁଥିଲା—ଏ ବାଡ଼ ଏଠି ଢ଼ାଳିଲା କିଏ ? ତୁ ଗଲୁ ଘରୁ ଖଣ୍ଡେ ନେଇଆସିବୁ । ସ୍ୱାଙ୍କୁ ମୁଁ ପୋତି କାମଡ଼ା ଭିଡ଼ିଦିଏ ।

ବାସ : ଏଇନେ ଯୋଉଚୁ ?

ଉର : ହଁ, ସିଏ ତ ବାଲିରୁ ଫେରୁ ଫେରୁ ଦିନ ଦ'ପହର । ଏଇନେ ବାଡ଼ ନ ପୋତିଲେ ଯେ ନରୁମୂଳ ଗାଈ ପରି ସବୁ ଚେରମୂଳ ଉଠେଇଦେବ । ତା' ଆଖି ଥରେ ଏଠି ପଡ଼ିଲାଣି । ଖଣ୍ଡେଟା ମଝିଘରେ ଥୁଆହୋଇଚି । ଯା, ନେଇଆ । (ବାସ ଘର ଭିତରକୁ ଗଲା ।) ଏ କାମ କଲା କିଏ ? ଇଏ ତ ଶ୍ୱେରର କାମ ନୁହେଁ । ଆଉ କିଏ ସେ ଉଦଣ୍ଡୀ ନକ୍ଷୀ ମୋ ଉପରେ ଦାଉ ସାଧିବ ବୋଲି ଏ କାମ କରିଚି !! ତାକୁ କିଏ ପଗ୍ଚରିବ—ପାଟି ନଫିଟୁଣୁ ପରି ସେ ହାଉଁ କରି ଗର୍ଜିଉଠିବ । ଆଜି ସିଏ କାମରୁ ଆସି ବୁଝିବୁ ଏ କଥା ।

ବାସ : (ଦୂରରୁ ବଡ଼ପାଟିରେ) ଆଲେ ଖୁଡ଼ୀ—ଖୁଡ଼ୀ ଲୋ···

ଉର : କଣକଲେ ! (ଧଇଁସଇଁ ହୋଇ ବାସ ଆସିଲା) ଆଲେ କଣ ହୋଇଚି ?

ବାସ : (ଧଇଁସଇଁ ହୋଇ) ଏଇ ନକ୍ଷୀ ମ—ନକ୍ଷୀ କଣ କରିଚି କ—ଏଇନେ ପୁଣି ବାକ୍ସୁଟା ଫିଟେଇଦେଇଚି ।

ଉର : କଣ କହିଲୁ ?

ବାସ : ହଁ, ପରି । ବାକ୍ସୁଟା ଫିଟେଇଦେଇ, ଅଣ୍ଟାରେ ଶାଢ଼ୀକି ଭିଡ଼ିଦେଇ ଠିଆହୋଇଚି । ମୁଁ କହିଲି ବୋଲି ମୋ ହାତରୁ ଖଣ୍ଡେଟା ଛଡ଼େଇନେଲା । ମୁଁ ତକେ ପଳେଇ ଆସିଲି ।···ଏଇଲେ ଖୁଡ଼ୀ, ଏଣିକି ଆସୁଚି ।

(ଲକ୍ଷ୍ମୀ ଆସିଲା ।)

ଉର : ହଇଲେ ନକ୍ଷୀ—ହଇଲେ ପୋଡ଼ାମୁହିଁ ଛତରଖାଇ—ତୋର ଏଡ଼େ ବଢ଼ିପ ହେଲାଣି ? ତୁ ଆଜି ପୁଣି ମୋ ଗୁହାଳେ ପଶି ବାକ୍ସୁଟା ଫିଟେଇଦେଇଚୁ । ତୁ ଖଣ୍ଡେ ଧରିଚୁ କଣ—ରହ, ମୁଁ ସାବଲ ନେଇ ଆଉଚି । ଆଜି ତୋର ଦିନେ କି ମୋର ଦିନେ ।

ଲକ୍ଷ୍ମୀ : ମିଛରେ କାହିଁକି ବାଢ଼େଇହଉଚ ନାନୀ ? ମୋ ସାଥିରେ ଲଢ଼ିଲେ ତମେ କ'ଣ ପାରିବ ? ପାରିବ ନାହିଁ । ବଉଳା ମୋର ଯାହା ପିଇବାର ପିଇ-ସାରିଲାଣି । ତେମେ ତମର ଠେକି ଆଣି ଗାଈ ଦୁହଁ···ମୁଁ ଯାଉଚି । ଏଇ ନିଅ ତମ ଖଣ୍ଡେ । (ସିବାକୁ ଲାଗିଲା ।)

ଉର : କ'ଲେ, କ'ଲେ, ଏମିତି ଭଲଲୋକଙ୍କ ଭଳିଆ ଗ୍ଲଲିଯାଉଚୁ କଣ ?

ଲକ୍ଷ୍ମୀ : ଏ ଗାଁ ଛାଡ଼ି ଗ୍ଲଲିଯାଉନାହିଁ ମ—ଘରକୁ ଯାଉଚି । ତେମେ ତ ଅପା

ପାଖକୁ ମୋ' ନାଁରେ ଫେରାଦ ହବାକୁ ଯିବ, ଆସ, ମୁଁ ସେଇଠି ଅଛୁ। ସେଇଠି ମୁକାବିଲା ହବ। ଯା' ଲେ ବାସ, ଠେକ ନେଇ ଯା। ଖୁଣ୍ଟୀ ତୋର ଚାଇ ଦୁହିଁବ। ମୁଁ ଯାଉଚ। (ଗୁଲିଗଲା)

[କିଛି ସମୟ ପରର କଥା। ଲକ୍ଷ୍ମୀ ଘରର ଅଗଣା। ସର, ଲକ୍ଷ୍ମୀ ଓ ଉର ଅଛନ୍ତି।]

ଉର : ତୁ ବୁଝ୍ ସର—ଭଉଣୀ କଥା ତୁ ବୁଝ୍। ଏ ଟୋକାପେଇଁ ଏ ଗାଁରେ ଆମେ ଆଉ ଘର କର ରହି ପାରବୁ ନାଇଁ। କୁଜଆ ଭ୍ରେଇ କହୁଚ, ଏଇ ଲୁଆଡ଼େ ସାବଲରେ କଣ୍ଟାବାଡ଼ ଓପାଡ଼ି ମୋ ଶାଗକିଆରିରେ ଗାଈ ପୁରେଇଚ।

ସର : ଲକ୍ଷ୍ମୀ !

ଲକ୍ଷ୍ମୀ : ମୁଁ ସବୁ ମାନୁଚ ଅପା—ସେ ଯାହା କହୁଚନ୍ତି ସବୁ ସତ। ହେଲେ ତାଙ୍କ କଥା ଶୁଣିବା ଆଗରୁ ତୁ ମୋ' କଥା ଶୁଣ।

ସର : କ'ଣ ତୋ' କଥା ଶୁଣିବ ? ତାଙ୍କ ବାଡ଼ ତ ତୁ ଓପାଡ଼ିଚୁ...

ଲକ୍ଷ୍ମୀ : ତୁ ନଜେ ତାଙ୍କୁ କହିଥିଲୁନା, ବାଛୁରୀଟାକୁ ଟିକେ ପିଇବାକୁ ଛାଡ଼ିଦେବେ।

ସର : ହଁ, କହିଥିଲି ତ।

ଲକ୍ଷ୍ମୀ : ସେ ରଖିଚନ୍ତି ତୋ' କଥା ? ତାଙ୍କ ମୁହଁରେ ମୁଁ କହୁଚ—ତାଙ୍କୁ ପଗ୍ଗର।

ଉର : ଆଖି ଫୁଟିଯିବ ଲେ ସର ! ତୁ କହିଲାଦିନୁ ମୁଁ ପବି ବାଛୁରୀ ପେଇଁ ପାଏ-କାନ୍ତିର କ୍ଷୀର ଛାଡ଼ିଦଉଚ।

ଲକ୍ଷ୍ମୀ : ଏ ତାହା ମିଛଗୁରୀ କୁହନାଇଁ ନାନା ! ସତରେ ତମ ଆଖି ଫୁଟିଯିବ।... ପଥରଦିନ ଅପା—ମୁଁ ଲୁଚି ଦେଖିଥାଏ—ଏମୁରିକ ଏଡ଼େ ନିର୍ଦ୍ଦୟ, ପାଷାଣ ! ଦି'ଟା ଠେକ ଭର୍ତ୍ତିକର କ୍ଷୀର ଦୁହିଁନେଲେ, ବଉଳା ପାଇଁ ଟୋପାଏ ବି ନଥାଏ। ଖାଲି ଶୁଖିଲା ଚରଟାରେ ମୁହଁ ମାର ମାର ରହିଲା। ସେମିତି ବିକଳ ହେଇ ତା' ମା' ମୁହଁକୁ ଅନେଇଥାଏ। ତା' ଆଖିରେ ଆଖିଏ ଲୁହ। (ଲକ୍ଷ୍ମୀର କଣ୍ଠ ରୋଧ ହୋଇଆସୁଥାଏ) ନଜେ ସେର ସେର କର ଘିଅ ବିକବେ—ଦାମିକା ଶାଢ଼ୀ ପିନ୍ଧବେ—ଆଉ ଯାହା ଦୟାରୁ ଏତେ କଥା, ତା' ଛୁଆଟାକୁ ଶୁଖାଇ ଶୁଖାଇ ମାରବେ।

ଉର : ତୋ' ଭଉଣୀକି ତ କେତେ ଢଙ୍ଗରେ କଥା କହିଆସେ ଲେ ସର ! ମୁଁ ମୂରୁଖ ନୋକ—ତା' କଥାର କି ଜବାବ ଦେବ ? ମୁଁ ପୁଣି ବାଛୁରୀକି ଖୁଆଏ ନାଇଁ ! ଦି' ବେଳାର ପେଜ ତୋଡ଼ାଣି କାହା ପେଟରେ ପଶୁଚି ?

ଲକ୍ଷ୍ମୀ : ହଁ, ତା' ପେଟରେ ପେଜ-ତୋଡ଼ାଣି ପଶୁଚ—ହେଲେ ତମ ପେଟରେ ପଶୁଚି ସେତକ କ୍ଷୀର, ସର, ଘିଅ।

ସର : ଲକ୍ଷ୍ମୀ !
ଲକ୍ଷ୍ମୀ : କଣ ?
ସର : ତୁ ତାଙ୍କ ବାଡ଼ ହାଣିଚୁ ?
ଲକ୍ଷ୍ମୀ : ହଁ ।
ସର : କାହିଁକି ?
ଲକ୍ଷ୍ମୀ : ଏ କେତେ ଦିନ ହେଲା ଖତ୍ରୀ ଟିଆଣି ଦୁଟନ୍ତି ମୋ' ଉପରେ ଗୁହାଳ କରି ବସୁ-ଥିଲେ; ସେଇଥିପାଇଁ ମୁଁ ବାଡ଼ ଭାଙ୍ଗି ଶାଗପଟାଳରେ ଗାଈ ପୂରେଇଦେଲି ।
ଉର : ମୁଁ ଯିବ କୁଆଡ଼େ ଲେ ମା ! ଆମେ ବାଡ଼ ବୁଜିବସିଲାବେଳକୁ ତୁ ଏଣେ ବାଛୁରି ଫିଟେଇଦେଲୁ !
ଲକ୍ଷ୍ମୀ : ହଁ, ଠିକ୍ ସେଇଆ । ଖାସ ସେଇଥିପାଇଁ ମୁଁ ବାଡ଼ ଓପାଡ଼ି ଦେଇଥିଲି ।
ସର : ତୋତେ ଲାଜ ମାଡ଼ୁନି ଲକ୍ଷ୍ମୀ ! ଏ କଥା ତୁ ଏଠି କହିପାରୁଚୁ !!···ମାଳି-ବୋଉ ସାଥିରେ ତୁ କଳି କରୁଥିଲୁ କାହିଁକି ?
ଲକ୍ଷ୍ମୀ : ସେ କହୁଥିଲା ଏ କଥା ?
ସର : ତୋ'ର କଣ ବୁଦ୍ଧି-ବୃତ୍ତିସବୁ ଲୋପ ପାଇଲାଣି ? ମାଳିବୋଉ ସାଥିରେ ତୋ'ର ସମ୍ପର୍କ କଣ ? ତା' ଦେହରେ ତତଲା ଲୁହାର ଚିଆଁ ଦବୁ ବୋଲି ତାକୁ ଧମକେଇଚୁ କାହିଁକି ?
ଲକ୍ଷ୍ମୀ : ତା'ର ସ୍ୱରବର୍ଷର ପୁଅଟା କାଚ ଗ୍ଲାସଟାଏ ଭାଙ୍ଗି ଦେଲା ବୋଲି ତାକୁ ତତଲା ଭୂଇଁରେ ଠିଆକରେଇ ଦଣ୍ଡ ଦଉଚ !!
ସର : ସେଥିରେ ତୋ'ର କ'ଣ ଗଲା ?
ଲକ୍ଷ୍ମୀ : ମଣିଷ ହଉ'କି ପଶୁ ହଉ, କୁଆଙ୍କୁ ଏମିତି ଦଣ୍ଡ ଦେବା ମୁଁ ସହିପାରେ ନାହିଁ ।
ସର : ଆଉ ତୋ' ପାଇଁ ମୁଁ ଦୁନିଆଁ ଲୋକଙ୍କଠୁଁ ଦୁନିଆ କଥା ସହିବ, ନା ? (ବେତଟାଏ ଆଣି) ମୋ' ହାତରେ ଏ ବେତ ଦେଖୁଚୁ ?
ଉର : ଆଲୋ, ସେ ପଗ୍ର ଖଣ୍ଡ ଧରି ମୋ ସାଙ୍ଗରେ ନଚ୍ଛେଇ କରିବାକୁ ବାହାର-ଥିଲା—ତାକୁ ବେତ କ'ଣ ଦେଖଉଚୁ ?
ଲକ୍ଷ୍ମୀ : ତେମେ ମୋ' ନାଁରେ ଯେତେ ଯାହା କହିଲେ ବି ନାଣି, ବଉଳାକୁ ତେମେ ହଇରାଣ କରୁଥିବାଯାଏ, ତେମେ ନିଜେ ହଇରାଣ ହଉଥିବ ।
ସର : (ଗର୍ଜିଉଠି) ଲକ୍ଷ୍ମୀ !
ଲକ୍ଷ୍ମୀ : ତୁ ଏମାନଙ୍କୁ ମୋଟେ ଚିହ୍ନିନୁ ଅପା !
ସର : ଆଉ ତୁ ଚିହ୍ନିଚୁ ? ତୋ' ଦିମାକ୍ ବଢ଼ିଯାଉଚି ନା ? ବଦମାସ୍ ଟୋକୀ ! (ବେତରେ ପିଟିଲା)
ଲକ୍ଷ୍ମୀ : ଅପା !
ସର : ତୋ ପିଠିରୁ ଆଜି ଛାଲ ନ ଉତାରି ଛାଡ଼ିବି ନାହିଁ । (ପିଟୁଥାଏ)

ଲକ୍ଷ୍ମୀ : ଅପା-ଅପା···

ଭୂର : ଥାଉ, ଥାଉ ଲୋ ସର—ଆଉ ମାରନା । ଏଡ଼େ ବଡ଼ ଝିଅ ହେଲଣି, ଏ ବୟସେ ମାଡ଼ ଖାଇଲେ କ'ଣ ସୁନ୍ଦର ଦିଶିବ ।

ସର : (କାନ୍ଦି) ଏଇଟା ମଲେ ମଶାଣି ଯା'ନ୍ତା ନାନି, ମୋ କଣ୍ଟା ଯା'ନ୍ତା ।

ଭୂର : ଆଲୋ ମୁଁ ତ ସେଦିନୁ ତୋ ସାଙ୍ଗରେ ନଗେଇଚି, ତାଙ୍କୁ ବାହା କରେଇଦେ । ସିଏ ତ ଆମର ପାଞ୍ଚ ବି ଠିକଣା କରିଦେଲେ । ହେଲେ ସମସ୍ତେ ନାକ ଟେକିଲ । କହିଲ କ'ଣ ନା—ମୂରୁଖ ମଦୁଆଟାଏ ! ଭଦ୍ରଲୋକ ଫେରିଗଲ ।

ସର : ନାଇଁ ନାନି ! ମୁଁ ତମ ହାତ ଧରୁଚି, ଗୋଡ଼ତଳେ ପଡ଼ୁଚି, ତମେ ସେ ଭଦ୍ରଲୋକଙ୍କୁ ଡକେଇ ପଠାଅ । ସେ ମଦୁଆ ହଉ, ମୂର୍ଖ ହଉ—ଏଇ ବଇଶାଖରେ ମୁଁ ତାଙ୍କୁ ବାହା କରେଇଦେବି । ଏଇଟା ପାଇଁ ମୁଁ ଖୁବ୍ ସହିଲଣି, ଖୁବ୍ ଭୋଗିଲଣି । ଆଉ ନୁହେଁ, ଆଉ ପାରିବି ନାହିଁ ।

ଭୂର : ମୋ' ମା'ଟା ପରା ଯା—ଆଉ ଏମିତି ବେସ୍ତ ହ ନାଇଁ । ମୁଁ ଆଜି ଭଦ୍ରଲୋକ ଡକେଇ ପଠଉଚି । ଦେଖିବୁ ଏଇ ବଇଶାଖରେ ନିଶ୍ଚେ—ନିଶ୍ଚେ ନଷ୍ଟୀର ବାହାଘର ହବ । (ପ୍ରସ୍ଥାନ)

[ ଲକ୍ଷ୍ମୀ ଘରର ସେଇ ଅଗଣା । ଦିନ ବଢ଼ିପାଇଚି । ସେଦିନ ମୁହଁ ତଳକୁ କରି ଲକ୍ଷ୍ମୀ ବସିଚି । ଅତି ସ୍ନେହ ଆଦରରେ ଲକ୍ଷ୍ମୀ କାନ୍ଧରେ ହାତ ପକେଇ ବସିଛି ସର । ]

ସର : କ'ଣ କହୁଚୁ କହ ?

ଲକ୍ଷ୍ମୀ : (ନୀରବ)

ସର : ଲକ୍ଷ୍ମୀ···

ଲକ୍ଷ୍ମୀ : (ତଥାପି ନୀରବ)

ସର : କ'ଣ ନିସ୍ତମ କରିଚୁ, ପାଟି ଫିଟାଇବୁ ନାଇଁ ?

ଲକ୍ଷ୍ମୀ : ତୁ ତ ଜାଣୁ, କଳଆଖୋରଣୀ ଝିଅ ମୁଁ ; ପାଟି ନଫିଟେଇ ରହିପାରେନାହିଁ ।

ସର : ତା'ହେଲେ ?

ଲକ୍ଷ୍ମୀ : ଏ କଥାରେ ମୋର କିଛୁ କହିବାର ନାହିଁ ।

ସର : କିଛୁ କହିବାର ନାହିଁ ?···କିଛୁ···

ଲକ୍ଷ୍ମୀ : ତୁ ଯାହା ଚାହିଁବୁ—ମୋ ପାଇଁ ତୁ ଯାହା କରିବୁ, ମୁଁ ସେଇ ବାଟରେ ଯିବି ।

ସର : ସତ କହୁଚୁ ଲକ୍ଷ୍ମୀ ?···ମୋ ମୁହଁକୁ ଚାହିଁଲୁ । (ଲୁହ ଛଳଛଳ ଆଖିରେ ମୁହଁ ଟେକି ଲକ୍ଷ୍ମୀ ସରକୁ ଚାହିଁଲା । ସର ତା'ର ଲୁହ ପୋଛି ଦଉଥାଏ ।)

ବରପାତ୍ର କୁଆଡ଼େ ଦ' ଦ' ଥର ମେଟ୍ରିକ ଫେଲ୍ହେଲା । ସମସ୍ତେ କହୁଚନ୍ତି ମୂର୍ଖଟାଏ । ସ୍ୱଭାବ ଚରିତ କଥା ତ···

ଲକ୍ଷ୍ମୀ : ମୋ' ସ୍ୱଭାବ କଥା ସେମାନେ ଜାଣିଚନ୍ତି ?

ସର : (କାନ୍ଦଉଠି) ଏ ଅଭିମାନିଆ କଥା ତୁ କାହିଁକି କହୁଚୁ କହିଲୁ ? ମୁଁ ତ କିଛି କରିପାରିଲି ନାହିଁ ତୋ' ପାଇଁ !···ଆଜି ବାପା ବୋଉ ଯଦି ବଞ୍ଚିଥା'ନ୍ତେ···

ଲକ୍ଷ୍ମୀ : ତୁ କାନ୍ଦନା ଅପା, ନାହିଁ ତୁ କାନ୍ଦନା । ଏ ସାରା ସଂସାରରେ ତୋ'ର ଏଇ ପଣତ ତଳ ଜାଣି ମୋର ଆଶ୍ରା । ତୁ ଏମିତି କାନ୍ଦିଲେ ମୁଁ ଆଉ କୋଉଠି ଆଶ୍ରା ପାଇବି ?

ସର : ଦେଖିଲୁ ତ, ତୋ' ଭିଣୋଇ ଲେଖିଚନ୍ତି— ଲକ୍ଷ୍ମୀ ଯଦି ଭଲ ମନରେ ହଁ ନ କହିବ ତେବେ ବାହାଘର ହବ ନାହିଁ ।

ଲକ୍ଷ୍ମୀ : ତାଙ୍କୁ ଲେଖିଦେ ଅପା—ବର ମୂଲିଆ ହଉ କି ମୂର୍ଖ ହଉ, ସେ କାନଗୋଇ ଘର ଜ୍ୱାଇଁ ହବ । ବାହାଘରବେଳେ କାନଗୋଇ ଘର ମାନ-ମହତ ଯେମିତି ତଳେ ନ ପଡ଼େ, ସେ କଥା ସେ ଆସି ବୁଝନ୍ତୁ । (ଉଠି ଠିଆହେଲା)

ସର : କୁଆଡ଼େ, ଗାଧୋଇ ଯାଉଚୁ ?

ଲକ୍ଷ୍ମୀ : ହଁ । (ଚାଲିଗଲା । ଟିକିଏ ପରେ ହର ଆସିଲା)

ହର : କଣ କରୁଚୁ ମା' ? ବସିଚୁ ? (ସର ପାଖରେ ବସି, ତା' ପିଠି ଆଉଁସି ଦେଇ) ସବୁ ତ ଠିକଣା ହୋଇଗଲା । ବରପକ୍ଷ ଷୋଳଣା ରାଜି । ଖାଲି ମହାପ୍ରସାଦ ନିରବନ୍ଧଟା ହେଇଗଲେ···

ସର : (ଈଷତ୍ ନିରୁତ୍ସାହ ସହିତ) ଆଜି ସ୍ୱା'ଙ୍କ ପାଖକୁ ଚିଠି ଲେଖିବି—ସେ ଆସିଲେ ନିର୍ବନ୍ଧ ହବ ।

ହର : ମନ ଊଣା କରୁଚୁ କି ? କାହିଁକି ? ଦେଖିବୁ, ସବୁ ଠିକ୍ ହେଇଯିବ ।··· ପୁଅପିଲାଟା, ପାଠପଢ଼ିଲା—ପରୀକ୍ଷା ଦେଲା—ଯୋଗର କଥା, ପାଶ୍ କରି ପାରିଲା ନାହିଁ । ପୁଣି ପରୀକ୍ଷା ଦେଲେ କଣ ପାଶ୍ କରିଯିବ ନାହିଁ ।···ହଁ, ଟିକିଏ ରାଗୀ । ରାଗୀ କଣ କି, ଟିକିଏ ବଦ୍‌ରାଗୀ । ଏମିତି ବେଳେବେଳେ ହାତ ଉଠେଇଦବ ।···ଆଉ ରହିବ ? ବାହାପାଣି ପଡ଼ିଯାଉ, ଦେଖିବୁ ସବୁ ପୂରଣ ହେଇଯିବ···ଲକ୍ଷ୍ମୀ କାହିଁ କି ?

ସର : ଗାଧୋଇ ଯାଇଚି ।

ହର : ଦେଖିଲି ଏକା ବାପରହୁଁଥ । ସେଇଦିନୁ ଆଉ ମୋ' ଗୁହାଳ ଦୁଆରମୁହଁ ଦେଖିଚି !

ସର : (ଉଠି ଠିଆହେଇ) କଲ୍ୟାଣ କର ନାନି ! ତା'ର ଭଲ ବୁଦ୍ଧି ହଉ···

ହର : ହଁ-ହଁ···ସେଇକଥା—ଠାକୁରେ ଏମିତି ଚାହିଁଥା'ନ୍ତୁ···

(ହାତଯୋଡ଼ି ମଥାରେ ଲଗାଇଲା)

[ ଏ ଭିତରେ ଦୁଇବର୍ଷ ବିତିଯାଇଚି । ଲକ୍ଷ୍ମୀ ଶାଶୁଘରୁ ତା' ଅପାଘରକୁ ଆସିଚି । ସାଧାରଣ ବିବାହିତା ବଧୂର ବେଶଭୂଷା । ଦେହର କାନ୍ତି ନଷ୍ଟ ଭି । ମୁଖମଣ୍ଡଳରେ ଦୁଃଖ ଓ ବେଦନାର ଗ୍ରସ୍ତ । ]

ସର : ଏଇ ସେ ଦିନର ସେ ବେତ ସେଇଠି ପଡ଼ିଚି । ତୁ ଆଜ ତୋ' ମନଇଚ୍ଛା ମତେ ଦଣ୍ଡ ଦେ ଲକ୍ଷ୍ମୀ ! ସେଦିନ ମୋ'ର କାଦରୁ ତୋର ଆଜ ଏ ଅବସ୍ଥା । ମୁଁ ଜାଣେ, କେବଳ ଅବହେଳାରୁ ତୋ' ଛୁଆ ତୋ' କୋଳ ଛାଡ଼ି ଚାଲି-ଯାଇଚି । ତୋର ହାତରେ ତୁ ମତେ ଦଣ୍ଡ ଦେ ଲକ୍ଷ୍ମୀ !

ଲକ୍ଷ୍ମୀ : ମୁଁ ତ ଆଉ କିଛୁ ଚାହୁଁ ନଥିଲି ଅପା—ଦି' ବର୍ଷ କାଳ ଦୁଃଖ କଷ୍ଟ ମାଡ଼ଗାଳି ସହି ସହି ଏ ଗ୍ରୁଡ ପଥର ହେଇଯାଇଥିଲି । ଯୋଉଦିନ ସେ ମୋ କୋଳକୁ ଆସିଲା, ସେଦିନ ମୁଁ ଜାଣିଲି, ମୁଁ ଦୁଃଖୀ, ଅଭାଗୀ ନୁହେଁ; ସେଇ ମୋର ସାତ ରାଜାର ସମ୍ପତ୍ତି । ହେଲେ ଅପା···(କାନ୍ଦୁଥାଏ)

ସର : କାନ୍ଦ କାନ୍ଦ ତୋ' ଆଖି ଫୁଟିଗଲେ ବି ତୋ ଦୁଃଖ ଘୁଞ୍ଚିବ ନାହିଁ । କଣ କହି ମୁଁ ତୋତେ ବୁଝେଇବି ? (ଟିକଏ ରହି) ତୋ ଭଣୋଇ ଆଜ ଚିଠି ଦେଇଛନ୍ତି ।

ଲକ୍ଷ୍ମୀ : କଣ ?

ସର : ଜ୍ୱାଇଁଙ୍କୁ ସେ ତାଙ୍କ ପାଖରେ ନେଇ ରଖିବେ । ପ୍ରଦିଙ୍କା କଣଚନ୍ଦ୍ର ତାକୁ ବାଟକୁ ଆଣିବେ । ମୋ ସୁନା ଲକ୍ଷ୍ମୀଟା ପରା—ତୁ ଅସ୍ଥ ଧର । ଠାକୁରଙ୍କୁ ଡାକ, ଦେଖିବୁ, ପୁଣି ତୋ କୋଳ ହସିଉଠିବ ।
(ପଡ଼ଶାଘରୁ ଗୋଟିଏ ନବଜାତ ଶିଶୁର କୁଆଁ କୁଆଁ ଶବ୍ଦ ଶୁଭିଲା । )

ଲକ୍ଷ୍ମୀ : କିଏ କାନ୍ଦୁଚି ଅପା, କାହା ଛୁଆ ?

ସର : ବାସ କଥା ତୁ ଶୁଣିନୁ ପରା ?

ଲକ୍ଷ୍ମୀ : କଣ ?

ସର : ଗଲା ବର୍ଷ ତ ତା'ର ବାହାଘର ହେଇଥିଲା । ଏଇ ବାର ଦିନ ତଳେ ତାର ପୁଅଟିଏ ହେଲା ।

ଲକ୍ଷ୍ମୀ : ଏଇଠି, ତାଙ୍କର ଘରେ ?

ସର : ହିଁ । ପଞ୍ଚୁଆତିଦିନ ସେଇ ଅନ୍ତୁଡ଼ିଶାଳରେ ବାସ ସନ୍ନିପାତରେ ମଲା ।

ଲକ୍ଷ୍ମୀ : ଆଉ ତା' ପୁଅ ?

ସର : ପୁଅ ଅଛି । ଡାକ୍ତର କୁଆଡ଼େ କହିଚନ୍ତି, ଛୁଆର ଅବସ୍ଥା ଯାହା, ମାସେ ଦେଢ଼ ମାସ ଖାଲି ମା'କ୍ଷୀର ଖାଇବ । ତା'ନହେଲେ···

ଲକ୍ଷ୍ମୀ : ଚାଲ ନାନୀ, ବାସ ପୁଅକୁ ମୁଁ ଦେଖିବି ।

ସର : ତୁ ଯିବୁ ତାଙ୍କ ଘରକୁ ?

ଲକ୍ଷ୍ମୀ : ଚାଲ ଅପା ତାଙ୍କ ଘରକୁ ଟିକଏ ଯିବା ।

ସର : କଣ ହେଲା ? ତୁ ତାଙ୍କ ଘରକୁ ଯିବୁ ?

ଲକ୍ଷ୍ମୀ : ହଁ, ଖୁଲ ।
ସର : ସେଇଦିନୁ ମୁଁ ସେମାନଙ୍କ ସାଙ୍ଗରେ ଭଲରେ କଥା କହେ ନାହିଁ କି ତାଙ୍କ ଦୁଆର ମାଡ଼େନାହିଁ । ମୋ ଆଖି ଆଗରେ ବାଛୁରିଟାକୁ ଶୁଖେଇ ଶୁଖେଇ ମାରଦେଲେ । ତୁ ତାଙ୍କ ଘରକୁ ଯିବାକୁ ପୁଣି କହୁଚୁ ?
ଲକ୍ଷ୍ମୀ : ହଁ, ଅପା ! ମୁଁ ଯିବି—ବାପର ପୁଅକୁ ଦେଖିବି ।
ସର : ହଉ, ଖୁଲ । (ଦୁହେଁ ଗଲେ)

[ ବାପ ଘରର ଅଗଣା । ସର ଓ ଲକ୍ଷ୍ମୀ ଆସିଲେ । ]

ଲକ୍ଷ୍ମୀ : ନାନୀ, ନାନୀ···(ଘରଭିତରୁ ଉର ବାହାରିଆସିଲା)
ଉର : ଇଲୋ ନକ୍ଷୀ—ନକ୍ଷୀ ତୁ ଆସିଚ ?
ଲକ୍ଷ୍ମୀ : ବାପର ପୁଅ କାହିଁ ନାନୀ—କେମିତି ଅଛି ?
ଉର : (ଘରଭିତରକୁ ଦେଖାଇ) ଏଇ ଦେଖ, କନ୍ଥାରେ କୁଆଡ଼େ ନାଖିଯାଇଚି । ବାର ଦିନର ମା'ଛେଉଣ୍ଡ ପୁଅ—ଜନ୍ମରୁ ମା' କ୍ଷୀର ଦେଖିନାହିଁ, ତା'ଠି ଆଉ କୋଉ ଆଶା ?
ଲକ୍ଷ୍ମୀ : ନାନୀ···ମୋର ଗୋଟିଏ କଥା ରଖିବ ନାନୀ ?
ଉର : କଣ ?
ଲକ୍ଷ୍ମୀ : ପୁଅକୁ ମୋତେ ଦିଅ—ମୁଁ ତାକୁ ପାଳିବି । ଡାକ୍ତର ଯାହାକହିଚନ୍ତି, ମୁଁ ଶୁଣିଚି ।
ସର : ଏ କଣ ତୁ କହୁଚୁ ଲକ୍ଷ୍ମୀ ?
ଲକ୍ଷ୍ମୀ : ହଁ ଅପା ! ତୁ ମନାକରନା—ଏ ପୁଅକୁ ମୁଁ ପାଳିବି ।
ଉର : ମୁଁ, ଯାହା କହନ୍ତି, ତତେ ଯମପୁରକୁ ଠେଲିଦେଇଥିଲି । ଆମର ପାଇଁ ତମ ବଉଳା ବାଛୁରି ମଲା । ତୁ ଏ ଶତ୍ରୁର ଛୁଆକୁ ପାଳିବୁ ?
ଲକ୍ଷ୍ମୀ : ହଁ ନାନୀ ! ଏ ପୁଅକୁ ମୁଁ ପାଳିବି—ନହେଲେ ଇଏ ବଞ୍ଚିବ କେମିତି ? ଭଗବାନ ମୋ ପୁଅକୁ ମୋ'ଠୁଁ ଛଡ଼େଇ ନେଇଚନ୍ତି—ହେଲେ ମୋ କ୍ଷୀରଭଣ୍ଡାର ତ ଶୁଖେଇ ଦେଇ ନାହାନ୍ତି ।
ଉର : ନକ୍ଷୀ କଥା ଶୁଣୁଚୁ ତ ସର ?
ସର : ଶୁଣୁଚି ନାନୀ ! ତା'ର କଥା ହଉ । ପୁଅ ତମର । ତାକୁ ସେ ନେଇ ପାଳୁ, ତାକୁ ବଞ୍ଚେଇରଖୁ । ଏଥିରେ ଠାକୁରେ ତାକୁ ଯୋଉ ଦୁଃଖ ଦେଇଚନ୍ତି, ସେ ଦୁଃଖ ସେ ଭୁଲିଯିବ । ପୁଅକୁ ତାକୁ ଦିଅ ନାନୀ, ସେ ନେଇ ପାଳୁ ।

[ଲକ୍ଷ୍ମୀର ହାତ ଧରି ଉର ତାକୁ ଘର ଭିତରକୁ ନେଇଗଲା । ]

□□

# ନପାନ୍ତୁ ରତି, ନମନ୍ତୁ ପତି

[କାଳ—ପୁରାଣ ଯୁଗ । ସ୍ଥାନ—ନଗରର ନଟୀ ସୁନ୍ଦରୀ ଲକ୍ଷହୀରାର ରଙ୍ଗଭବନ । ରାତ୍ର ଦ୍ୱିତୀୟ ପ୍ରହର ଉତ୍ତୀର୍ଣ୍ଣ ହୋଇଯାଇଛି । ଲକ୍ଷହୀରା ଗୀତ ଗାଉଛି । ତାର ଅନୁଚରୀ କାନ୍ତ ନୃତ୍ୟ କରୁଛି । ଉପସ୍ଥିତ ନଗରର ଦୁଇଜଣ ଶ୍ରେଷ୍ଠୀ—ଧନପତି ଓ ବିଦ୍ୟାପତି ।]

ଲକ୍ଷହୀରା—(ଗୀତ)
ହୀରା ଆଣିଛି ବନ୍ଧୁ,
ନୀଳା ଆଣିଛି ବନ୍ଧୁ,
ମାଣିକ ମେଳରେ ମୋତି ଆଣିଛ ବନ୍ଧୁ । ପଦ ।
(ଆଜି) ଚହଲ ପଡ଼ିଛି କଞ୍ଚ ରାଇଜ ଭରି,
ଯିବ ନୁହେଁ ମୋ ପାଦକୁ ସରଗପରୀ,
ଲକ୍ଷହୀରା ମୁଁ ତ ଲକ୍ଷ ହୃଦୟରାଣୀ
ରାଇଜର ରାଜା ଭୁଲେ ତା ପାଟରାଣୀ ।
ଲକ୍ଷେ ହୀରାର ଥାଳ
ଢାଳ ଚରଣେ ଢାଳ
ରଜନୀ ବିତିବ ରଖି ଅମର ମଧୁ । ୧ ।

ଧନପତି : ଦେବି ! ଦେବୀ ଲକ୍ଷହୀରା !

ଲକ୍ଷହୀରା : କୁହନ୍ତୁ ।

ଧନପତି : କହିବି ଯେ—କିନ୍ତୁ ମୁଁ ଯେମିତି କିଛୁ ବୁଝିପାରୁନାହିଁ ! ମୁଁ ଅଛି କେଉଁଠି ? ଏଇଟା କୋଉ ସ୍ଥାନ ?

ବିଦ୍ୟାପତି : ସତ କହୁଛନ୍ତି ଧନପତି ମହାଶୟ ? ବୁଝି ପାରୁନାହାନ୍ତି ?

ଧନପତି : ନା ବନ୍ଧୁ ବିଦ୍ୟାପତି—ମୁଁ ବୁଝିପାରୁନାହିଁ ।

ଲକ୍ଷହୀରା : କାଣେ, ବୁଝିପାରିବେ ନାହିଁ ।

(ଗୀତ) : ଏଇ ମୋ ରଙ୍ଗଭବନ, ଏ କେଳିପୁର
ଯମପୁରୀ ନୁହେଁ—ଅଳକାପୁର ।
ନୁହେଁ ରାଜବାଟୀ—ନୁହେଁ ରାଣୀ ଉଆସ
ଯାଜପୁର ନାହିଁ—ନାହିଁ ଜେମା ନିବାସ,

ଭାନୁମତ କୁହୁକ
ଜବାଫୁଲେ ମହକ
କେ ଜାଣିବ ଝରେ କାହୁଁ ମନର ମଧୁ
ସ୍ୱପ୍ନ ଆଣିଚ ବନ୍ଧୁ…… । ୨ ।

(ନୃତ୍ୟ ଗୀତ ବନ୍ଦ ହେଲା । ଧନପତି ବିସ୍ମୟରେ ନେଡରେ ଲକ୍ଷସ୍ୱପ୍ନକୁ ଗ୍ରୁହିଁ ରହିଥାନ୍ତି ।)

ବିଦ୍ୟାପତି : ଏବେ ବୁଝିଲେ ତ ଧନପତି ମହାଶୟ ?

ଧନପତି : ବୁଝିଲି । ଏବେ ଟିକିଏ ଦର୍ଶନର ଲାଳସା ରହିଲା ।

ଲକ୍ଷ : ଏଇତ…ମୁଁ ଆପଣଙ୍କ ସମ୍ମୁଖରେ । ମତେ ଦେଖୁଚନ୍ତି । ଆଉ କି ଦର୍ଶନ ?

ଧନପତି : ନୃତ୍ୟ ।

ଲକ୍ଷ : ଦେଖୁଥିଲେ ତ ମୁଁ ଗାଉଥିଲି—କାନ୍ତ ନାଚୁଥିଲା ।

ଧନପତି : ନା, ନା, କହୁଥିଲି—ଦେବୀଙ୍କ ପଦରଜ ।

ବିଦ୍ୟାପତି : କଣ କହିଲେ ! ପଦରଜ ! ଏଠି ଏ ମର୍ମର ଶାନ୍ତି ମୀ…ସ୍ଫଟିକର ଚଟାଣ । ଏଠି ପଦରଜ କାହୁଁ ଆସିବ ?

ଧନପତି : ଆହା, ତୁମେ ବୁଝିପାରିଲ ନାହିଁ ବିଦ୍ୟାପତି ! ମୁଁ କହୁଥିଲି ପଦରଜ ଅର୍ଥାତ୍…

କାନ୍ତ : ଆଜ ବସୁମାତା ରଜ ପାଳୁଚନ୍ତି । ଶ୍ରେଷ୍ଠ ଧନପତି କଣ ସେଇ ରଜ କଥା କହୁଚନ୍ତି ?

ଧନପତି : ନା, ନା, କାନ୍ତଦେବୀ ମୁଁ ସେକଥା କହୁ ନାହିଁ । ମୁଁ କହୁଥିଲି ଦେବୀ ଲକ୍ଷସ୍ୱପ୍ନ ଯଦି ଟିକିଏ ପାଦ ଉଠାନ୍ତେ—

ଲକ୍ଷ : ଓ ! ଆପଣ ମୋ ନୃତ୍ୟ ଦେଖିବେ ?

ଧନପତି : ଯଦି ସେତିକି ଅନୁଗ୍ରହ ଦେବୀଙ୍କର ହେବ ?

ଲକ୍ଷ : ନଗରୀର ନଟୀ ମୁଁ—ବାରାଙ୍ଗନା…ମୋ ରଙ୍ଗଶାଳାରେ ଗୋଟିଏ ରାତିର ରହଣି ପାଇଁ ଆପଣ ମତେ ଏକ ଲକ୍ଷ ସ୍ୱର୍ଣ୍ଣ ଦେଇଛନ୍ତି । ଆପଣଙ୍କ କଥା ମୁଁ ପୁଣି ରଖିବି ନାହିଁ !!

ଧନପତି : ଭାଗ୍ୟ…ଭାଗ୍ୟ…ମୋ ଭାଗ୍ୟ ! ଆପଣ ନୃତ୍ୟ କରିବେ…ଆଉ କାନ୍ତ ଗାଇବେ ।

କାନ୍ତ : ମୁଁ କି ଗୀତ ଗାଇବି ? ମତେ ତ ଭଲ ଗୀତ ଗାଇ ଆସେ ନାହିଁ । ଏଣୁ ତେଣୁ କ'ଣ ଗାଇଦେବି ।

ଧନପତି : ଆହା, ତୁମେ ଯାହା ଗାଇବ ତାହା ଅମୃତ !

କାନ୍ତ : ହଉ, ହେଲା ।

( ଧନପତଙ୍କ ନିର୍ବୋଧତାରେ ଅନ୍ୟମାନେ ଆମୋଦ ଅନୁଭବ କରୁଥାନ୍ତି । ଏଇ ଅବସ୍ଥାରେ କାନ୍ତି ଗୀତ ଗାଇଲା ଓ ଲକ୍ଷ୍ମୀପ୍ରିୟା ନୃତ୍ୟ କଲା । )

**କାନ୍ତି : (ଗୀତ)** କୋଇଲି ଡାକଲା କୁହୁ ଗୋ
ଚାରୁ ଚନ୍ଦ୍ର ବଦନ,
ଶୁଆ ଶାରୀ ଦୁହେଁ ମୁରୁକି ହସିଲେ,
ମୁହଁ ମୋଡ଼ିଦେଲା କାଉ ଗୋ
ଚାରୁ ଚନ୍ଦ୍ର ବଦନ । ୧ ।

**ଧନପତ :** ଆହା-ହା-ଅମୃତ-ଅମୃତ !

**କାନ୍ତି : (ଗୀତ)** କଳା କାଇଁଚର ପେଡ଼ି ଗୋ
ଚାରୁ ଚନ୍ଦ୍ର ବଦନ,
ପେଡ଼ିରୁ ବାହାରି ଜାନୁମତି ରାଣୀ
ଶୂନ୍ୟ ପଥେ ଯାଏ ଉଡ଼ି ଗୋ
ଚାରୁ ଚନ୍ଦ୍ର ବଦନ । ୨ ।

**ବିଦ୍ୟାପତି :** ଏ ଗୀତ ତୁମକୁ ଭଲ ଲାଗୁଚି ବନ୍ଧୁ ଧନପତ !

( ଲକ୍ଷ୍ମୀପ୍ରିୟାଙ୍କ ଓଷ୍ଠରେ ମୃଦୁ ହସ )

**ଧନପତ :** ତୁମେ ନିର୍ବୋଧ । ଚାହିଁ ଦେଖ, ଏ ଗୀତ ଶୁଣି ଶୁଣି ସୁନ୍ଦରୀ ରାଣୀ ଲକ୍ଷ୍ମୀପ୍ରିୟାଙ୍କ ଓଷ୍ଠାଧରରେ ଯାହା ଫୁଟିଉଠୁଚି—ତାହା ଅମୃତ ।

**କାନ୍ତି : (ଗୀତ)** ରାତି ଆସେ ପାହି ପାହି ଗୋ,
ଚାରୁ ଚନ୍ଦ୍ର ବଦନ
କି ବୁଦ୍ଧି କରିଲି ପରବାସ କଲି
ନିଜ ବାସେ ରହା ନାହିଁ ଗୋ,
ଚାରୁ ଚନ୍ଦ୍ର ବଦନ । ୩ ।

( ନୃତ୍ୟ ଗୀତ ଶେଷ ହେଲା )

**ଧନପତ :** ଆହା, ଅପୂର୍ବ···ଅପୂର୍ବ !

**ବିଦ୍ୟାପତି :** ଏଣେ ପୂର୍ବଦିଗକୁ ଚାହଁ, ରାତି ପାହିଲାଣି । ନିଜ ବାସରେ ରହା ମିଳିବ ନାହିଁ ଯେ ! ଉଠିଆସ । (ପ୍ରସ୍ଥାନ)

**ଧନପତ :** ହାୟ, ହାୟ ! ଏ ରାତି ଯଦି ନ ପାହୁଥା'ନ୍ତା !!

( ଅନିଚ୍ଛାସତ୍ତ୍ୱେ ବିଦାୟ ନେଲେ । ଲକ୍ଷ୍ମୀପ୍ରିୟା ଓ କାନ୍ତି ହସୁଥାନ୍ତି । )

[ ନଗର ଉପକଣ୍ଠରେ ଭିକାରି ବ୍ରାହ୍ମଣ ବିଷ୍ଣୁ ଦାସର ଜୀର୍ଣ୍ଣ କୁଟୀରର ବହିର୍ଭାଗ । ବିଷ୍ଣୁ ଦାସ ବୟସରେ ତରୁଣ । କିନ୍ତୁ ଉତ୍କଟ ବ୍ୟାଧିଗ୍ରସ୍ତ ହୋଇଥିବା ଯୋଗୁଁ ବିକଳାଙ୍ଗ । ସମୟ—ପ୍ରଭାତ । ବିଷ୍ଣୁ ଦାସ କୁଟୀର ଦ୍ୱାରରେ ଠିଆ ହୋଇ ଅତି ଉତ୍କଣ୍ଠାର ସହିତ ରାଜପଥକୁ ଚାହିଁ ରହିଚି । ବିଷ୍ଣୁ ଦାସର ଅସାମାନ୍ୟ ରୂପଲାବଣ୍ୟଭରା ସ୍ତ୍ରୀ ଅନସୂୟା ସୂର୍ଯ୍ୟଙ୍କୁ ପ୍ରଣାମ ଜଣାଇ ବନ୍ଦନା କରୁଚି । ]

**ଅନସୂୟା** : (ଶ୍ଳୋକ)

ଜବାକୁସୁମସଙ୍କାଶଂ କାଶ୍ୟପେୟଂ ମହାଦ୍ୟୁତିଂ
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋଽସ୍ମି ଦିବାକରଂ ।

(ଗୀତ) : ସପ୍ତାଶ୍ୱରଥବାହନ ହେ ପ୍ରଭୁ ସୂର୍ଯ୍ୟଦେବତା,
ଉଷାନାଥ ଗ୍ରହନାଥ ତମସାହରଣକର୍ତ୍ତା । ପଦ ।
ଏ ଦାସୀର ନମସ୍କାର,
ଘେନ ପ୍ରଭୁ ଦିବାକର
ପଙ୍କଜିନୀ ହୃଦନିଧି ସର୍ବମଙ୍ଗଳ କରତା । ୧ ।
ସ୍ୱାମୀ ମୋର ହୀନବୁଦ୍ଧି
ଦିଅ ତାଙ୍କୁ ସର୍ବସିଦ୍ଧି
ଏ କଳୁଷପଙ୍କୁ ବାରେ ଉଦ୍ଧାର କର ହେ ଧାତା । ୨ ।

**ଅନସୂୟା** : ସୂର୍ଯ୍ୟୋଦୟ ହେଲାଣି କେତେବେଳୁ । ଏ ଯାଏ ସୂର୍ଯ୍ୟଙ୍କୁ ନମସ୍କାର କରିନାହଁ । କ'ଣ, ଶୁଭୁନାହିଁ ମୋ କଥା ?

**ବିଷ୍ଣୁ** : (ମନକୁ ମନ) ଲକ୍ଷହୀରା, କିଏ ସେ ନିର୍ବୋଧ ଯିଏ ମାତ୍ର ଏକଲକ୍ଷ ହୀରାରେ ତମ ମୂଲ୍ୟ ନିରୂପଣ କରିଛି ?

**ଅନ** : କଣ କହୁଚ ପରା ମୁଁ ! ଯେତେ ଔଷଧ ମହୌଷଧି କଲେ ବି ତମର ଏ ଘା' ସବୁ ଭଲ ହେଲ ନାହିଁ । ସେଦିନ ଶମ୍ଭୁଗୋସେଇଁ କହିଗଲେ, ସକାଳୁ ଉଠି ସୂର୍ଯ୍ୟଙ୍କୁ ନମସ୍କାର କଲେ···

**ବିଷ୍ଣୁ** : ସେ କଥା ମୁଁ ଜାଣେ । ତୁ ଯା' ଏଠୁ !

**ଅନ** : ତୁମେ ଆସ···ମୁହଁ ହାତ ଧୋଇବ ।

**ବିଷ୍ଣୁ** : ଯା'···ମତେ ବିରକ୍ତ କରନାହିଁ ।

ଅନ : ହୁଁ ! ସଖୀ ମେଳରେ ଲକ୍ଷହୀରା ପ୍ରତିଦିନ ଏଇ ବାଟରେ ନଈଘାଟକୁ ଯାଏ । ଆଜି ବି ତ ଯାଉଚି—ଆଉ ତମେ ତା' ବାଟ ଚାହିଁ ଏଠି ଠିଆ ହୋଇ ରହୁଚ, ଆଖିରେ ତମର ପଲକ ପଡ଼ୁନି । କାହିଁକି ?

ବସ୍ତୁ : ତୁ ମୋର ସ୍ତ୍ରୀ—ମୋର କଙ୍କଣ, ଦାସୀ । ମତେ ଏ ପ୍ରଶ୍ନ ପଚାରିବାର ଅଧିକାର ତୋର ନାହିଁ ।

ଅନ : ସ୍ୱର୍ଗର ଅପସରାଠୁ ବଳି ସୁନ୍ଦରୀ ହେଲେ ବି ଲକ୍ଷହୀରା ଗୋଟାଏ ବାରନାରୀ··· ବେଶ୍ୟା···ତାର ମୁହଁ ଚାହିଁବା ପାପ—

ବସ୍ତୁ : ତୁନି ହ' । ସାଇପଡ଼ିଶା ପାଁ ଜଣ ତତେ ଖାସ୍ ସୁନ୍ଦରୀ ଆଉ ସତୀ କୁହନ୍ତି ବୋଲି ତୋର ଗର୍ବ ଖୁବ୍ ବଢ଼ିଯାଇଚି—ନା ?

ଅନ : ହେଲେ ସାଇପଡ଼ିଶା ଯାଏ କଥା ଯାଉଚି କାହିଁକି ? ମୁଁ ସୁନ୍ଦରୀ କି ଅସୁନ୍ଦରୀ ···ସତୀ କି ଅସତୀ···ସେକଥା ତମଠୁ ତ ଆଉ କେହି ବେଶି ଜାଣନ୍ତି ନାହିଁ । ପାଣି ଦଉଚି ଆସ, ଗାଧୋଇବ । (ଭିତରକୁ ଗଲା)

ବସ୍ତୁ : ମୁଁ ଧନହୀନ ଗରିବ । ଭିକ୍ଷା କରି ପେଟ ପୋଷେ । ଉତ୍କଟ ବ୍ୟାଧିରେ ମୋ ଦେହ ବିକଳାଙ୍ଗ ହୋଇଯାଇଚି । ମତେ ଦେଖିଲେ ଲୋକେ ଘୃଣା କରନ୍ତି । କିନ୍ତୁ ମୁଁ ଲକ୍ଷହୀରାକୁ ଦେଖି ପାଗଳ ହୋଇଯାଉଚି । ଲକ୍ଷହୀରା ବିନା ମୋ ଜୀବନରେ ଗତି ନାହିଁ—ମୁକ୍ତି ନାହିଁ ।

(କୁଟୀର ସମ୍ମୁଖ ଚଉପାଢ଼ୀରେ ଶୋଇଲା—ଅନସୂୟା ଆସିଲା ।)

ଅନ : ଏ କଣ—ତୁମେ ପୁଣି ଶୋଇଲଣି ଯେ ?

ବସ୍ତୁ : କ'ଣ ଆଉ କରିବି ?

ଅନ : ଗାଧୋଇସାରି, କ'ଣ ଦି'ଟା ମୁହଁରେ ଦେଇ···

ବସ୍ତୁ : (ବାଧାଦେଇ) ଓଃ, ସତେ ଯେମିତି ମୋପାଇଁ ଖଜା ମାଲପୁଆ କରି ରଖିଦେଇଚି ।

ଅନ : ହସି ହସି ତମର ସେବା କରି ପାରିଲେ ମୋ ହାତର ଖୁଦ ଚାଉଳ ଭଜା କ'ଣ ଖଜାପିଠା ସଙ୍ଗେ ସମାନ ନୁହେଁ ? ଆସ, ଗାଧୋଇ ସାରିଲେ ଭିକ୍ଷା କରି ଯିବ ।

ବସ୍ତୁ : ନା, ମୁଁ ଆଜି ଭିକ୍ଷା କରି ଯିବି ନାହିଁ ।

ଅନ : ଯିବ ନାହିଁ ? ଆଜି ଏ ବେଳା ଭିକ୍ଷା ନ ଆଣିଲେ ଆର ବେଳାକୁ ଯେ ଉପାସ ରହିବାକୁ ପଡ଼ିବ !

ବସ୍ତୁ : କହୁଚି ମୁଁ ଭିକ୍ଷା କରି ଯିବି ନାହିଁ—ଯିବି ନାହିଁ ।

ଅନ : ହଉ, ତମ ଇଚ୍ଛା ! (ପ୍ରସ୍ଥାନ)

[ଏ ମଧ୍ୟରେ ଢନ ଢନ ବଢଯାଇଛି । ବଷ୍ଟୁ ଦାସ ସେମିତ ଶୋଇରହିଚ ।]

ଅନ : (କାନ୍ଦି) ଢନ ଢନ ଢନ ସ୍ତବ୍ଧ ହୋଇଗଲା—ମୁହଁରେ ପାଣି ଟୋପାଏ ଢାଳନ—ଯେତେ ପଗୃଚଲେ କଛି କହୁନ ।

ବଷ୍ଟୁ : କାହାରକୁ ମୋର କଛି କହିବାର ନାହିଁ ।

ଅନ : ତମ ପାଦ ଧରି ଅଳି କରୁଚ—ମତେ କୁହ, କଣ ତମର ହୋଇଚ । କାହିଁକ ଏ କଷ୍ଟୁର ପଣ ତୁମେ କରଛ ?···କୁହ ।

ବଷ୍ଟୁ : ଶୁଣିବୁ ? ସେ ଧୈର୍ଯ୍ୟ ତୋର ଅଛି ?

ଅନ : ଯେତେ ଦନଯାଏ ତୁମେ ମୋ ପାଖରେ ଅଛ, ମୋର ଦମ୍ଭ ମୋର ଧୈର୍ଯ୍ୟ କେବେ ତୁଟିବ ନାହିଁ ।

ବଷ୍ଟୁ : ଶୁଣ ତା'ହେଲେ—ମୁଁ ଗୃହେଁ ଲକ୍ଷସ୍ୱାଗକୁ !

ଅନ : ଲକ୍ଷସ୍ୱାଗକୁ !!

ବଷ୍ଟୁ : ହଁ । ଲକ୍ଷସ୍ୱାଗକୁ ନ ପାଇଲେ ମୁଁ ବଞ୍ଚିପାରିବନାହିଁ । ସେଥିପାଇଁ ଏ ମୃତ୍ୟୁ-ପଣ ମୁଁ କରଚ ।

ଅନ : ନା-ନା, ଏ ପାପ—ଅନାଗୃର କଥା କୁହନାହିଁ ତୁମେ—କୁହନାହିଁ ।

( ଗୀତ )

ଏ କ ପଣ କର — ହେ ଜୀବନେଶ୍ୱର
ଯେନାକର ଦାସୀ ଗୁହାର,
ବାରନାରୀ ବାରାଙ୍ଗନା — ଭଲ କେବେ
ହେଇଚ କଜର କାହାର ? । ୦ ।
ଲକ୍ଷେ ସ୍ୱର୍ଗ ଯା'ର ଗୃତକର ମୂଲ
ଲକ୍ଷେ ସଂସାର ଯେ କରିପାରେ ଚୂର
ତାହାଲାଗି ତୁମେ — ସଂସାରି ପୁରୁଷ
ଯାଉଚ ସଂସାରୁ ବାହାର । ୧ ।

ବଷ୍ଟୁ : ତୁ ଗୃଲଯା—ଗୃଲଯା ଏଠୁ ! ମୋ ପ୍ରତଜ୍ଞାରୁ କେହି ମୋତେ ଟଳାଇ ପାରିବ ନାହିଁ । ତୁ ଗୃଲଯା !

(ଗୀତ)

ଯେ' ପଣ କରିଚ, ଜୀବନ ବକଚ
ପାରିବ କେ ତାହା ରୋଧ କରି ?

କରିଛୁ ଶପଥ ଛନବାର ସତ୍ୟ
ମୋ ଇଷ୍ଟ ଦେବତା ନାମ ସ୍ମରି । ୦ ।
ଲକ୍ଷହୀରା ଲକ୍ଷରମଣୀ-ମଣି ସେ,
ମୋ ଜୀବନ-ଗଗନ ଧ୍ରୁବତାରା,
ସେହ୍ମ ମୋ ସଂସାର, ସେହ୍ମ ମୋ ଈଶ୍ୱର
ଗଢ଼ ମୁକ୍ତ ମୋ ଜୀବନଡଙ୍ଗା । ୧ ।
ମୁଁ ଦୀନ କାଙ୍ଗାଳ, ନାହିଁ ମୋ ସମ୍ବଳ
ଦେଇପାରିବନି ତାର ମୂଲ,
ବଞ୍ଚିବାର ଆଶା ତୁଟାଇ ଦେଇଚି
ମରଣ ପଥ ମୁଁ ନେଲି ବରି । ୨ ।

**ଅନ :** ଏଇ ତେବେ ତମ ମନର କଥା !

**ବଷ୍ଟୁ :** ହଁ । ମୁଁ ଜାଣେ, ମୁଁ ଲକ୍ଷହୀରାର ଯୋଗ୍ୟ ନୁହେଁ । ମୁଁ ତାକୁ ପାଇପାରିବି ନାହିଁ । ସେଇଥିପାଇଁ ମୁଁ ପଣ କରିଚି—ଏମିତି ନ ଖାଇ ନ ପିଇ ଶୁଖି ଶୁଖି ମରିବି ।

**ଅନ :** ନା ! (ଅନସୂୟାର ସ୍ୱର ଦୃଢ଼ତାବ୍ୟଞ୍ଜକ)

**ବଷ୍ଟୁ :** ନା ?

**ଅନ :** ଲକ୍ଷହୀରାକୁ ତୁମେ ପାଇବ ।

**ବଷ୍ଟୁ :** ଏଁ, ତୁ କଣ କହୁଚୁ ଅନସୂୟା ?

**ଅନ :** ଠିକ୍ କହୁଚି । ନାରୀର ସେବା ଆଉ ତ୍ୟାଗ ନିକଟରେ ଏ ସଂସାରରେ କିଛୁ ଅସମ୍ଭବ ନୁହେଁ । ତୁମେ ଲକ୍ଷହୀରାକୁ ପାଇବ—ଆଉ ମୁଁ ପାଇବି ମୋ ସ୍ୱାମୀଙ୍କ ଜୀବନ ।

**ବଷ୍ଟୁ :** ଅନୁ !! (ବଷ୍ଟୁ ଦାସର ମୁଖମଣ୍ଡଳରେ ବିସ୍ମୟ ଓ ଆନନ୍ଦର ଚିହ୍ନ)

[ ଲକ୍ଷହୀରାର ବାସଭବନର ସମ୍ମୁଖଦ୍ୱାର ]

**ଲକ୍ଷ :** ଆଲେ କାନ୍ତୁ, ଆଜି କଣ ସିଏ ପୁଣି ଆସିଚି ?

**କାନ୍ତୁ :** ହଁ, ଦେବି ! ଆଜି ବି ରାତି ନପାହୁଣୁ ଆସି ଦାଣ୍ଡଦୁଆର ବାରଦୁଆର ସବୁ ଖରିକଲଣି ।

**ଲକ୍ଷ :** ଡ଼ାକିଲୁ ଦେଖେ ।

କାନ୍ତ : ଆସ···ଏଇ ଦେଖ ।

( ଲକ୍ଷହୀରା ଦେଖିଲା ହାତରେ ସମ୍ମାର୍ଜ୍ଜନୀ ଧରି ଅନସୂୟା ବାହାର ଅଗଣା ଖରଳୁଛି ।)

ଲକ୍ଷ : ଆହା, ଏଡ଼େ ସୁନ୍ଦରୀ ସ୍ତ୍ରୀ ତ ମୁଁ କେବେ କୋଉଠି ଦେଖି ନ ଥିଲି ! ଏ ସୁନ୍ଦର ରୂପ—ଏ ସୁକୁମାର ତନୁଲତା—ପୁଣି ଉଚ୍ଚ କୁଳର ବୋହୂ ଭଳି ଜଣାଯାଉଛି । ଅଥଚ ହାତରେ ଝାଡ଼ୁ ଧରି ମୋ ଦୁଆର ଖରଳୁଛି କାହିଁକି ? (ଅନସୂୟାକୁ) କିଏ ତୁମେ ଭଉଣୀ—କୁହ ତୁମେ କିଏ ? କାହିଁକି ଆସି ମୋର ଏ ସେବା କରୁଛ ?

ଅନ : ତମର ଏ ସୁନ୍ଦର ରୂପକୁ ଏତେ ପାଖରେ କେବେ ଦେଖି ନଥିଲି, ଆଗେ ଥରେ ଆଖି ପୂରେଇ ଦେଖିସାରେ !

ଲକ୍ଷ : ମୁଁ ସୁନ୍ଦରୀ ସତ—ହେଲେ ଆକାଶରେ ଚନ୍ଦ୍ର ଉଇଁଲେ କୁଆଁ ତାରାର ତେଜ ମଉଳିଯାଏ ।

ଅନ : ମାତ୍ର ଚନ୍ଦ୍ରର ଦୁର୍ଭାଗ୍ୟ ତା ଜୀବନରେ ଆସେ ଅମାବାସ୍ୟା—ଠିକ୍ ଯେମିତି ମୋ ଜୀବନ-ଆକାଶରେ ଆଜି ଅମାବାସ୍ୟାର ଅନ୍ଧାର ଘୋଟିଆସିଛି ।

ଲକ୍ଷ : କିଏ ତୁମେ—କଣ ହେଇଛି ତମର ?

ଅନ : ତମେ ନଦୀକୁ ଗାଧୋଇଯିବା ବାଟରେ ଭଗବତୀ ମନ୍ଦିର ପଛ ଭଙ୍ଗା କୁଡ଼ିଆର ଦୁଆର ମୁହଁ ଧରି ଯୋଉଁ ଭିକାରି ବ୍ରାହ୍ମଣ ଜଣକ ତମ ବାଟ ଚାହିଁ ଠିଆହୋଇଥାଏ···

ଲକ୍ଷ : ବୁଝିଲି । ପ୍ରତିଦିନ ଏକଲୟରେ ସେ ମୋତେ ଚାହିଁ ରହିଥାଏ ।

କାନ୍ତ : ଇହି, କି ବକଲାଙ୍ଗ ଅସନା ରୂପ ସେଇଟାର ।

ଅନ : ସେଇ ମୋର ସ୍ୱାମୀ । ମୋ ନାଁ ଅନସୂୟା ।

ଲକ୍ଷ : ତୁମେ—ତୁମେ ତାର ସ୍ତ୍ରୀ ! କାଇଁ ତୁମକୁ ତ ମୁଁ କେବେ ଦେଖିନି ସେଠି ?

ଅନ : ଦେଖିବ କେମିତି ? ମୁଁ ଉଚ୍ଚ କୁଳର ବୋହୂ । ତମ ମୁହଁ ଚାହିଁବା ତ ମୋର ଉଚିତ ନୁହେଁ ।

କାନ୍ତ : ହେଁ, କଣ ଏମିତି ବଡ଼ ବଡ଼ କଥାକହୁଚୁ ? ଚାଲିଯା' ଏଠୁ ।

ଅନ : ମତେ ଭଉଣୀ ବୋଲି ଡାକିଚ ଲକ୍ଷହୀରା—ଶୁଣିବ ନାହିଁ ମୋ କଥା ?

ଲକ୍ଷ : ଶୁଣିବି । କୁହ, ସ୍ୱାମୀ ତମର କାହିଁକି ପ୍ରତିଦିନ ଏକ ଲୟରେ ମୋତେ ଚାହିଁରହନ୍ତି । ଦରିଦ୍ର ବୋଲି ମୋ'ଠାରୁ କ'ଣ କିଛି ଭିକ୍ଷା ଚାହାନ୍ତି ?

ଅନ : ନା !

ଲକ୍ଷ : ତେବେ ? କଣ ସେ ଚାହାନ୍ତି ?

ଅନ : (ଗୀତ)      ଅଘଟନ କଥା କହୁଚ
                    ଶୁଣ ସୁଦସ୍ୟା ବନ୍ଧୁ,
ଅଭାଗିନୀ ମୁଁ ଯେ ଦୁଃଖିନୀ
                    ପ୍ରାଣ ହୁଏ ମୋ ଦନ୍ଧ । ୧ ।
ଦେଖି ତୁମ ରୂପଲାବଣ୍ୟ
                    ସ୍ୱାମୀ ପାଗଳ ପ୍ରାୟ,
ବୁଝିମନ କହୁ କଥା ଯେ
                    କହୁ ନ୍ୟାୟ ଅନ୍ୟାୟ । ୨ ।

ଲକ୍ଷ : ତମର କଣ ହିତାହିତ ଜ୍ଞାନ ଲୋପ ପାଇଲାଣି ଅନସୂୟା ! ତୁମେ ବ୍ରାହ୍ମଣ କୁଳର ସ୍ତ୍ରୀ ନା ?

(ଗୀତ)      ଏ'କ ବିବେଚନା ତୁମର
                    ତୁମେ କୁଳର ବୋହୂ,
ଏଠାକରେ ରହୁ ଏ କଥା
                    ଆଉ ପ୍ରଘଟ ନୋହୁ । ୩ ।
ସ୍ୱାମୀ ତୁମ ସବ ଦେବତା
                    ସବ କରମେ ସାର,
ପର ନାରୀଠାରେ ବଖାଣ
                    କପାଁ ତାଙ୍କ ବେଭାର । ୪ ।

ଅନ : କ୍ଷମ ଅପରାଧ ଦେବୀ ଗୋ
                    ମୋର ଅଛୁ କି ସ୍ୱର,
ତୁମେ ତାଙ୍କ ଗଳା-ମୁକତା
                    ତାଙ୍କ ହୃଦୟ-ହାର । ୫ ।
ତୁମେ ଯେବେ ପ୍ରାପ୍ତ ନୋହିବ,
                    ଦେବେ ଜୀବନ ବଳି,
ଏ ଦୁଃଖରୁ ସିନା ସେ ଦୁଃଖ
                    ମୋର ଯାଉଚି ବଳି । ୬ ।

ଅନ : ପଣ କରିଚନ୍ତି—ତମକୁ ନ ପାଇଲେ ନ ଖାଇ ନ ପିଇ ଶୁଖି ଶୁଖି ମରିବେ । ସେଥିପାଇଁ ହାତରେ ଝାଡ଼ୁ ଧରି—ସ୍ନାନ ଚଣ୍ଡାଳୁଣୀ ପରି ମୁଁ ତମର ସେବା କରୁଚି । ମତେ ତମେ ଦୟାକର ।

ଲକ୍ଷ : ତୁମେ ଭୁଲ କରୁଚ ଅନସୂୟା—ତୁମେ ଭୁଲିଯାଉଚ ମୋ ଅବସ୍ଥା ଆଉ ତୁମ ଅବସ୍ଥାର କଥା ।

(ଗୀତ) ରାଜା ମହାରାଜା ସାମନ୍ତ
ଶ୍ରେଷ୍ଠୀ ବଣିକକୁଳ,
ପାଦତଳେ ଯାର ଲୋଟନ୍ତି
ଯାହା ପାଇଁ ଆକୁଳ । ୭ ।
ସେ ଦେଲ ତମକୁ ଯେବେ ତା'
ଉଦ୍ଧଣୀର ଆସନ,
ଏଇ ଫଳ ଦେଲ !! ଫେର ଯା'
ଏବେ ନିଜ ଭବନ । ୮ ।

ଅନ : ଏମିତି ଖାଲି ହାତରେ ମୁଁ ତମ ପାଖରୁ ଫେରିଯାଇ ପାରିବ ନାହିଁ ଲକ୍ଷ୍ମୀରାଣୀ ! ଧନପତିମାନଙ୍କ ପାଇଁ ତମ ଦୁଆର ରାତିକ ସକାଶେ ବନ୍ଦ ହେଲେ ତମ ରତ୍ନଭଣ୍ଡାର କିଛି ଊଣା ହୋଇଯିବ ନାହିଁ । ହେଲେ ମୋ' ସ୍ୱାମୀ ଯଦି ତୁମକୁ ନ ପା'ନ୍ତି ତେବେ ମୋ ସଂସାର ଉଚ୍ଛନ୍ନ ହୋଇଯିବ । ମୁଁ ହେବି ବିଧବା—ଅଲକ୍ଷଣୀ ।

ଲକ୍ଷ୍ମୀ : ମୋ କଥା ମୁଁ କହିସାରିଛି ।

ଅନ : ନା-ନା, ମତେ ଦୟାକର !

କାନ୍ତ : ଏଇଟା କଥା କାହିଁକି ଶୁଣୁଛ ମ ଦେବୀ ! ସିଏ ସେମିତି ହଉଥାଉ, ତମେ ଭିତରକୁ ଚାଲ ।

ଅନ : ଲକ୍ଷ୍ମୀରାଣୀ, ଥରେ ଚାହିଁ ମତେ—ଦୟାକର ! ସବୁ ବିଧିବିଧାନକୁ ପଛରେ ପକାଇ ମୁଁ ତମ ଦ୍ୱାରକୁ ଧାଇଁ ଆସିଛି—ତମ ସେବା କରିଛି । କହିବ ତ ତମ ପାଦସେବା କରିବି । ତମ ବସ୍ତ୍ର ପଖାଳିବି । (ଅନସୂୟାର ଏ କାତର ପ୍ରାର୍ଥନାରେ ଲକ୍ଷ୍ମୀରାଣୀ ବିଚଳିତା ହୋଇଉଠିଲେ । )

ଲକ୍ଷ୍ମୀ : ଅନସୂୟା···

ଅନ : ଦୟାକର ଦେବୀ, ମୋ ସ୍ୱାମୀଙ୍କୁ ବଞ୍ଚାଅ !

ଲକ୍ଷ୍ମୀ : ମୁଁ ରାଜି, ଅନସୂୟା !

କାନ୍ତ : ଦେବୀ !

ଲକ୍ଷ୍ମୀ : ମୁଁ କଥା ଦେଉଛି । ଆଜି ରାତିରେ ତମ ସ୍ୱାମୀ ମୋର ଅତିଥି ହେବେ— ତମେ ଯାଅ ।

ଅନ : ତମର—ତମର ଜୟ ହେବ ଲକ୍ଷ୍ମୀରାଣୀ ! ତମେ ସୌଭାଗ୍ୟବତୀ ହୁଅ । (ପ୍ରସ୍ଥାନ)

[ ଲକ୍ଷ୍ମୀଶ୍ୱରର ରଙ୍ଗଭବନ । ସମୟ—ରାତ୍ରି । ଉପସ୍ଥିତ ଧନପତି ଓ ବିଦ୍ୟାପତି । ଦୁହିଁଙ୍କ ଅବସ୍ଥାରୁ ଜଣାଯାଏ ଯେ ଦୁହେଁ ଅତି ଉତ୍କଣ୍ଠାର ସହିତ ଲକ୍ଷ୍ମୀଶ୍ୱରର ଆଗମନକୁ ଅପେକ୍ଷା କରି ରହିଛନ୍ତି; କିନ୍ତୁ ଲକ୍ଷ୍ମୀଶ୍ୱର ନ ଆସିବାରୁ ଦୁହେଁ ବେଳକୁବେଳ ଅସ୍ଥିର ଓ ହତାଶ ହୋଇ-ପଡ଼ୁଛନ୍ତି । ]

ଧନପତି : ଜୟ ବନ୍ଧୁ ବିଦ୍ୟାପତି !

ବିଦ୍ୟାପତି : ଜୁହନ୍ତୁ ଧନପତି ବନ୍ଧୁ !

ଧନ : କଣ ଦେଖୁଛନ୍ତି ?

ବିଦ୍ୟା : ଆପଣ ଯାହା ଦେଖିପାରୁନାହାନ୍ତି ।

ଧନ : ମୁଁ ତ ଲକ୍ଷ୍ମୀଶ୍ୱରଙ୍କୁ ଦେଖିପାରୁ ନାହିଁ !

ବିଦ୍ୟା : ଓଃ !

ଧନ : ଆପଣ ତାଙ୍କୁ ଦେଖୁଚନ୍ତି କି ?

ବିଦ୍ୟା : ସେ କଥା ଆପଣ ଜାଣି ଲାଭ କଣ ?

ଧନ : ତା ଅର୍ଥ ଆପଣ ଯାହା ଦେଖୁଚନ୍ତି ମୁଁ ତାହା ଦେଖିପାରୁନାହିଁ ।

ବିଦ୍ୟା : ତାହା ହିଁ ମୁଁ ଖୋଜୁଚି ।

ଧନ : ଗୁଡ଼ନ୍ତୁ—ଆପଣ ମିଛ କହୁଚନ୍ତି । ଲକ୍ଷ୍ମୀଶ୍ୱର ଏ ଯାଏଁ ରଙ୍ଗଭବନକୁ ଆସିନାହାନ୍ତି ।

ବିଦ୍ୟା : ଏତେବେଳକେ କଥାଟା ତା' ହେଲେ ଆପଣଙ୍କର ବୋଧଗମ୍ୟ ହେଲା ।

ଧନ : ଲକ୍ଷ୍ମୀଶ୍ୱରଙ୍କର ଏ ଅନ୍ୟାୟ । ଏତେବେଳ ହେଲଣି, ଆମେ ଅପେକ୍ଷା କରି ବସିଛୁ—ସେ ଆସୁନାହାନ୍ତି ।

ବିଦ୍ୟା : କଣ ତେବେ କରିବା ?

ଧନ : ଯେତେ ଚେଷ୍ଟା କଲେ ବି ଖାଲି ହାଇମାରିବା ଛଡ଼ା ଆଉ କିଛି କରିପାରୁ ନାହିଁ । ଏଇ ଆସିଲେ !

ବିଦ୍ୟା : ଆସିଲେ ?

ଧନ : ଏଇ ଦେଖନ୍ତୁ, ପରଦା ସେ ପାଖରେ ।

ବିଦ୍ୟା : ସେ ନୀଳ ପରଦା ?

ଧନ : ନା !

ବିଦ୍ୟା : ତା' ସେପଟକୁ ସେ ସବୁଜ ପରଦା ?

ଧନ : ନା !

ବିଦ୍ୟା : ତା’—ତା’ ସେପଟକୁ ସେ କେଉଁଠି ପରଦା ?
ଧନ : ହଁ, ଦେଖନ୍ତୁ—ପରଦା ତଳ ଅଂଶଟା ଅଳ୍ପ ଅଳ୍ପ ହଲୁଚି ।
ବିଦ୍ୟା : ତା’ ଅର୍ଥ ?
ଧନ : ଦେବୀ ଆସିବେ ଆସିବେ ହଉଚନ୍ତି, ଅଥଚ ଆସି ପାରୁନାହାନ୍ତି ।
ବିଦ୍ୟା : ତା’ହେଲେ ?
ଧନ : ମୋର ଗୀତଟିଏ ଗାଇବାକୁ ମନ ବଳୁଚି ।
ବିଦ୍ୟା : ମୋର ଶୁଣିବାକୁ ମନ ବଳୁଚି—ଗା’ନ୍ତୁ ।
ଧନ : (ଗୀତ) ସେ ପଟର ମାୟା ଭୁଲି

ଏ ପଟକୁ ଆସ ବାରେ

କଟ କଟ କଟିଦେଶ

ବସି ବସି ହାଇ ମାରେ...

ଝାଲି, ବସି ବସି ହାଇମାରେ । ୦ ।

ମଠ ମଠ କର ଯେତେ ଛଟପଟ ହୁଏ ଯେତେ

ଉଙ୍କୁଟିବ ନାହିଁ ଜବା,

ନାଲି ଓଠେ ହସ ଧାରେ । ୧ ।

କରୁଚ କଅାଁ କପଟ—ମାରୁଚ କଅାଁ ଚମଟ

କେତେ ହେବ ଭଟ ଭଟ

ଶୁଖି ତ ଯାଉଚି କଣ୍ଠ

ଦାନ୍ତ ମୂଳ ରଟ ରଟ

ଗୁଣ୍ଡିଯାଉଅଛୁ ଘଟ ।

ବିଦ୍ୟା : (ବାଧାଦେଇ) ବନ୍ଦ ଧନପତ୍ତ !
ଧନ : ଆରେ ଯାଃ ହଟ ହଟ !

ନବୀତଟ ଅଳ୍ପବଟ

ଶେଷକୁ ଆଶ୍ରୟ ମଠ

ତାରେ ତାରେ ନାରେ ନାରେ

ତାରେ ତାରେ ନାରେ ନାରେ । ୨ ।

ବିଦ୍ୟା : ଏଇ ଆସିଲେ !
ଧନ : ମୁଁ ଜାଣିଥିଲି, ମୋ’ ଗୀତ ଶୁଣି ଦେବୀ ନ ଆସି ରହିପାରିବେ ନାହିଁ ।

( ଲକ୍ଷହୀରାର ପ୍ରବେଶ )

ଲକ୍ଷ : ମତେ କ୍ଷମା କରିବେ !

ଧନ : ଆହା, ବନ୍ଧୁ ଆଗରୁ ସେ ଅଡ଼ୁଆ ତୁଟିଯାଇଚ । ଏଇ ଦେଖ ଦେଖ, ଏକଲକ୍ଷ ହୀରାର ଏ ଥଳି ।

ବିଦ୍ୟା : ମୁଁ କବି—ହୀରା ଦବାର କ୍ଷମତା ମୋର ନାହିଁ । ସେଥିପାଇଁ ଏକଲକ୍ଷ ଶ୍ଳୋକ ମୁଁ ରଚନା କରି ଆଣିଚି ।

ଲକ୍ଷ : ଆଗେ ଶୁଣନ୍ତୁ ମୋ' କଥା ।

ଧନ ଓ ବିଦ୍ୟା : ତା' ପୂର୍ବରୁ ଆମ କଥା ଶୁଣ ଦେବ !

( ଗୀତ )

ଧନ : ପାଟବସନ ଥଳିରେ ଏକଲକ୍ଷ ହୀରା
ଘେନାକର ଶ୍ରୀହସ୍ତରେ ଦେବୀ ଲକ୍ଷହୀରା । ୧ ।

ବିଦ୍ୟା : ଭୂର୍ଜ ପତ୍ରେ ଲେଖିଚି ମୁଁ ଶ୍ଳୋକ ଏକଲକ୍ଷ
ଛୁଟାଇଚି ନେତ୍ରୁ ନୀର ଫଟାଇଚି ବକ୍ଷ । ୨ ।

ଧନ : ହୀରାକୁନ୍ଦ ହୀରା ଏହି ଦଶଟି ହଜାର
ଦେଖି ଗୁଡ଼ ଫାଟିଗଲା ସେ ଦେଶ ରଜାର । ୩ ।

ବିଦ୍ୟା : ଏହି ଶ୍ଳୋକେ ଅଛୁ ମୋର ଅତି ଗୁଢ଼ ଛନ୍ଦ
ବିରହର ବିଷଜ୍ୱାଳା ମିଳନର ଗନ୍ଧ । ୪ ।

ଧନ : କମ୍ବୁ ଦ୍ୱୀପ ହୀରା ଇଏ ଜମ୍ବୁ ଦ୍ୱୀପେ ସାର
ଗଢ଼ା ଆଣିଚି ଏଥିରେ ସାତ ସର ହାର । ୫ ।

ବିଦ୍ୟା : ଗନ୍ଧମାର୍ଦନ ଚୂଡ଼ାରେ ପଦ୍ମାସନେ ବସି
ଏ ଶ୍ଳୋକ ମୁଁ ବିରଚିଲି ସାକ୍ଷୀ ତାରା ଶଶୀ । ୬ ।

ଧନ : ସାତ ସମୁଦ୍ର ସେପଟୁ ଏ ହୀରା ଆଣିଚି

ବିଦ୍ୟା : ସାତତାଳ ପଙ୍କେ ପଶି ଏ ଶ୍ଳୋକ ଭଣିଚି । ୭ ।

ଧନ : ଏ ହୀରା ମୁଁ ଆଣିଅଛୁ—

ବିଦ୍ୟା : ଏ ଶ୍ଳୋକ ମୁଁ ଲେଖିଅଛୁ—

ଲକ୍ଷ : ଶୁଣନ୍ତୁ—ଶୁଣନ୍ତୁ ମୋ' କଥା ! ଆପଣମାନଙ୍କ ହୀରା ଓ ଶ୍ଳୋକ ନେଇ ଆପଣମାନେ ଫେରଯାନ୍ତୁ !

ଧନ ଓ ବିଦ୍ୟା : କାହିଁକି ?

ଲକ୍ଷ : ଏଇ ଦେଖନ୍ତୁ ସେ ଘରେ ଯିଏ ବସିଚନ୍ତି—

ଧନ : (ଭିତରକୁ ଚାହିଁ ଦେଖି) ସେଇ ବକଲାଙ୍ଗ ଭିକାରି ବ୍ରାହ୍ମଣ ବିଷ୍ଣୁ ଦାସ !

ଲକ୍ଷ : ହଁ, ସେଇ ବିଷ୍ଣୁ ଦାସ ଆଜି ମୋର ଅତିଥି !

ଧନ : ନା-ନା-ଲକ୍ଷହୀରା...

ଲକ୍ଷ : କହିଲି ପରା ଆପଣମାନେ ଯା'ନ୍ତୁ !

ବନ୍ଦ୍ୟା : ଆସନ୍ତୁ ଧନପତି ମହାଶୟ, ଉଠନ୍ତୁ !
ଧନ : କନ୍ତୁ ଯିବା କୁଆଡ଼େ ? ଅଦ୍ୟ ରାଜରେଜ ସ୍ୱଗୃହ ପ୍ରତ୍ୟାବର୍ତ୍ତନର ବାସନା ମୋର ନଥିଲା ।
ବନ୍ଦ୍ୟା ! ମଠ—ଯୋଉ ମଠ···ଗୀତ ଗାଉଥିଲେ !
ଧନ : ଚାଲନ୍ତୁ—ଏବେ ମଠ ହିଁ ଆମ ଆଶ୍ରୟ ।
ଲକ୍ଷ : କାନ୍ତ ! ( ଦୁହିଁଙ୍କର ପ୍ରସ୍ଥାନ )

( କାନ୍ତର ପ୍ରବେଶ )

କାନ୍ତ : ଦେବ !
ଲକ୍ଷ : ଅନସୂୟା କଣ କରୁଚି ?
କାନ୍ତ : ଭିତର ଅଳିନ୍ଦରେ ବସିଚନ୍ତି—ଡାକିବ ?
ଲକ୍ଷ : ନା, ବସ୍ତୁ ଦାସଙ୍କୁ ଆସିବାକୁ କୁହ ।
( ଟିକିଏ ପରେ ବସ୍ତୁ ଦାସ ଆସିଲେ । ସେ ବିବ୍ରତ ବିହ୍ୱଳିତ । )
ଲକ୍ଷ : ଆସ ଏଇଠି—ଏଇଆସନରେ ବସ । ଏ କଣ ? ତୁମେ ଏମିତି ଥରୁଚକାହିଁକି ?
ବସ୍ତୁ : ନା'ତ—ନା'ତ !
ଲକ୍ଷ : ନା !! ଏଇ ତ, ତମ ମୁହଁରେ ବିନ୍ଦୁ ବିନ୍ଦୁ ଝାଳ ଦେଖା ଦେଲଣି ! ଓ ବୁଝିଲି ମୋର ଏ ବେଶ ଭୂଷା—ସାଜ ସଜ୍ଜା ଦେଖି ତମର ବୋଧହୁଏ ଏଣୁ ତେଣୁ ଭ୍ରମ ହେଉଚି । କଣ କରିବ କୁହ—ଏଇଟା ତ ଆମ କୁଳର କଥା ! କେତେ କେତେ ରାଜା, ଧନୀବଣିକ ଏଠିକି ଆସୁଚନ୍ତି । ସେମାନଙ୍କ ମନ ନେବାକୁ ହେଲେ···କଣ ଶୋଷ ହେଉଚି ? ପାଣି ପିଇବ ?
ବସ୍ତୁ : ହଁ, ଟିକେ ପାଣି ପିଇବି ।
ଲକ୍ଷ : ହଉ ଆଣୁଚି ! ( ପ୍ରସ୍ଥାନ )
ବସ୍ତୁ : ( ମନକୁମନ ) ମୁଁ ବୁଝି ପାରୁ ନାହିଁ କଣ ମୁଁ କରିବି ! ମନରେ ଯେଉଁ ଆଶା, ଯେଉଁ ବାସନା ନେଇ ଏଠିକି ଆସିଥିଲି—ଏଠି ଆସି ଦେଖୁଚି ସେ ସବୁ ଯେମିତି ସ୍ୱପ୍ନ ମାୟା···
( ହାତରେ ଦୁଇଟି ପାଣିଭର୍ତ୍ତି ପାତ୍ର ନେଇ ଲକ୍ଷସ୍ୱାମୀ ଆସିଲା )
ଲକ୍ଷ : ଏଇ, ପାଣି ନିଅ ।
ବସ୍ତୁ : ଏ କଣ ଦୁଇଟି ପାତ୍ରରେ ପାଣି ?
ଲକ୍ଷ : ହଁ, ଦୁଇଟି ପାତ୍ର,—ଇଏ ସୁନାର ପାତ୍ର, ଆଉ ଇଏ ମାଟିର ।

( ଗୀତ )

ହେ ପୂଜ୍ୟ ଅତିଥି, ହେ ବନ୍ଧୁବର,
ଦୁଇ ପାତ୍ରେ ଭରିଅଛି ମୁଁ ଜଳ ।

ସ୍ୱର୍ଣ୍ଣ ପାତ୍ର ଜଳ ଏ ସୁବାସିତ
ସେଥି ସଙ୍ଗେ ପୁଣି ମଧୁ ମିଶ୍ରିତ ଯେ,
ମାଟି ପାତ୍ରର ଏ ଜଳ ଯେ,
ପବିତ୍ର ଗୋ'କନ୍ୟା ନଦୀରୁ ଆଣିଚ
ଶୁଦ୍ଧପୂତ ନିର୍ମଳ ଯେ । ୧ ।

(ଗୀତ)

ବସ୍ତୁ : ବୁଝି ନ ପାରେ ଏ ରହସ୍ୟ କିବା
ଭିନ୍ନ ପାତ୍ରେ ଭିନ୍ନ ଜଳ ରଖିବା ।
ସ୍ୱର୍ଣ୍ଣ ପାତ୍ର ତୁମ ଯୋଗ୍ୟ ବେଶର
ମାଟି ପାତ୍ର ସିନା ତୁଚ୍ଛ ଅସାର ଯେ,
କପାଇଁ ତେବେ ଏ ଭ୍ରମ ଯେ,
କହ ଗୋ ପିଠାଇ କେଉଁ ଜଳ ପିଇ
ତୃଷା ମେଣ୍ଟାଇବି ମମ ଯେ । ୧ ।

(ଗୀତ)

ଲକ୍ଷ : ନାହିଁ କିଛୁ ଭ୍ରମ ନାହିଁ ରହସ୍ୟ,
ନାହିଁ ଏଥି ଦୋଷ ନାହିଁ ପିଯୂଷ ।
ତୁମେ ଆଜ ମୋର ପ୍ରିୟ ଅତିଥି
ଲକ୍ଷ୍ୟ ତୁମ ଲକ୍ଷସ୍ୱାସ୍ଥର ପ୍ରୀତି ଯେ
କ କଥାକୁ ଆଉ ଡର ଯେ,
କେଉଁ ଜଳପାନେ ତୃଷା ଦୂର ହେବ
ସେ ବଚ୍ଚର ନିଜେ କର ଯେ । ୩ ।

ଲକ୍ଷ : ଲକ୍ଷସ୍ୱାସ୍ଥକୁ ପାଇବା ପାଇଁ ଯଦ ମରଣ ପଣ କରିପାରିଲ, ତେବେ ନଦୀ ଜଳ କ ସୁବାସିତ ଜଳ କେଉଁଥିରେ ତମ ତୃଷା ମେଣ୍ଟିବ ସେ ବିଚାର କରିପାରୁନ ?

ବସ୍ତୁ : ସେ ବିଚାର ମୁଁ କଲି, ଦେବୀ ଲକ୍ଷସ୍ୱାସ୍ଥ ! ଏଇ ମାଟିପାତ୍ରର ପବିତ୍ର ନିର୍ମଳ ଜଳ ମୁଁ ପିଉଚି । ( ପିଇଲ )

ଲକ୍ଷ : ମଧୁର ସୁବାସିତ ଜଳ ଥାଉ ଥାଉ ନଦୀଜଳ ପିଇଲ ?

ବସ୍ତୁ : ହଁ ।

( ଗୀତ )

ସ୍ୱର୍ଣ୍ଣ ପାତ୍ର ଜଳ ମଧୁ ମିଶ୍ରିତ
ଶେଷୀ ଜନେ ମାତ୍ର କରେ ଅଦ୍ଭୁତ,
ରସନା ଲାଳସେ ବଢେ ବାସନା

ମେଣ୍ଢେ ନାହିଁ ଶୋଷ ବଢ଼େ ଯାତନା ଯେ,
ମତେ ଭଲ ମାଟି ପାତ୍ର ଯେ,
ନାହିଁ ବାସ ନାହିଁ ବାସନା ଏଥିରେ
ଏ ଜଳ ପିଇ ମୁଁ ତୃପ୍ତ ଯେ । ୪ ।

ସୁବାସିତ ମଧୁର ଜଳରେ ଶୋଷ ମେଣ୍ଢେ ନାହିଁ, ବରଂ ବଢ଼େ । ସେଇଥି-ପାଇଁ ଏ ନଦୀଜଳ ମୁଁ ପିଇଲି । ଏଥିରେ ମୁଁ ତୃପ୍ତ ।

ଲକ୍ଷ : ଏତକ—ଏତକ ମୁଁ ତୁମଠୁଁ ଶୁଣିବାକୁ ଚାହୁଁଥିଲି । (ଡାକିଲା) ଅନସୂୟା —ଅନସୂୟା ! (ଅନସୂୟା ଆସିଲା)

ଅନ : ମତେ—ମତେ ଡାକିଲ ?

ଲକ୍ଷ : ହଁ, ଆସ, ଏଠିକି ଆସ । ତମର ଜୟ ହୋଇଚି ।

ଅନ : ଜୟ ହୋଇଚି ?

ଲକ୍ଷ : ହଁ, ତମ ସ୍ୱାମୀଙ୍କ ବିଚାରରେ ହିଁ ତମର ଜୟ ହୋଇଚି—ଆଉ ତାଙ୍କର ହୋଇଚି ପରାଜୟ ।

ବିଷ୍ଣୁ : ମୋ ବିଚାରରେ ?

ଲକ୍ଷ : ମୁଁ ଆଉ ଅନସୂୟା—ମୋର ଏ ବେଶଭୂଷା ଆଉ ଅଳଙ୍କାର ଭିତରେ ମୁଁ ହେଉଚି ସୁନାପାତ୍ରର ସୁବାସିତ ଜଳ । ଆଉ ଏ ସାଦା ବେଢ଼େରଣ ଖଣ୍ଡିକ ପିନ୍ଧି ତମର ସତୀ ଅନସୂୟା ହେଉଚି ପବିତ୍ର ଗୋକନ୍ୟା ନଦୀର ଜଳ । ତମେ ବର୍ତ୍ତମାନ ଏଇ ନଦୀ ଜଳ ପିଇଲ । କୁହ—ତା' ହେଲେ ତମ ଜୀବନକୁ ଧନ୍ୟ କରିବ କିଏ—ମୁଁ ନା ଏଇ ସତୀ ସାଧ୍ୱୀ ଅନସୂୟା ?

ବିଷ୍ଣୁ : ମତେ କ୍ଷମାକର ଦେବୀ—ମୁଁ ପାପୀ, ଅଧମ । ମୋର ଭ୍ରମ ମୁଁ ବୁଝିପାରିଚି । ମତେ କ୍ଷମାକର !

ଲକ୍ଷ : ଅନସୂୟା—ଯାଅ ଭଉଣୀ, ସ୍ୱାମୀଙ୍କୁ ନେଇ ଏଥର ଘରକୁ ଫେରିଯାଅ । ଏ କ'ଣ—ତମ ଆଖିରେ ଲୁହ ?

ଅନ : ଜନ୍ମ ଜନ୍ମ ପାଇଁ ମୁଁ ତୁମ ନିକଟରେ ଋଣୀ ରହିଗଲି ଭଉଣୀ । ସଂସାର ଆଖିରେ ତୁମେ ଯାହା ହୁଅନା କାହିଁକି—ମୋ ଆଖିରେ ତୁମେ ଦେବୀ ।
(ପଦଧୂଳି ନେଲା)

ଲକ୍ଷ : ଆରେ ଆରେ, ଏ କଣ କରୁଚ ଅନସୂୟା ? ମୋର ପଦଧୂଳି ନେଉଚ !! ସାମାନ୍ୟ ଗୋଟିଏ ବାରନାରୀ ମୁଁ···

(ଗୀତ)

ଅନ : ବାରନାରୀ ତୁମେ ନୁହଁ ଗୋ ଭଉଣୀ
ଦେବୀ ତୁମେ ବରନାରୀ,

ଅନୁଗ୍ରହେ ତୁମ ଅନସୂୟା ହେଲା
ସଙ୍କଟ ସାଗର ପାର ଗୋ ଭଉଣୀ,
ଦେବୀ ତୁମେ ବରନାରୀ । ୧ ।
ଲକ୍ଷହୀରା ନାମ ବହୁତ ଜଗତେ
ନାରୀ ମଧ୍ୟେ ତୁମେ ହୀରା
ଭାଗ୍ୟବଳେ ସିନା ସ୍ୱାମୀଙ୍କୁ ଜିତିଲ
ତୁମ ପାଖେ ଗଲ ହାର ଗୋ ଭଉଣୀ
ଦେବୀ ତୁମେ ବରନାରୀ । ୨ ।
ଏ ଅମା ରଜନୀ ଘୋଟିଛି ଅବନୀ
ଆକାଶରେ ନାହିଁ ଜହ୍ନ,
ମୋ ଆକାଶେ ତୁମେ ସାତ ଜହ୍ନପରି
ଜୋଛନା ଦେଲଟି ଢାଳି ଗୋ ଭଉଣୀ,
ଦେବୀ ତୁମେ ବରନାରୀ । ୩ ।

ଲକ୍ଷ : ଯାଅ ଭଉଣୀ, ସ୍ୱାମୀଙ୍କୁ ସାଥିରେ ନେଇ ଯାଅ । ମୁଁ ଠାକୁରଙ୍କୁ ଜଣାଉଚି, ସ୍ୱାମୀ ତୁମର ରୋଗମୁକ୍ତ ହୁଅନ୍ତୁ । ସ୍ୱାମୀ ସନ୍ତାନ ନେଇ ସୁଖରେ ଘର ସଂସାର କର । କିନ୍ତୁ ଏ ଅନ୍ଧକାରରେ ମୁହଁକୁ ମୁହଁ ଦିଶୁନି—ଯିବ କେମିତି ?

ଅନ : କହୁଛ ଦିଦି, ମୋର ଜନ୍ମ ହୋଇଚି ! ଏ ଅନ୍ଧାର ଆମକୁ ବାଧା ଦେଇ-ପାରିବନି । ଯାଉଚୁ ଆମେ । (ଦୁହିଁଙ୍କର ପ୍ରସ୍ଥାନ)

[ ଅମାବାସ୍ୟାର ରାତି । ପଥଧାରରେ ଆଗ୍ନିକ ଋଷି ଶୂଳଦଣ୍ଡ ଭୋଗୁଛନ୍ତି । ଯନ୍ତ୍ରଣାରେ ସେ ଅସ୍ଥିର । ]

ଆଗ୍ନିକ : ହେ ଭଗବାନ, ବିନା ଦୋଷରେ ମତେ ଏ ଗୁରୁଦଣ୍ଡ ଦେଲ ! ରାଜ-ନବରରୁ ଧନରତ୍ନ ଚୋରିକରି ଚୋରମାନେ ଅରଣ୍ୟରେ ଯାଇ ଲୁଚିଲେ । ମୁଁ ନିରୀହ ଋଷି, ନୀରବରେ ବସି ଧ୍ୟାନ କରୁଥିଲି । ରାଜକର୍ମଚାରୀମାନେ ମତେ ମିଥ୍ୟାରେ ସନ୍ଦେହ କଲେ । ରାଜା ଅବୁଝା—ମତେ ଶୂଳଦଣ୍ଡ ଆଦେଶ ଦେଲା । ମୁଁ ଏ ଶୂଳଦଣ୍ଡ ଭୋଗୁଛି । ଜାଣେନା, କେତେ କାଳ ଯାଏ ମୁଁ ଯମ-ଯନ୍ତ୍ରଣା ଭୋଗ କରୁଥିବି । ଆଃ-ଆଃ...... (ସେଇବାଟରେ ବିଷ୍ଣୁଦାସ ଓ ଅନସୂୟା, ଲକ୍ଷହୀରା ନିକଟରୁ ଫେରି ଆସୁଛନ୍ତି । )

ବିଷ୍ଣୁ : ଅନୁ, ଧୀରେ ଚାଲ ଅନୁ ! ଅନ୍ଧାରରେ କାଳେ କେଉଁଠି ଝୁଣ୍ଟିବି ।

ଅନ : ସତ କହୁଚି—ଆଜି ମୋ ପାଖରେ ଆଲୁଅ ଅନ୍ଧାରର ଭେଦ କିଛି ନାହିଁ। ତମକୁ ମୁଁ ଫେର ପାଇଚି—ମୋର ଯେମିତି ନବଜନ୍ମ ହୋଇଚି।

ବୃଷ୍ଟ : ଓଃ···

ଅନ : କ'ଣ ହେଲା ? ତମକୁ ଚାଲିବାକୁ କଷ୍ଟ ହେଉଚି ?

ବୃଷ୍ଟ : ନା, ଏ ଡାହାଣ ପାଦଟା···

ଅନ : ଶୁଣ, ମୋ କାନ୍ଧରେ ଭରା ଦେଇ ତୁମେ ଆସ।

ବୃଷ୍ଟ : ଏମିତି ଚାଲି ପାରିବ ତୁମେ ?

ଅନ : ହଁ ଆସ।

(ଏଇପରି ଭାବେ ଚାଲୁଥିବା ଅବସ୍ଥାରେ ଅନସୂୟା ଅନ୍ଧାରରେ ଜାଣି ନ ପାରି ଅଗ୍ନିକ ଋଷିଙ୍କୁ ଝୁଣ୍ଟିଲା।)

ଅଗ୍ନିକ : ଆଃ-ଆଃ··· (ଚିତ୍କାର କରି) କିଏ ? କିଏ ମୋତେ ଝୁଣ୍ଟିଲା ? ଯନ୍ତ୍ରଣାରେ ମୋ ମେରୁଦଣ୍ଡ ହାଡ଼ ଭାଙ୍ଗି ଚୂନା ହୋଇଯାଉଚି। କିଏ ମତେ ଝୁଣ୍ଟିଲା ?

ବୃଷ୍ଟ : ଆପଣ—ଆପଣ—କିଏ ?

ଅଗ୍ନିକ : ମୁଁ ଅଗ୍ନିକ ଋଷି।

ଅନ : ମତେ କ୍ଷମା କରନ୍ତୁ ମହାତ୍ମା—ଅନ୍ଧାରରେ ମୁଁ ବାଟ ବାରି ନପାରି···

ଅଗ୍ନିକ : ମିଥ୍ୟା କଥା। ଯୋଗ ବଳରେ ମୁଁ ସବୁ ଜାଣିପାରିଚି। ତୋର ସ୍ୱାମୀକୁ ତୁ ଫେରିପାଇଲୁ ବୋଲି ଗର୍ବ ଅହଙ୍କାରରେ ତୁ ଧରାକୁ ସରା ଜ୍ଞାନ କରୁଚୁ।

ଅନ : ନା-ନା, ମହାମୁନି···

ଅଗ୍ନିକ : ତୋ ଆଖିରେ ସମସ୍ତେ ତୁଚ୍ଛ—ହେୟ—ନଗଣ୍ୟ !! ଗର୍ବରେ ଅନ୍ଧ ହୋଇ ତୁ ମତେ ପଦାଘାତ କରିଚୁ। ସେଥିପାଇଁ ମୁଁ ତତେ ଅଭିଶାପ ଦେଉଚି।

ଅନ : ଅଭିଶାପ !!

ଅଗ୍ନିକ : ହଁ, ହଁ—ମୁଁ ତୋତେ ଅଭିଶାପ ଦେଉଚି। ଯୋଉ ସ୍ୱାମୀ ପାଇଁ ତୋର ଏ ଗର୍ବ, ଏ ଅହଙ୍କାର—ଯାହାପାଇଁ ତୁ ମୁନି ଋଷିଙ୍କୁ ମଧ୍ୟ ଅବମାନନା କରୁଚୁ—ଆଜିର ଏ ରାତି ପାହିଲା ମାତ୍ରେ ତୋର ସେ ସ୍ୱାମୀ ପ୍ରାଣ ତ୍ୟାଗ କରିବ।

ଅନ : ପ୍ରଭୁ, ଏ କି ଦଣ୍ଡ ଦେଉଛନ୍ତି ! ମୁଁ ଆପଣଙ୍କ ପାଦ ଛୁଇଁ କହୁଚି ଜାଣିଶୁଣି କିଛି ଅପରାଧ ମୁଁ କରିନାହିଁ। ମତେ କ୍ଷମା କରନ୍ତୁ !

ଅଗ୍ନିକ : ନା, ଏ ଅପରାଧର କ୍ଷମା ନାହିଁ। ଋଷିବାକ୍ୟ ଅନ୍ୟଥା ହୋଇପାରେନା।

(ଗୀତ)

କେ ନବୋଧ ନାରୀ, ତୁହି କଲୁ ଯେଉଁ କର୍ମ
ନ ମାନିଲୁ ଇନ୍ଦ୍ର ଚନ୍ଦ୍ର ନ ମାନିଲୁ ଧର୍ମ

ତାର ଫଳ ଭୋଗ ଲୋ,
ଭୋଗ ଏବେ ବାଇଧବ୍ୟ ଯୋଗ ଲୋ । ୧ ।
ଏ ଗୀତ ଯେ କାଳେ ପାନ୍ଥ ପ୍ରଭାତ ହୋଇବ
ସ୍ୱାମୀ ତୋର ଶମଶାନ ଚିତାରେ ଶୋଇବ
ଏହା ଧ୍ରୁବ ସତ୍ୟ ଲୋ ।
ମୁନିବାକ୍ୟ ନହୁଏ ଅସତ୍ୟ ଲୋ । ୨ ।

ଅନ : ଦୟା କରନ୍ତୁ ମୁନିଶ୍ରେଷ୍ଠ; ଦୟା କରନ୍ତୁ ! ଏ ଅଭିଶାପ ଫେରାଇ ନିଅନ୍ତୁ ।

ବଶିଷ୍ଠ : ମୁଁ ମୋ ପାଇଁ ଆପଣଙ୍କ ନିକଟରେ ଅଳି କରୁନାହିଁ ମହାମୁନି—ଅନସୂୟାର ଅବସ୍ଥା ଦେଖନ୍ତୁ—ତା' ପ୍ରତି ଦୟା କରନ୍ତୁ ।

( ଗୀତ )

ଅଗ୍ନି କ : ବ୍ରହ୍ମଶକ୍ତି ଜାଣିନାହିଁ ତୁ ଅଜ୍ଞାନ ମୂଢ଼,
ଇନ୍ଦ୍ର ଶକ୍ତି ଠାରୁ ବ୍ରହ୍ମ-ଶକ୍ତି ଅଟେ ଗୂଢ଼,
ସେଇ ବ୍ରହ୍ମ କୋପରେ,
କଣ ଦେଇ ପାରେ ସୃଷ୍ଟି ଲୋପରେ । ୩ ।

ଅଗ୍ନିକ : ଯାଅ ଏବେ—ତୁମେ ଦୁଇଟା ଚାଲିଯାଅ ମୋ ସମ୍ମୁଖରୁ, ଚାଲିଯାଅ । ଆଃ...

ଅନ : ଏ ଗୀତ ପାହିଲେ ମୁଁ ମୋ ସ୍ୱାମୀଙ୍କୁ ହରାଇବି । ମୁଣ୍ଡ ଉପରେ ଏ ଅଭିଶାପର ବୋଝ ନେଇ ମୁଁ ଏଠୁଁ ଯାଇପାରିବିନାହିଁ । ମହାମୁନି, ମତେ ଦୟା କରନ୍ତୁ ! (କାନ୍ଦୁଥାଏ)

( ଗୀତ )

ଅନ : ଅପରାଧ ମୁହିଁ କରିଚି ଋଷି ହେ
ମତେ ଦିଅ ଅଭିଶାପ,
କରେ ନର୍କ ବାସ ଯାଉ ବସବାସ
ଘାରୁ ପଛେ ଘୋର ତାପ ।
ଏ ରୂପ କୁରୂପ ହେଉ
ଜନ୍ମେ ଜନ୍ମେ ସାତ ଜନ୍ମେ—
ଏ ରୂପ କୁରୂପ ହେଉ,
ଚଉଦ ଭୁବନେ କାହିଁ
ଏ ଆତ୍ମା ଶାନ୍ତି ନ ପାଉ । ୧ ।
ମହା ଆତ୍ମା ମହା ପୁରୁଷ ତୁମେ ହେ
ମୋ ଦୁଃଖ ଦୂର କର,
• ମୋ ଜୀବନ ନେଇ ମୋ ସ୍ୱାମୀ ଦେବତା
ଜୀବନକୁ ରକ୍ଷା କର ।

ବ୍ରହ୍ମ ତେଜେ ଜାଳି ମତେ,
ସ୍ୱାମୀଙ୍କୁ ମୋ ରକ୍ଷାକର ।
ଏତିକ ଅଳି ହେ ପ୍ରଭୁ,
ସ୍ୱାମୀଙ୍କୁ ମୋ ରକ୍ଷାକର । ୨ ।

ଅନ : ଅପରାଧ ମୁଁ କରିଚି ପ୍ରଭୁ—ମୋ ଜୀବନ ନେଇ ମୋ ସ୍ୱାମୀଙ୍କ ଜୀବନ ରକ୍ଷା କରନ୍ତୁ । ପତିବ୍ରତା ସତୀ ନାରୀ ମୁଁ । ବୈଧବ୍ୟ ଯୋଗରୁ ମୋତେ ମୁକ୍ତ କରନ୍ତୁ ।

ଆଣି ମାଣ୍ଡବ୍ୟ : ନା-ନା, ମୁଁ କିଛୁ ଶୁଣିବି ନାହିଁ । କାହାର କଥା ଶୁଣିବି ନାହିଁ ।

( ଗୀତ )

ଦେବଲୋକଠାରୁ ନାଗଲୋକଯାଏ
ସର୍ବେ ହୋଇ ଯେବେ ଯୋଡ଼ହସ୍ତ,
ଜାନୁପାତି ମୋର ପାଦତଳେ ବସି
ସର୍ବେ କରି ଯେବେ ମଥା ନତ,
କଲେ ମତେ ଅଳି ଯିବ ନାହିଁ ଭଳି
ଟଳିଯିବ ନାହିଁ ମୋର କଥା,
ଆଣି ମାଣ୍ଡବ୍ୟ ଋଷି ମୁଁ ବୁଝେ ନାହିଁ କିଏ
ସତୀ ଆଉ କିଏ ପତିବ୍ରତା ।

ଅନ : ତା'ହେଲେ ଶୁଣନ୍ତୁ ମୁନିବର—ନିର୍ଦ୍ଦୋଷ ମୁଁ—ମୁଁ ଏ ଅନ୍ୟାୟ ସହିପାରିବି-ନାହିଁ । (ଅନସୂୟା କଣ୍ଠରେ ଦୃଢ଼ତା)

ଆଣି ମାଣ୍ଡବ୍ୟ : ସହି ପାରିବୁ ନାହିଁ ?

ଅନ : ନା ।

ଆଣି ମାଣ୍ଡବ୍ୟ : ତୁ ସହିବା ପୂର୍ବରୁ ଏ ରାତି ପାହିଥିବ ।

ଅନ : ନା—ଏ ରାତି ପାହିବ ନାହିଁ । ମୁଁ ଯଦି କାୟ-ମନ-ବାକ୍ୟରେ ସତୀ ହୋଇଥାଏ—ମୋର ପତିବ୍ରତା ଧର୍ମ ଯଦି ମୁଁ ପାଳନ କରିଥାଏ—ତେବେ ମୁଁ କହୁଚି—ଏ ରାତି ପାହିବ ନାହିଁ ।

କୁଷ୍ଠ : ଅନ !

ଆଣି ମାଣ୍ଡବ୍ୟ : ତୋର ଏ ଗର୍ବ, ଏ ଅହଙ୍କାର !

ଅନ : ହଁ, ମୁନି ବାକ୍ୟ ଯଦି ଅନ୍ୟଥା ନ ହୁଏ, ତେବେ ସତୀ ବାକ୍ୟ ମଧ୍ୟ ଅନ୍ୟଥା ହେବନାହିଁ ।

( ଗୀତ )

ଦେବଲୋକଠାରୁ ନାଗଲୋକ ଯାଏ
ସମସ୍ତଙ୍କୁ ଯୋଡ଼ ହସ୍ତ,

ସବୁ ଦେବ ଦେବୀ ପାଦତଳେ ମୁହିଁ
କରେ ମୋର ମଥା ନତ,
ଜଣାଣ କରୁଛି ପରାଣଆକୁଳେ
ସତୀ ମାନ ରକ୍ଷା ପାଇଁ,
ସତୀ ଯେବେ ମୁହିଁ ପତିବ୍ରତା ନାରୀ
ଏ ରାତି ପାଇବ ନାହିଁ । ୧ ।
ସତୀ ମା' କମଳା, ସତୀ ଗିରିବାଳା,
ସତୀ ମାତା ମହାମୟୀ,
ସାକ୍ଷୀ ତୁମେ ମାଏ, ଡାକ ଡାକ କହେ
କହେ ସତୀ ଅନସୂୟା—
ନ ପାହୁ ରାତି
ନ ମରୁ ପତି
ଏକ ରାତି ହେଉ ସପତ ରାତି । ୨ ।

( ସଙ୍ଗେ ସଙ୍ଗେ ଆକାଶ ପୃଥିବୀ ପ୍ରକମ୍ପିତ କରି ଏକ ଶବ୍ଦ ଶୁଣାଗଲା ଓ ରାତ୍ରି ଗାଢ଼ରୁ ଗାଢ଼ତର ହେବାକୁ ଲାଗିଲା । ସମସ୍ତ ଜୀବଜଗତ ପ୍ରମାଦ ଗଣିଲା । ଏଇ ଅବସ୍ଥାରେ ଆତଙ୍କିତ ନାଗରିକମାନଙ୍କର ସ୍ୱର ଶୁଣାଗଲା । )

ପ୍ରଥମ ସ୍ୱର : ଏ କ'ଣ ? ଏ କି ଅସମ୍ଭବ କଥା ? ଏ ରାତି ପାହୁ ନାହିଁ କାହିଁକି ?

ଦ୍ୱିତୀୟସ୍ୱର : କୁଆଁ ତାରା ଉଦୟ ହୋଇ ପହର ପହର ବିତିଗଲାଣି କିନ୍ତୁ ସିନ୍ଦୁରା ନ ଫାଟି ଅନ୍ଧାର ମାଡ଼ିଆସୁଛି ?

ସ୍ୱ୧ : ଏ ଅଘଟଣ ଘଟୁଚି କାହିଁକି ? ଏ ରାତି କଣ ପାହିବ ନାହିଁ ?

ସ୍ୱ୨ : ଏ ସୃଷ୍ଟି କଣ ଧ୍ୱଂସ ହୋଇଯିବ ?

ସ୍ୱ୧ : ଏଇ ତ, ଜନବସତି ଭିତରେ ସିଂହ ବାଘ ଆଦି ହିଂସ୍ର ଜନ୍ତୁ ପ୍ରବେଶ କଲେଣି —ଅସୁରମାନଙ୍କର ବିକଟ ଚିତ୍କାର ଶୁଣାଯାଉଚି ।

ସ୍ୱ୨ : ହେ ଭଗବାନ, ବିଷ୍ଣୁ—ରକ୍ଷାକର—ରକ୍ଷାକର !

ସ୍ୱ୧ : ହେ ପ୍ରଭୁ ସୂର୍ଯ୍ୟ ଦେବତା—ଆଉ କୁଣ୍ଠ ନ କର ପୂର୍ବ ଦିଗରେ ଉଦୟ ହୁଅ ପ୍ରଭୁ—ଉଦୟ ହୁଅ !

( ମିଳିତ କଣ୍ଠରେ ଗୀତ )

ସୂର୍ଯ୍ୟ ହେ—ହେ ସୂର୍ଯ୍ୟ, ହେ ଛାୟାକାନ୍ତ,
ଅଂଶୁମାଳୀ ହେ ଆଦିତ୍ୟ,
କୁହ ପ୍ରଭୁ, କୁହ କେବେ ଏ ନିଶି ହେବ ପ୍ରଭାତ ?
ସୂର୍ଯ୍ୟ ହେ—

ଲୋକ ଲୋଚନରୁ ଅନ୍ତର ହୋଇ
କେଉଁଠି ରହିଲ ରବି,
କେଉଁ ଗଗନରେ ହଜିଗଲା ତୁମ
ଉଦୟ କାଳର ଛବି !
କାହିଁ ଗଲେ ତୁମ ସପତ ଅଶ୍ୱ
କାହିଁ ଗଲା ତୁମ ରଥ,
ଅନ୍ତ ହୀନ ଏ ତମିସ୍ର ରଜନୀ
କାହିଁ ତୁମ ଗ୍ରସ୍ତାପଥ ?
ସୂର୍ଯ୍ୟ ହେ···ସୂର୍ଯ୍ୟ ହେ,
ଏ'କି ସୃଷ୍ଟିର ଅବସାନ !
ଏ'କି ପ୍ରଳୟର ଅଭିଯାନ !
ହେ ସୂର୍ଯ୍ୟ, ହେ ଗ୍ରସ୍ତାକାନ୍ତ,
ଅଂଶୁମାଳୀ, ହେ ଆଦିତ୍ୟ,
କୁହ ପ୍ରଭୁ, କୁହ କେବେ
ଏ ନିଶି ହେବ ପ୍ରଭାତ । ୧ ।

[ ସ୍ୱର୍ଗପୁର । ଜୀବ-ଜଗତର ଏ ଦୁର୍ଦ୍ଦଶାରେ ବିଚଳିତ ହୋଇ ବ୍ରହ୍ମାଙ୍କ ସହ ଦେବଗଣ ବିଷ୍ଣୁଙ୍କ ନିକଟରେ ଉପସ୍ଥିତ ହୋଇଛନ୍ତି । ]

ବ୍ରହ୍ମା : ଏଥର କୁହନ୍ତୁ ପରମେଶ୍ୱର, ଏ ସୃଷ୍ଟି କଣ ଧ୍ୱଂସ ହୋଇଯିବ ?

ବିଷ୍ଣୁ : ଆପଣ ତ ସୃଷ୍ଟିକର୍ତ୍ତା, ବ୍ରହ୍ମା ! ଏ ପ୍ରଶ୍ନ ଆପଣ ମତେ ପଚାରୁଚନ୍ତି କାହିଁକି ?

ବ୍ରହ୍ମା : ମୁଁ ସୃଷ୍ଟିକର୍ତ୍ତା ସତ—ଆପଣ ହେଉଚନ୍ତି ପାଳନକର୍ତ୍ତା ଏ ସୃଷ୍ଟି ରକ୍ଷାର ଦାୟିତ୍ୱ ଆପଣଙ୍କର । ସାତ ଦିନ ସାତ ରାତ ହୋଇଗଲା, ମର୍ତ୍ତ୍ୟରେ ସୂର୍ଯ୍ୟୋଦୟ ହୋଇନାହିଁ ।

ବିଷ୍ଣୁ : ମୁଁ ନିରୁପାୟ ପିତାମହ ! ସତୀ ଅନସୂୟାଙ୍କ ବାକ୍ୟ କେବେ ଅନ୍ୟଥା ହେବ ନାହିଁ । ସତୀ ତାଙ୍କ ବାକ୍ୟ ଫେରାଇ ନ ନେଲେ ଏ ମହାରାତ୍ରିର ଅବସାନ ହେବ ନାହିଁ ।

ବ୍ରହ୍ମା : କିନ୍ତୁ ସତୀ ତାଙ୍କ ବାକ୍ୟ ଫେରାଇ ନେଲେ ତାଙ୍କ ସ୍ୱାମୀଙ୍କ ଜୀବନ ରକ୍ଷା···

ବିଷ୍ଣୁ : ସେଇଥି ପାଇଁ ତ କହୁଚି—ମୁଁ ନିରୁପାୟ !

ବ୍ରହ୍ମା : ଆପଣ ଆଉ ଛଳନା କରନ୍ତୁ ନାହିଁ,ଗୋଲୋକବିହାରୀ । କୁହନ୍ତୁ, ଉପାୟ କ'ଣ ?

ବିଷ୍ଣୁ : ଏକମାତ୍ର ଉପାୟ—ସତୀ ଯଦି ସ୍ୱଦେହରେ ସ୍ୱର୍ଗକୁ ଆସି ପାରିବେ···

ବ୍ରହ୍ମା : କିନ୍ତୁ ଅନସୂୟା ଯେ ମାନବୀ ?

କୃଷ୍ଣ : ସେ ଉପାୟ ଆପଣ କରିବେ । ଆପଣ ବିଧାତା ପୁରୁଷ । ଆପଣ ବର ଦେଲେ ସତୀ ସ୍ୱଦେହରେ ସ୍ୱର୍ଗକୁ ଆସିପାରିବେ ।

ବ୍ରହ୍ମା : ଧନ୍ୟ ଆପଣ ଛଳନାମୟ । ବେଶ୍, ମୁଁ ଏଇ ମୁହୂର୍ତ୍ତରେ ବର ପ୍ରଦାନ କରୁଚି—ଅନସୂୟା ସ୍ୱଦେହରେ ସ୍ୱର୍ଗକୁ ଆଗମନ କରନ୍ତୁ !

( ଧ୍ୟାନରତ ବ୍ରହ୍ମା ଊର୍ଦ୍ଧ୍ୱକୁ ବାହୁ ପ୍ରସାରଣ କରି ବର ପ୍ରଦାନ କଲେ । ପର ମୁହୂର୍ତ୍ତରେ ପଞ୍ଚ ବସ୍ତ୍ର-ସୁଶୋଭିତା ଅନସୂୟା ଦେବଲୋକରେ ଉପସ୍ଥିତ ହେଲେ ଓ ଆଖିର ପଲକରେ ଦେବଦେବୀଙ୍କ ଗହଣରେ ସମସ୍ତ ସ୍ୱର୍ଗପୁରୀ ଦେଖିଆସିଲେ । )

କୃଷ୍ଣ : ସମସ୍ତ ସ୍ୱର୍ଗପୁରୀ ତ ବୁଲି ଦେଖିଲ—ଏବେ କୁହ ସତୀ ଅନସୂୟା, ମର୍ତ୍ତ୍ୟପୁରୀକୁ କି ସମ୍ବାଦ ନେଇ ଫେରିବ ? କ'ଣ ଏଠି ଦେଖିଲ ?

ଅନ : ନନ୍ଦନକାନନରୁ ନରକପୁରୀ ସବୁଠି ମୋ' ଆଖି ଆଗରେ ଭାସିଉଠିଲା ସେଇ ଗୋଟିଏ ଚନ୍ଦ ?

କୃଷ୍ଣ : କ'ଣ ସେ ଚନ୍ଦ ?

ଅନ : ପ୍ରଭୁ ଗୋଲୋକବିହାରୀ ଭଗବାନ କୃଷ୍ଣ—ସବୁଠି ସେ ବିଦ୍ୟମାନ ।

କୃଷ୍ଣ : ମୁଁ କିନ୍ତୁ ତମ ମୁହଁରୁ ଏ ସ୍ତୁତିଗାନରେ କେବଳ ସନ୍ତୁଷ୍ଟ ହୋଇ ପାରିବି ନାହିଁ । ତମ ପାଖରେ ମୋର ନିବେଦନ ଅଛି ।

ଅନ : ନିବେଦନ ?

କୃଷ୍ଣ : ମର୍ତ୍ତ୍ୟ ଆକାଶରେ କ'ଣ ସୂର୍ଯ୍ୟ ଉଇଁବେ ନାହିଁ । ମର୍ତ୍ତ୍ୟର ଏ କାଳରାତ୍ରି କ'ଣ ପାହିବ ନାହିଁ ?

ଅନ : ଏ ପ୍ରଶ୍ନର ଉତ୍ତର ମୁଁ ଦେବି ?

କୃଷ୍ଣ : ହଁ, ତୁମେ ।

( ଗୀତ )

ଆଜି ଏ ଗୋଲୋକ ଧାମେ
 ଗୋଲୋକବିହାରୀ ହେ
ସତୀ ଅନସୂୟା ପାଶେ
 ଜଣାଏ ଗୁହାରି ଯେ । ୦ ।

ଲକ୍ଷ୍ମଣର ଶକ୍ତିଭେଦ
ଗନ୍ଧମାଦନରୁଁ ଔଷଧ
ଏକ ରାତ୍ରି ମଧ୍ୟେ ହନୁ ଆଣିଲା କପରି ଯେ । ୧ ।

ତୁମ ବାକ୍ୟ ବଳେ ସତୀ
ଯାଉ ହେଲା ସାତ ରାତି
ସୁମିତ୍ରାନନ୍ଦନ ଚେତା ପାଇଲେଣି ଫେରି ଯେ । ୨ ।

ଜଣାଇଲ ସବୁ ଭେଦ
ମନେ ଯଦ୍ୱ ନାହିଁ ଖେଦ
କୁହ ମନ କଥା ଖୋଲି ସଂଶୟ ନ କରି ଯେ । ୩ ।

( ଗୀତ )

ଅନ : ତୁମ କୃପାବଳେ ନାଥ,
କାଣିଲି ସବୁ ବୃତ୍ତାନ୍ତ
ସବୁ ସିନା ତୁମ ଚକ୍ର ପ୍ରଭୁ ଚକ୍ରଧାରୀ ହେ,
ଶୁଣ ମୋ ଦସ୍ତିନୀ ପ୍ରଭୁ ଗୋଲୋକବିହାରୀ ହେ ।
ଜଗତ କଲ୍ୟାଣ ପାଇଁ
ମୋ' ବାକ୍ୟ ନେଲି ଫେରାଇ
ମର୍ତ୍ତ୍ୟରୁ ଏ କାଳରାତ୍ରି ଯାଉ ଅପସରି ହେ !
ଶୁଣ ମୋ ଦସ୍ତିନୀ········· । ୪ ।

ବିଷ୍ଣୁ : ସବୁ ତ ଶୁଣିଲି ଦେବି ! ତୁମେ ତୁମ ସ୍ୱାମୀଙ୍କ ଜୀବନ ରକ୍ଷା ପାଇଁ ପ୍ରାଣପାତ କରୁଥିଲ ବେଳେ ଲଙ୍କା ଯୁଦ୍ଧରେ ଲକ୍ଷ୍ମଣଙ୍କ ବକ୍ଷରେ ଶକ୍ତିଭେଦ ହେଲା । ରାତ୍ରି ପାହିବା ପୂର୍ବରୁ ଗନ୍ଧମାଦନ ପର୍ବତରୁ ଔଷଧ ନ ଆସିଲେ ଲକ୍ଷ୍ମଣ ବଞ୍ଚିବେ ନାହିଁ । ଔଷଧ କିନ୍ତୁ ଆସିବ କିପରି ? ଆଉ କଥା କେତେଣିକି ଥାଉ, ପବନସୁତ ହନୁମାନ ମଧ୍ୟ ସାତଦିନ ସାତରାତି ପୂର୍ବରୁ ଏ ଦୁରୂହ କାର୍ଯ୍ୟ କରିପାରିବେ ନାହିଁ । ସେଇଥିପାଇଁ ଏ ମହାଯୋଗ ଘଟିଲା । ତୁମ ବାକ୍ୟ ବଳରେ ଏକ ରାତି ସାତ ରାତି ହେଲା—ହେଲା ଲକ୍ଷ୍ମଣଙ୍କ ଜୀବନ ରକ୍ଷା । ବର୍ତ୍ତମାନ ତୁମେ ଚାହିଁଲେ ଏ ଜୀବଜଗତ ରକ୍ଷା ହେବ ।

ଅନ : ମୋ' ସ୍ୱାମୀଙ୍କ ମଙ୍ଗଳ ପାଇଁ ମୁଁ ମୋ' ନିଜ ସ୍ୱାର୍ଥକୁ ଜଳାଞ୍ଜଳି ଦେଇଥିଲି । ବର୍ତ୍ତମାନ ଜଗତର ମଙ୍ଗଳ ପାଇଁ ମୁଁ ମୋର ସାଂସାରିକ ସ୍ୱାର୍ଥ ତ୍ୟାଗ କରୁଛି —ମର୍ତ୍ତ୍ୟର ଏ ରାତି ଏବେ ପାହୁ ।

ବିଷ୍ଣୁ : ତୁମର ପରୀକ୍ଷା ଶେଷ ହୋଇଛି ଦେବି ! ତୁମେ ସ୍ୱଦେହରେ ସ୍ୱର୍ଗ ଦର୍ଶନ କରିଛ । ତୁମର ଏଇ ପୁଣ୍ୟବଳରେ ସ୍ୱାମୀ ତୁମର ରୋଗମୁକ୍ତ ହୋଇ ଦୀର୍ଘ ଜୀବନ ଭୋଗ କରିବେ । ଆଉ, ତୁମର ଏ ଅଲୌକିକ କାହାଣୀ ଯୁଗ ଯୁଗ ଧରି ଲୋକମୁଖରେ ପ୍ରଚଳିତ ରହିବ—

"ନପାହୁ ରାତି, ନମରୁ ପତି,
ଏକ ରାତି, ହେଉ ସପତ ରାତି" ।

`□□

## ଚରିତ୍ର

ବିକାଶ : ସୁ-ଶିକ୍ଷିତ ପୂର୍ଣ୍ଣ ବୟସ୍କ ଯୁବକ

ଶଙ୍କର : ବିକାଶର ସମବୟସ୍କ ବନ୍ଧୁ

ବିଶ୍ୱନାଥ : ପ୍ରୌଢ଼ ବ୍ୟବସାୟୀ

ଅନନ୍ତ : ବିଶ୍ୱନାଥଙ୍କ ଅନୁଚର

ଶାମ : ପ୍ରୌଢ଼ ଭୃତ୍ୟ

ରେଖା : ଶିକ୍ଷିତା ତରୁଣୀ

ସୀମା : ରେଖାର ସାନ ଭଉଣୀ

## ଆଦ୍ୟପର୍ବ

[ ପୁରୀ ସମୁଦ୍ର ଉପକୂଳସ୍ଥିତ ଏକ ସୁଦୃଶ୍ୟ ଅଟ୍ଟାଳିକା । ଅଟ୍ଟାଳିକାଟି ହେଉଚି ଏକ କ୍ଲବ୍ ତଥା ପ୍ରମୋଦାଗାର ।

ସମୟ—ଆସନ୍ନ ସନ୍ଧ୍ୟା । ଅଟ୍ଟାଳିକାର ପ୍ରଶସ୍ତ ବାରନ୍ଦାରେ ସମୀଚୀନ ଦୂରତ୍ୱ ରକ୍ଷାକରି ଚେୟାର ଟେବୁଲ ସଜ୍ଜିତ ହୋଇଚି । ପ୍ରମୋଦାଗାରର ସନ୍ଧ୍ୟାକାଳୀନ କାର୍ଯ୍ୟକ୍ରମ ଏପର୍ଯ୍ୟନ୍ତ ଆରମ୍ଭ ହୋଇନ । ବାରନ୍ଦାର ଏକ ପ୍ରାନ୍ତରେ ଏକ ଡେକ୍ ଚେୟାରରେ ବସିଚି ବିକାଶ ।···ବିକାଶ—ପୂର୍ଣ୍ଣବୟସ୍କ ଯୁବକ, ସୁଶିକ୍ଷିତ, ସୁପୁରୁଷ । ଦୃଷ୍ଟି ତାର ସମୁଦ୍ରର ଦିଗନ୍ତ-ବିସ୍ତାରୀ ଜଳରାଶି ଉପରେ ପ୍ରସାରିତ । ହାତରେ ଗୋଟିଏ ଗ୍ରେଟ ନୋଟ୍ ବହି ଓ କଲମ । ହୁଏତ କିଛିକ୍ଷଣ ପୂର୍ବରୁ ସେ ଏକ କବିତା ରଚନା କରୁଥିଲା । ବୁଦ୍ଧିଦୀପ୍ତ ମୁଖମଣ୍ଡଳରେ ଚିନ୍ତାର ଆଭାସ ତ ରହିଚି, ସେଇ ସଙ୍ଗେ ସଙ୍ଗେ ରହିଚି କିପରି ଏକ ହତାଶଭାବ । କିଛିଏ ପରେ ଦୃଷ୍ଟି ତାର ଫେରି ଆସିଲା ନୋଟ୍ ବହିର ପୃଷ୍ଠା ଉପରକୁ । ଅନୁଚ୍ଚ ସ୍ୱରରେ ତା' କଣ୍ଠରୁ ଶୁଣାଗଲା ମାତ୍ରାବୃତ୍ତ ଛନ୍ଦରେ ଏକ କବିତାର ଆବୃତ୍ତି ।

ଇତିମଧ୍ୟରେ, ବାରନ୍ଦାର ଅନ୍ୟ ପ୍ରାନ୍ତରୁ ବିକାଶର ଅଲକ୍ଷ୍ୟରେ ଆସିଚି ତା'ର ପ୍ରାୟ ସମବୟସ୍କ ବନ୍ଧୁ ଶଙ୍କର । ଶଙ୍କର ଆସି ବିକାଶର ପଛପଟେ ଠିଆ ହୋଇଚି ଓ ବିକାଶର ଆବୃତ୍ତି ଉପଭୋଗ କରୁଚି । କାଳ—ବର୍ତ୍ତମାନ]

ବିକାଶ : (ଆବୃତ୍ତି) ଏଇ ଯେ ଶାନ୍ତ ସାଗର ପରେ
ଏଇ ପାରାବାର ପ୍ରାନ୍ତସୀମା
ଶୁଭ୍ରଧାରେ,
ଥିଲା ଯେବେ ତହିଁ ପ୍ରବାଳ ଦ୍ୱୀପ
ଜାଳୁଥିଲା ଯେବେ ପ୍ରବାଳ କୁମାରୀ
ସୁନାହାତେ ତାର ରତ୍ନଦୀପ;
ସେଦିନ କାହାଣୀ ଗାଇଥିଲା କବି ।
ପ୍ରବାଳ ପୁରୀର ବଜ୍ରବାଡ଼
ଭାଙ୍ଗିଲା ଯେବେ ସାଗର ବକ୍ଷ—
ମନ୍ଥନ କରି ଉଠିଲା ଝଡ଼······
( ଏତିକରେ ବିକାଶ ଅଟକି ଗଲା )

ଶଙ୍କର : ହୁଁ, ତାପରେ ?

ପ୍ରକାଶ : କଏ ? ଓ, ଶଙ୍କର ! ନାଃ, ହେଲନି ।

ଶଙ୍କର : କଣ ହେଲନି ? କବିତା ଲେଖା ?

ପ୍ରକାଶ : କବିତା ଲେଖା ତ ହଉନି । ଏଥର ପୁରୀର ଏ ପୃଥିବୀ ବିଖ୍ୟାତ ସମୁଦ୍ରକୂଳ କାହିଁକି ମତେ ଭଲ ଲାଗୁନି ।

ଶଙ୍କର : ମାନେ !

ପ୍ରକାଶ : ଏଇତ ପୁରୀର ସେ ସମୁଦ୍ରକୂଳ । ଅବଶ୍ୟ ଏ ଦଶବର୍ଷ ହେଲା ମୁଁ ପୁରୀ ଆସିନି । କିନ୍ତୁ ଦଶବର୍ଷ ପୂର୍ବେ······ତୋର ମନେ ଥିବ ତ ସବୁ ?

ଶଙ୍କର : ଅଛି ବାବୁ, ସବୁ ମନେ ଅଛି । ଦଶବର୍ଷ ପୂର୍ବେ ବହୁ ମଧୁସନ୍ଧ୍ୟା ଆମର ଏଇ ସମୁଦ୍ର କୂଳରେ କଟିଚି । ଏ ଦଶବର୍ଷ ଭିତରେ ବଡ଼ ଘଟଣା ହଉଚି ଏଇ ଯେ, ଆମ ଦୁହିଁଙ୍କର ବୟସ ଦଶବର୍ଷ ଲେଖାଁଏ ବଢ଼ି ଯାଇଚି । ଆମ ଜୀବନ-ସମୁଦ୍ର କୂଳରୁ ଆମେ ଦଶବର୍ଷ ଦୂରକୁ ଚାଲି ଯାଇଛୁ । କିନ୍ତୁ ପୁରୀ ସମୁଦ୍ରକୂଳର ଏ ଦଶବର୍ଷ ଭିତରେ ଯେ କିଛି ଅଘଟଣ ଘଟିଛି ଏକଥା ତ ଏକା ତୋ' ଛଡ଼ା ଆଉ କାହା ମୁହଁରୁ ମୁଁ ଶୁଣିନି । ଏ ମହୋଦଧି ତୋ ନିକଟରେ କି ଅପରାଧ କରିଚି ? ଏଇତ ସେ ଆଡ଼କୁ ଚାହାଁ, ଶହ ଶହ ସଂଖ୍ୟାରେ ସ୍ତ୍ରୀ ପୁରୁଷ ବାଳକ ବାଳିକା ପାଣି କୂଳେ କୂଳେ······

ପ୍ରକାଶ : (ଉଠି ଠିଆ ହୋଇ, ଶଙ୍କର କଥାରେ ବାଧା ଦେଇ ଓ ନିଜ କଥାରେ ଜୋର ଦେଇ) ଶହ ଶହ କାହିଁକି ହଜାର ହଜାର ସଂଖ୍ୟାରେ ସ୍ତ୍ରୀ ପୁରୁଷ ସମୁଦ୍ର କୂଳକୁ ଆସୁଚନ୍ତି । କିନ୍ତୁ ସେମାନଙ୍କ ଆନନ୍ଦ କୋଳାହଳରେ ଏ ସ୍ଥାନ ଯେମିତି ଗୋଟାଏ ମହା ଶ୍ମଶାନରେ ପରିଣତ ହେଉଚି ।

ଶଙ୍କର : ମହା ଶ୍ମଶାନ ! ଆଉ ସେଥିପାଇଁ ଯେମିତି ତୋ ଗର୍ବର ସୀମା ନାହିଁ, ତୋ କଥାରୁ ଏଇ ଆଭାସ ମୁଁ ପାଉଚି । କୋଉ ବ୍ୟଥାତୁର ଦର୍ଶନରେ ଏମିତି ଦାର୍ଶନିକ ହେବାର ସ୍ୱପ୍ନ ଦେଖୁଚୁ ? ଏଇଥିପାଇଁ ତା'ହେଲେ କବିତା ସ୍ଫୁରୁ ନ ଥିଲା ?

ପ୍ରକାଶ : କବିତା ! ସ୍ୱାକୁ କଣ କବିତା କୁହାଯାଏ ? ଏଠି ବସି ବସି ଦୁ' ଚାରିପଦ ଲେଖିବାର ଚେଷ୍ଟା କରୁଥିଲି । କିନ୍ତୁ ନା; ମୋ ଦ୍ୱାରା ଆଉ କବିତା ଲେଖା ହବନି ।

ଶଙ୍କର : ଏଇ ଯେଉଁ କେଇଟି ପଦ ତୁ ଆବୃତ୍ତି କରୁଥିଲୁ, ସେଥିରେ କବିତାର ଅଭାବ କୋଉଠି ଅଛି ମୁଁ ଜାଣି ପାରିଲି ନାହିଁ ।···କିନ୍ତୁ ଇଏ ହେଲା କଣ ?

ବିକାଶ : କଣ ହେଲା ?

ଶଙ୍କର : ସବୁ ତ ଠିକ୍ ଥିଲା । ପ୍ରବାଳଦ୍ୱୀପର ରାଜକନ୍ୟା ସୁନାହାତରେ ତାର ରତ୍ନଦୀପ ଜାଳି ହୁଏତ ମୁକ୍ତାଦ୍ୱୀପର ରାଜପୁତ୍ରର ପଥଚାହିଁ ବସିଥିଲା । ତୋ କବିତାର ସାଗର ଯେମିତ ରୁଦ୍ର, ସେମିତ ଶାନ୍ତ । ଆଉ କିଛିକ୍ଷଣ ସାଗରର ଶାନ୍ତ ରୂପକୁ ବଞ୍ଚାଇ ରଖି ବିଚାରୀ ରାଜକନ୍ୟାର କିଛି ଗୋଟାଏ ସଦ୍‌ଗତି ନକରି ଏକାବେଳକେ ସମୁଦ୍ର ମନ୍ଥନ କରି ଝଡ଼ ଉଠେଇ ଦେଲୁ !

ବିକାଶ : ତୁ ପରିହାସ କରୁଚୁନା ?

ଶଙ୍କର : ପରିହାସ ଯଦି କରୁଥାଏ, ତେବେ ତୋ କବିତାକୁ ନୁହେଁ, ପରିହାସ କରୁଚି ତୋ ମନର ଏଇ ଧ୍ୱଂସକାଙ୍କ୍ଷୀ ଚିନ୍ତାଧାରାକୁ ।

ବିକାଶ : କିନ୍ତୁ ତୁ ଏଇ ଯାହା କହିଲୁ ସମୁଦ୍ର ମନ୍ଥନ—ସାଗର ମନ୍ଥନ—ଏ ସବୁ ଏକାବେଳକେ ଭୁଲ କଥା ।

ଶଙ୍କର : ମୋ କଥା ଗୁଡ଼ାକ ଭୁଲ ନା ତୁ ନିଜେ ଗୋଟାଏ ଭୁଲର ଦୁନିଆ ଭିତରେ ଗଢ଼ିକରି ଚାଲିଚୁ ? ଏ ପର୍ଯ୍ୟନ୍ତ ଆମ ଘରେ ଘରେ ଦେଢ଼େଢ଼େବେଳେ ପୁରାଣ ପାଠ ପ୍ରଚଳିତ ରହିଚି, ସେଥିରୁ ସମୁଦ୍ରମନ୍ଥନ ଉପାଖ୍ୟାନଟା ଉଠିଯିବ କାହିଁକି ?

ବିକାଶ : ଉଠିଯିବା କଥା ମୁଁ କହୁନି । ପୁରାଣ ଯେବେ ସତ ହୋଇଥାଏ, ତେବେ ଏ ସୃଷ୍ଟିର ଆରମ୍ଭରୁ ଥରେ ମାତ୍ର ସାଗର ମନ୍ଥନ ହୋଇଚି । ସେଥିରୁ ଅମୃତ ବାହାରିଚି ଆଉ ବିଷ ବାହାରିଚି । ଅମୃତ ଏ ବିଶ୍ୱକୁ ଦାନ କରିଚି ଦେବତା । ବିଷର ପ୍ରତୀକ ହୋଇ ରହିଚି ଦାନବ । ଏ ଦୁଇ ମହାଶକ୍ତି ଭିତରେ ଆଉ ତୃତୀୟ କିଛି ନାହିଁ ।

ଶଙ୍କର : ତୁ ତା' ହେଲେ କହିବାକୁ ଚାହୁଁ ଯେ ବ୍ୟାସ, ପରାଶର, ପତଞ୍ଜଳି, Plato, Socrates, Aristotleଙ୍କ ଠୁଁ ଆରମ୍ଭ କରି ଏ ଯୁଗର ଫ୍ରଏଡଙ୍କ ପର୍ଯ୍ୟନ୍ତ ମହାପୁରୁଷମାନେ ବାରମ୍ବାର ସାଗର ମନ୍ଥନ କରି ଯେଉଁ ରତ୍ନ ସଂଗ୍ରହ କରି ଯାଇଛନ୍ତି, ସେ ସବୁ···

ବିକାଶ : (ଶଙ୍କର କଥାରେ ବାଧାଦେଇ) ଭୁଲ । ବାଜେ । Imitation. Unnecessary repetition and reproduction of harmful elements ନୂଆ କେହି କିଛି ଦେଇ ନାହାନ୍ତି । ଦେଇ ପାରିବେ ନାହିଁ କି ଦେବାଭଳି କିଛି ନାହିଁ । ସେଇ ବିଷ ଆଉ ଅମୃତକୁ ଘାଣ୍ଟି ମଣିଷର ମନକୁ ଗୋଟାଏ ପାଶବିକ ସ୍ତରକୁ ଠେଲି ଦେଇଚନ୍ତି । ଆମେ ମଣିଷ ଜାତି ପଶୁରେ ପରିଣତ ହୋଇଚୁ । ଆମ ଭିତରେ ଦେବତା ହୋଇ କେହି

ରହୁ ନାହାନ୍ତି କି ଦାନବ ହୋଇ କେହୁ ରହୁ ନାହାନ୍ତି । କେବଳ ରହୁଛି ଗୋଟାଏ ପଶୁ ପ୍ରବୃତ୍ତି । ଏ ବିଶ୍ୱରେ ତେବେ ଆମର ସ୍ଥାନ କାହିଁ ? Ours is a lost cause and there is no place for us in this natural universe.

ଶଙ୍କର : (ସ୍ତମ୍ଭିତ ଓ ଆହତ) ବିକାଶ !!

ବିକାଶ : Yes, I say emphatically that we should rather die as men than live as animals. ଆମର ମରିଯିବା ଉଚିତ ।

[ ଅନ୍ତରାଳରୁ ଯନ୍ତ୍ର-ସଙ୍ଗୀତର ଏକ ତୀବ୍ର ଝଙ୍କାର ଶୁଣାଗଲା ]

କଣ ହେଲା ?

ଶଙ୍କର : ସଙ୍କେତ ଧ୍ୱନି । (ଈଷତ୍ ପରିହାସ ସହ) ନା, ନା । ମୃତ୍ୟୁର ସଙ୍କେତ ନୁହେଁ । ଆଜି ସନ୍ଧ୍ୟାରେ କ୍ଲବର କାର୍ଯ୍ୟକ୍ରମ ଆରମ୍ଭ ହେଲା—ସେଇ ସଙ୍କେତ ।

ବିକାଶ : କ୍ଲବ୍ ! ଓ, ଏଇ କ୍ଲବ୍ ?

ଶଙ୍କର : ଏ ସହରରେ ସମ୍ପୂର୍ଣ୍ଣ ନୂଆ ଧରଣର ଏ ପ୍ରମୋଦାଗାର । ସେଇଥିପାଇଁତ ତୋତେ ଏଠିକି ଆଣିଛି । ସନ୍ଦେହିଷ୍ଟ୍, ଶଙ୍କରାଚାର୍ଯ୍ୟ ଯିନା ତୋତେ ନୂଆ କିଛି ଦେଇ ନାହାନ୍ତି, ତୋର ଏ ପୁରୁଣା ବନ୍ଧୁ ଶଙ୍କର ତୋତେ ଏଠି ନୂଆ କିଛି ଦେଇ ପାରୁଛି କି ନାହିଁ···

[ଶଙ୍କରର କଥା ଶେଷ ପୂର୍ବରୁ ଝଡ଼ ବେଗରେ ବିକାଶ ସେଠୁ ଉଠି ଅଦୃଶ୍ୟ ହୋଇଗଲା]

ଶଙ୍କର : ବିକାଶ—କୁଆଡ଼େ ଗଲୁ ବିକାଶ ?

[ଡାକ ଡାକ ଅନୁସରଣ କଲା ।······କିଛିକ୍ଷଣ ପରେ ବାରନ୍ଦାର ଏକ ପ୍ରାନ୍ତରେ ନିଷ୍ପ୍ରଭ ଆଲୋକ ଧୀରେ ଧୀରେ ଉଜ୍ଜ୍ୱଳିତ ହେଲା । ଦେଖାଦେଲା ଗୋଟିଏ ଟେବୁଲର ଦୁଇ ପାଖରେ ମୁହାଁ ମୁହିଁ ହୋଇ ଦୁଇ ଜଣ ଭଦ୍ରଲୋକ ତାସର ଜୁଆ ଖେଳୁଚନ୍ତି । ସେମାନଙ୍କ ଭିତରୁ ଜଣେ ଶ୍ରୀ ବିଶ୍ୱନାଥ । ବୟସ୍କ ଲୋକ । ସେ ପ୍ରଚୁର ପରିମାଣରେ ମଦ୍ୟପାନ କରିଚନ୍ତି । ଟେବୁଲ ଉପରେ ବହୁତ ପରିମାଣରେ ନୋଟ୍ ଗଦା ହୋଇଚି । ଅବସ୍ଥାରୁ ଜଣାଯାଏ ବିଶ୍ୱନାଥ ଜିତୁଚନ୍ତି ଓ ଅନ୍ୟ ଭଦ୍ରଲୋକଟି ହାରି ଯାଇଚନ୍ତି ।]

ବିଶ୍ୱନାଥ : (ଖୁବ୍ ଖୁସିରେ) ବାହା···ବାଃ···ବାହା···ବାଃ···ମତେ ପୁଣି ଆଜି କିଏ ଜିତିବ ? When dame luck smiles ! ଭାଗ୍ୟଲକ୍ଷ୍ମୀ ଯେତେ-

ଦେଲେ ସୁପ୍ରସନ୍ନ—ଏ ବାବା ବିଶ୍ୱନାଥ ପୁଣି ଆଜ ହାରିବ ? ବାହା··· ବାଃ···ବାହା···ବାଃ । ଏଁ ଏଁ···(ଅପର ଭଦ୍ରଲୋକଟି ଉଠି ଯିବାକୁ ବାହାରିଲେ) ସ୍ପେ' କ'ଣ ବାବୁ ! ଟେବୁଲ୍ ଗୁଡ଼ା ଗୁଳ ଯାଉଚ ଯେ । କ'ଣ ହାରିଗଲ ବୋଲି ରାଗିଗଲ ନା ରୁଷିଗଲ ? ଆହା ବନ୍ଧୁ । ଶୁଣିଯାଅ । ଦୁଆରବନ୍ଧ ଡେଇଁବା ପୂର୍ବରୁ ଥରେ ଶୁଣ ? ନାଃ । ସେ ଶୁଣିଲେ ନାହିଁ । (ଡାକିଲେ) ଅନନ୍ତ ।

(ତାଙ୍କର ବିଶ୍ୱସ୍ତ ଅନୁଚର ଅନନ୍ତ ଆସିଲା ।)

ଅନନ୍ତ : ସାର୍ ।

ବିଶ୍ୱ : ରାତି କ'ଣ ଖୁବ୍ ବେଶି ହେଲଣି ଅନନ୍ତ ?

ଅନନ୍ତ : ନା ସାର୍ ଖୁବ୍ ବେଶୀ ହେଇନ, ଖୁବ୍ କମ୍ ବି ହେଇନ ।

ବିଶ୍ୱ : ତା' ହେଲେ ଆମେ ବର୍ତ୍ତମାନ ଘରକୁ ଫେରିପାରୁ, ଆଉ ନ ଫେରିବ ପାରୁ ?

(ଏତିକି ବେଳେ ବିକାଶ ସେଠିକି ଆସିଲା । ସେ ସାଧାରଣ ଭାବେ ମଦ୍ୟ ପାନ କରିଚି)

ବିକାଶ : Good Evening Sir !

ବିଶ୍ୱ : କିଏ ତୁମେ ବାବା Good Evening ?

ବିକାଶ : ଆପଣ ବର୍ତ୍ତମାନ ଘରକୁ ନ ଫେରିଲେ ବୋଧେ ସୁବିଧା ହେବ ।

ବିଶ୍ୱ : ମୋର ଅସୁବିଧା କଥା ତା'ହେଲେ ତୁମେ ଚିନ୍ତା କର ମତେ ଏ ପରାମର୍ଶ ଦଉଚ ?

ବିକାଶ : ହଁ ସାର୍ ।

ବିଶ୍ୱ : କାହିଁକି ସାର୍ ?

ବିକାଶ : ଏ ଟେବୁଲଟା ଯେ ଏଠି ଖାଲି ପଡ଼ିଚି ।

ବିଶ୍ୱ : By ମା'ଲକ୍ଷ୍ମୀ ! My young friend, ତୁମେ ତା'ହେଲେ ମୋ ବିରୁଦ୍ଧରେ ପ୍ରସ୍ତୁତ ?

ବିକାଶ : ହଁ, ସାର୍, ଆରମ୍ଭ କରନ୍ତୁ ।

ବିଶ୍ୱ : ବେଶ୍ ! ଆରମ୍ଭ ହେଲା । (ଖେଳ ଆରମ୍ଭ ହେଲା) ହୁଁ, ଆଚ୍ଛା ବନ୍ଧୁ, ସେପାଖରେ ତୁମର ଏତେ ଯୁବକ ବନ୍ଧୁ ଥାଉ ଥାଉ ତୁମେ ଏ ବୁଢ଼ାଟାର ଟେବୁଲ କାହିଁକି ପ୍ରେଫାର୍ କଲ ?

ବିକାଶ : ସେ ପାଖରେ ଲୋକ ଭର୍ତ୍ତି । ଭାରି ଗୋଳମାଳ । ଭଲ ଲାଗିଲା ନାହିଁ । ଏଠି ଆଉ କେହି ନାହାନ୍ତି, ଏକା ଆପଣ ଆଉ ମୁଁ । ଭାରି ଭଲ ଲାଗୁଚି ।

ବଶ୍ୱ : ଦେଖି ବାବୁ, ତମ ମୁହଁ ଦେଖି, ଟିକେ ଭଲକରି ଦେଖେଁ । ହୁଁ । ତମକୁ ଦେଖିତ ମନେ ହେଉଚି—ତମେ ଠିକ୍ ମୋରପରି ସମୁଦ୍ର ବକ୍ଷରେ ଭାସୁଚ ।

ଅନନ୍ତ : ନା ସାର୍, ସମୁଦ୍ର ବକ୍ଷରେ ଭାସୁ ନାହାନ୍ତି ।

ବଶ୍ୱ : ଆଉ ?

ଅନନ୍ତ : ଏକା ବେଳକେ ଭିତରେ ଅର୍ଥାତ୍ କୁବେରପୁରୀରେ ବୁଡ଼ି ରହିଚନ୍ତି ।

ବଶ୍ୱ : ମାନେ ?

ଅନନ୍ତ : ଦେଖନ୍ତୁ ନାହାନ୍ତି ଏଣେ ଟେବୁଲର ଅବସ୍ଥା ।

(ବିକାଶ ବହୁ ପରିମାଣରେ ଟଙ୍କା ଜିତି ଚାଲିଥାଏ)

ବଶ୍ୱ : By ମା' ଲକ୍ଷ୍ମୀ ! ତୁମେ ଯାଦୁକର ନୁହଁତ ବାବା ! ତୁମ ନା କ'ଣ ?

ବିକାଶ : ବିକାଶ ।

ବଶ୍ୱ : ଅଲରାଇଟ୍ ବିକାଶ । ତମ ହାତର ଗୁଣ ଦେଖି ମୁଁ ଖୁବ୍ ଖୁସି । ହାରଗଲେ ବି ମୋର ଚିନ୍ତା ନାହିଁ । ତୁମେ ପିଲା । ଖୁବ୍ ମନ ଫୁର୍ତ୍ତିକରି ଖେଳ । କୁଛ୍ ପରୱା ନେହିଁ । ଅନନ୍ତ ।

ଅନନ୍ତ : ସାର୍ ।

ବଶ୍ୱ : ତୁମେ ଘରକୁ ଯାଅ । ଚଞ୍ଚଳ । ହ ଶୁଣ । ଆଃ, ମୁହଁ ପାଖକୁ କାନ ଆଣ । (କାନରେ କହିଲେ) ବୁଝିଲ ?

ଅନନ୍ତ : ବୁଝିଲି ସାର୍ ।

ବଶ୍ୱ : ବୁଝିଲତ, ପୁଣି ମୁହଁକୁ ଅନେଇ ଠିଆ ହେଲ କାହିଁକି ? ଯାଅ, ଫୁର୍ତ୍ତି ଯାଅ ।

ଅନନ୍ତ : ଯାଉଚି ସାର୍ । (ଅନନ୍ତର ପ୍ରସ୍ଥାନ)

ବଶ୍ୱ : ହୁଁ, My dear ବିକାଶ ! ବର୍ତ୍ତମାନ ଆସ । ଆଚ୍ଛା ଟିକିଏ ରୁହ, କିଛି ଆପତ୍ତି ଅଛି ?

ବିକାଶ : କ'ଣ ସାର୍ ?

ବଶ୍ୱ : ଚେୟାର ବଦଳାଇବାରେ ? ମାନେ ତମେ ମୋ ଚେୟାରକୁ ଆସିବ, ଆଉ ମୁଁ ତମ ଚେୟାରକୁ ଯିବ ? ଆପତ୍ତି ଅଛି ?

ବିକାଶ : ନା ସାର୍, କିଛି ଆପତ୍ତି ନାହିଁ ।

(ଚେୟାର ବଦଳ ହେଲା—ଖେଳ ଚାଲିଲା । ବିକାଶ ପୁଣି ଜିତି ଚାଲିଥାଏ । ବାରଣ୍ଡାର ଅନ୍ୟ ପ୍ରାନ୍ତରେ ଦେଖାଗଲା ଚିନ୍ତିତ ମନରେ ଶଙ୍କର ଆସୁଚି । ଭେଟହେଲା ଅନନ୍ତ ସହିତ)

ଶଙ୍କର : କିଏ ଅନନ୍ତ ? ଏମିତ [ଅଶରୀରୀ] ହୋଇ ଛୁଟିଚ ଯେ ? କୁଆଡ଼େ ଯାଇଥିଲ ?

ଅନନ୍ତ : ଯାଇଥିଲି ସାର୍, ବିଶ୍ୱନାଥଙ୍କଙ୍କ ଘରକୁ ।

ଶଙ୍କର : ଓ ! କି ଆଶ୍ଚର୍ଯ୍ୟ କଥା, ଲୋକଟା କୁଆଡ଼େ ଗଲା ଖୋଜି ଖୋଜି ପାଉନି ।

ଅନନ୍ତ : କାହାକୁ ଖୋଜୁଚନ୍ତି ସାର୍ ?

ଶଙ୍କର : ସେଇ ଯେ ବାବୁ ସେତେବେଳେ ମୋ ସାଥିରେ ଏଠିକି ଆସିଥିଲେ ?

ଅନନ୍ତ : ସିଏତ ସାର୍ ଙ୍କଙ୍କ ଟେବୁଲରେ ବସିଚନ୍ତି ।

ଶଙ୍କର : ସତେ ? ପ୍ରକାଶ ତାଙ୍କ ପାଖରେ ଯାଇ ଜୁଟିଗଲଣି । ଚାଲିଲ ଦେଖେଁ । ପ୍ରକାଶ—ପ୍ରକାଶ । କାହିଁ, ପ୍ରକାଶ ନାହିଁତ ଏଠି ?

(ଶଙ୍କର ଏ ପ୍ରାନ୍ତକୁ ଆସିଲା ବେଳକୁ ପ୍ରକାଶ ଚାଲିଗଲଣି । ବିଶ୍ୱନାଥ ଚେୟାର ଉପରେ ଢଳି ପଡ଼ିଚନ୍ତି ।)

ବିଶ୍ୱ : କିଏ ? ଶଙ୍କର ସାହେବ ?

ଶଙ୍କର : କ'ଣ ଶୋଇପଡ଼ିଥିଲେ ଆଜ୍ଞା ?

ବିଶ୍ୱ : ନା । ବସି ବସି ଦୁଃସ୍ୱପ୍ନ ଦେଖୁଥିଲି ।

ଶଙ୍କର : ଦୁଃସ୍ୱପ୍ନ ? କାହିଁକି ? ପ୍ରକାଶ ଏଠି ଥିଲାପରା ? କୁଆଡ଼େ ଗଲା ?

ବିଶ୍ୱ : ସବୁ ହିସାବ ନିକାଶ କରି ଚାଲି ଯାଇଚି ।

ଶଙ୍କର : କୁଆଡ଼େ ଗଲା !

ବିଶ୍ୱ : କହିପାରିବି ନାହିଁ ସାହେବ ।

ଶଙ୍କର : ବଡ଼ ମୁସ୍କିଲ କଥା ! କୁଆଡ଼େ ଗଲା ଏବେ ଲୋକଟା ?

(କହୁ କହୁ କ୍ଳାନ୍ତ ହୋଇଗଲା)

## ମଧ୍ୟପର୍ବ

[ସମୁଦ୍ର କୂଳର ଅଦୂରବର୍ତ୍ତୀ ଏକ ଅପେକ୍ଷାକୃତ ଜନ-ବିରଳ ରାସ୍ତାଧାରରେ ଏକ ସାଧାରଣ ବାସଗୃହର ଏକ ପ୍ରକୋଷ୍ଠ । ଆକାର ପ୍ରକାରରୁ ପ୍ରକୋଷ୍ଠଟିକୁ 'ଏକ ପଢ଼ାଘର କୁହାଯାଇ ପାରେ । '୨୪।୨୫ ବର୍ଷ ବୟସର ତରୁଣୀ ରେଖା ପ୍ରାୟ ଅନୁଚ୍ଚ ସ୍ୱରରେ ଗୋଟିଏ ଇଂରାଜୀ କବିତା ପାଠ କରୁଛି ।]

ରେଖା : (ପଢ଼ୁଛି)

I think, I could turn and
live with animals,
They are so placid and self-contained
I stand and look at them,
Long, long............ --
They do not make me sick
discussing their duty to God,
Not one is demented with the
mania of owing things
Not one is respectable............

(ରେଖାର କବିତା ପାଠରେ ବାଧା ପଡ଼ିଲା । ପ୍ରାୟ ସମ୍ପୂର୍ଣ୍ଣ ମାତାଲ୍ ଅବସ୍ଥାରେ ଭିତରକୁ ପଶି ଆସିଛି ବିକାଶ )

ବିକାଶ : ନମସ୍କାର ମାଡାମ୍ ।

ରେଖା : କିଏ ? (ରେଖା ବିଚଳିତା ହୋଇ ପଡ଼ିଛି)

ବିକାଶ : ଆପଣଙ୍କୁ ମୁଁ ଶତ ସହସ୍ର ଧନ୍ୟବାଦ ଜଣାଉଛି ।

ରେଖା : ଆପଣ କିଏ ?

ବିକାଶ : ଶଙ୍କର ଠିକ୍ କହୁଥିଲା । ପୁରୀ ସହରରେ ଏଡ଼େ ସୁନ୍ଦର ଗୋଟାଏ କ୍ଲବ ଥାଇପାରେ ମୁଁ ଜାଣି ନଥିଲି ।

ରେଖା : କ୍ଲବ୍ । ଆପଣ କ୍ଲବ୍‌କୁ ଆସିଥିଲେ ?

ବିକାଶ : ଆସିଥିଲି ନୁହେଁ । ଆସିଛି ।

ରେଖା : ଆପଣ ବୋଧେ ଭୁଲ କରୁଛନ୍ତି ।···ଏଇଟା କ୍ଲବ୍ ନୁହେଁ ।

ବିକାଶ : କ୍ଲବ୍ ନୁହେଁ ?

ରେଖା : ନା, ଆପଣ କ୍ଲବ୍‌ରୁ ବାହାର ଆସି ଏଠି ମୋ ଘରେ ମୋ ସହିତ କଥାବାର୍ତ୍ତା କରୁଚନ୍ତି ।

ବିକାଶ : ଓ ! ମୁଁ—ମୁଁ ତେବେ ଭୁଲ୍ କରିଚି ।

ରେଖା : ଭୁଲ୍‌ତ ଆପଣ ନିଶ୍ଚୟ କରିଚନ୍ତି । କାରଣ ଏ ଅବସ୍ଥାରେ ଆପଣ କୌଣସି ଭଦ୍ରଲୋକର ଘରକୁ ଯିବା ଉଚିତ ନୁହେଁ ।

ବିକାଶ : ମୋର ଭୁଲ୍ ମୁଁ ସ୍ୱୀକାର କରୁଚି । କିନ୍ତୁ ଏଠିକି ମୁଁ ଆସି ନଥାନ୍ତି, ଯଦି ଆପଣଙ୍କର ଏ କବିତା କେଉଁଆଡ଼ୁ ମୋ କାନରେ ପଡ଼ି ନଥାନ୍ତା ! ଆପଣର ଏ କବିତା ପାଠ ହିଁ ମତେ ଏଠିକି ଟାଣି ଆଣିଚି ।

ରେଖା : କବିତା ! ଏ କବିତାତ ମୁଁ ପଢ଼ୁଥିଲି ମୋ' ସାନଭଉଣୀକୁ ବୁଝେଇବି ବୋଲି । (ବିକାଶ ଯିବାକୁ ଲାଗିଲା) ଆହା—ହା, ଧୀରେ ଯାନ୍ତୁ, ପଡ଼ିଯିବେ । (ଡାକିଲା) ଶାମ ଶାମ ।

ଶାମ : (ଭିତରୁ) ଦେଈ ।

ରେଖା : ବାହାର ଆଲୁଅଟା ଟିକିଏ ଜାଳି ଦେ'ତ । ସେ ବାବୁ ଯାଉଚନ୍ତି ।

(ବୟସ୍କ ଭୃତ୍ୟ ଶାମ ଆସିଲା)

ଶାମ : (ନିମ୍ନ ସ୍ୱରରେ) ଏଁ ! ଏ କିଏ ଦେଈ ? ସିଏ ଗୋଟାଏ···

ରେଖା : (ନିମ୍ନ ସ୍ୱରରେ) ଆରେ ସିଏ ସିଏ ହୁଅନ୍ତୁ କି ଯାହା ହୁଅନ୍ତୁ, ଜଣେ ଭଦ୍ରଲୋକତ !···ଯା' ଆଲୁଅଟା ଜାଳିଦେ ।

ଶାମ : ଯାଉଚି ।

(ପ୍ରସ୍ଥାନ । ସେତେବେଳକୁ ରେଖାର ୧୪।୧୫ ବର୍ଷ ବୟସର ସାନ ଭଉଣୀ ସୀମା ଆସି ଏ ଦୃଶ୍ୟ ଦେଖୁଥାଏ ।)

ସୀମା : ସେ କିଏ ଅପା ?

ରେଖା : ମୁଁ କେମିତି ଜାଣିବି ସେ କିଏ ?

ସୀମା : ସେ ଏମିତି ହେଉଥିଲେ କାହିଁକି ?

ରେଖା : କେମିତି ହେଉଥିଲେ ?

ସୀମା : ଦେଖିଲୁ ନାହିଁ, କେମିତି ଟଳି ଟଳି କଥାବାର୍ତ୍ତା କରୁଥିଲେ । ଆଖି ଦିଟା ଯେମିତି ଲାଲ୍ ଲାଲ୍ ।

ରେଖା : କେଜାଣି, ମୁଁ କିଛି ଦେଖିନି ।

ସୀମା : ତୁ ତାଙ୍କୁ ମିଛକଥା କହିଲୁ କାହିଁକି ?

ରେଖା : ମିଛ କଥା ?

ସୀମା : ତୁ ତ ତୋର ଇଂରେଜୀ କବିତା ପଢ଼ୁଥିଲୁ ! ମିଛରେ କାହିଁକି କହିଲୁ ଯେ ମତେ ବୁଝେଇବା ପାଇଁ ତୁ ପଢ଼ୁଚୁ ?

ରେଖା : ତୁ ବୁଝିବା କଥା ନକହିଥିଲେ, ମତେ କାଲେ ସେ ଏଣ୍ଡତେଣ୍ଡ କ'ଣ ପଚାରି-ଥାନ୍ତେ, ଏଇ ଡରରେ ମୁଁ ତାଙ୍କୁ ମିଛ କଥା କହିଲି ।

ସୀମା : ଏଇଟା କି କବିତା ଅପା ?— କ'ଣ ଏଥିରେ ଅଛି ? ତୋ କବିତା ପଢ଼ା ଶୁଣି ସେ ଏଠିକି ଆସିଥିଲେ ପରା ? କାହିଁକି ? ଏ କବିତାର ମାନେ କ'ଣ ।

ରେଖା : ମୁଁ ଜାଣିନି କିଛି ।

(ରେଖା ଯେପରି ମନେ ମନେ କ'ଣ ଭାବି ଅନ୍ୟମସ୍କ ହୋଇ ପଡ଼ୁଥାଏ)

ସୀମା : ଜାଣି ନଥିବୁ ଏକା ! ଏମିତି ମନଦେଇ ବସି ପଢ଼ୁଥିଲୁ, ପଚାରିଲାରୁ ମତେ ଭୁଲେଇ ଦଉଚୁ ? କହ'ନ ଅପା, ଏ କବିତାର ଅର୍ଥ କ'ଣ ? ଅପା, ଅପା ! ଆରେ ତୋତେ ଶୁଭୁନାହିଁ ନା କ'ଣ ?

(ରେଖା ଆହୁରି ଅନ୍ୟମନସ୍କ)

ରେଖା : ଓଃ ! କାହିଁକି ସେମିତି ହଉଚୁ ?

ସୀମା : ଏମିତି ଏକ ଲୟରେ ତେଣିକି ଚାହିଁ କ'ଣ ବସି ଭାବୁଥିଲୁ ?

ରେଖା : ତୁ ଭାରି କଥା କହି ଶିଖିଲୁଣି ସୀମା ! ମୁଁ ଭାବିବି କ'ଣ କାହିଁକି ?

ସୀମା : ସେଇ କଥାତ ମୁଁ ପଚାରୁଚି । ତୁ ଏମିତି ରାଗୁଚୁ କାଇଁକି ?

ରେଖା : ତୁ ଚୁପ ହ'ତ ।

ସୀମା : ତୁ ମତେ ଆଗେ ଏ କବିତାଟା ବୁଝେଇ ଦେ ।

ରେଖା : ଆଲୋ ତୁ ସେଥିରୁ ପାଇବୁ କ'ଣ ?

ସୀମା : କିଛି ନ ପାଇଲେ ବି, ତୁ ମତେ ବୁଝେଇଦେ ।

ରେଖା : କି ଏକଜିଦିଆ ପିଲା ! ଆଚ୍ଛା, ଶୁଣ । ଏ କବିତାର ଅର୍ଥ ହେଉଚି ଯେ ମଣିଷ ଆଉ ମଣିଷ ହୋଇ ନ ରହି ପଶୁ ସହିତ ମିଶିଯିବା ଉଚିତ ।

ସୀମା : କାହିଁକଲୋ ମା ?

ରେଖା : କାରଣ ମଣିଷପରି ସେମାନେ, ବାରକଥା ନେଇ ମୁଣ୍ଡ ଖେଳାନ୍ତି ନାହିଁ । ତାଙ୍କ ନିଜ କାମରେ ସେମାନେ ନିଜେ ସନ୍ତୁଷ୍ଟ । କେମିତି ଭାବରେ ଠାକୁର ଦେବତା ପୂଜା କରିବାକୁ ହବ ସେ ଆଲୋଚନା ସେମାନେ କରନ୍ତି ନାହିଁ । ଧନ ସଂପତ୍ତି ନାହିଁ ଯେ ସେ ଚିନ୍ତା ତାଙ୍କୁ କରିବାକୁ ପଡ଼ିବ । କେହି ରାଜାର ପ୍ରଜା ନୁହଁନ୍ତି କି ମହାଜନର ଖାତକ ନୁହଁନ୍ତି । ନେତା କି ବଡ଼ଲୋକ ବୋଲି

କେହୁ ପୂଜା ପାଏ ନାହିଁ କ ଗଦେବ ମୂଲଆ ବୋଲ କେହୁ ନର୍ଯ୍ୟାତନା ସହେ ନାହିଁ । ମୋଟ ଉପରେ ଦେହର ବଳ ଛଡ଼ା ଅନ୍ୟ ସବୁଥିରେ ସେମାନେ ସମାନ ।

ସୀମା : ଏଇଆ ? ଏଇଥିପାଇଁ ମଣିଷଯାକ ସବୁ ପଶୁ ହେଇଗିବେ ! ଏଇ ଲେଖା ତୁ ପଢ଼ୁଚୁ ! ଆଉ ସ୍ୱାକୁ ଶୁଣି ସେ ଆମ ଘର ଭିତରକୁ ପଶିଆସି ତୋତେ ଶତ ସହସ୍ର ଧନ୍ୟବାଦ ଜଣାଉଥିଲେ । ମୁଁ ଭାବୁଚି ସେ ନକେ ଗୋଟାଏ ପଶୁ । ଲାଙ୍ଗୁଳହୀନ ଶୃଗାଳ । ସମସ୍ତଙ୍କୁ ସେଇ ବାଟରେ ଟାଣିବାକୁ ବସିଛନ୍ତି ।

ରେଖା : ହଉ ହଉ ତୁ ଯା' ଏଠୁ । ପଣ୍ଡିତଙ୍କ ଭଳି ବସି ବ୍ୟାଖ୍ୟା କରୁଚ !! ଯା' ଏଠୁ ।

ସୀମା : ଯାଉଚିତ । ଏମିତ ଚଢ଼ୁଚୁ କାହିଁକ ?

(ସୀମାର ପ୍ରସ୍ଥାନ । କିଛିଏ ପରେ ଶ୍ୟାମ ଆସିଲା ।)

ରେଖା : ଏତେବେଳ ଯାଏ ତେଣେ କ'ଣ କରୁଥିଲୁ ।

ଶ୍ୟାମ : ମଜ୍ଜା ଦେଖୁଥିଲି ।

ରେଖା : ମଜ୍ଜା ଦେଖୁଥିଲୁ ?

ଶ୍ୟାମ . ସେଇ ଯୋଉ ଲୋକଟା କୁହେଁ ଦେଇ, ସେ କଏ ଜାଣିଚ ?

ରେଖା : କଏ ?

ଶ୍ୟାମ : ଶଙ୍କର ବାବୁଙ୍କ ସାଙ୍ଗ ।

ରେଖା : ଆମ ଶଙ୍କର ବାବୁ ?

ଶ୍ୟାମ : ହଁ, ତାଙ୍କର ସାଙ୍ଗ ସେ ।

ରେଖା : ତୁ କେମିତ ଜାଣିଲୁ ?

ଶ୍ୟାମ : ଶଙ୍କର ବାବୁଙ୍କ ମଟରରେ ପଗ କୁହେଁ ଗଲେ । ହେଲେ ଦେଇ ଇଏ କଣ କମ୍ ଜଲୁକ ! ଏଠୁ ଯିବାକୁ ଏକଦମ୍ ଅରାଜ । ଶଙ୍କର ବାବୁ ଉନାଥର ତାଙ୍କୁ ନେଇ ମଟରରେ ବସାଇଲେ—ସେ ଉନାଥର ଯାକ ମଟରରୁ ଓହ୍ଲାଇ ଆସିଲେ । ଦୁହିଁଙ୍କ ଭିତରେ ଇଂରାଜୀରେ କେତେ କଣ କଥାବାର୍ତ୍ତା ଚାଲୁଥାଏ । ଆମର ଘରକଥା କ'ଣ ପଡ଼ୁଥାଏ ନା କ'ଣ । ଶେଷକୁ ଶଙ୍କରବାବୁ ଜୋର୍‌କର ତାଙ୍କୁ ମଟରରେ ବସାଇ ନେଇଗଲେ ।

ରେଖା : ତାଙ୍କ ନାଁ କଣ ଜାଣିପାରଚୁ ?

ଶାମ : ହଁ, ଜାଣି ପାରେ । ତାଙ୍କ ନାଁ ବିକାଶ ।

ରେଖା : ବିକାଶ !! (ନାଁ ଟା ଶୁଣି ରେଖା ଚମକି ଉଠେ)

ଶାମ : ତମେ ତାଙ୍କୁ ଚିହ୍ନିଚ ନା କଣ ଦେଈ ?

ରେଖା : ମୁଁ ? ନା ନା ମୁଁ ତାଙ୍କୁ ଚିହ୍ନେନା । ସେ...ସେ ଚା'ହେଲେ ଗଲେଣି ?

ଶାମ : କହିଲି ପରା, ଶଙ୍କର ବାବୁ ତାଙ୍କୁ ମଟରରେ ବସେଇ ନେଇଗଲେ ।

(ପ୍ରାୟ ବିଚଳିତ ଅବସ୍ଥାରେ ରେଖା ଉଠି ଠିଆ ହେଲା)

ରେଖା : ହୁଁ ।

ଶାମ : ଦେଈ ।

ରେଖା : ଏଁ ।

ଶାମ : କ'ଣ ଆଉ କହିବ ଦେଈ ?

ରେଖା : ନା, ତୁ ଯା ।

(ଶାମ ଭିତରକୁ ଗଲା । ରେଖା ଦୁଆର ମୁହଁ ନିକଟକୁ ଆସି ବାହାରକୁ ଚାହିଁ ରହିଥାଏ)

# ଅନ୍ତିମପର୍ବ

[ପରବର୍ତ୍ତୀ ଦିବସର ଅପରାହ୍ନ। ସମୁଦ୍ରକୂଳ। ଏକ ଅପେକ୍ଷାକୃତ ନିର୍ଜନ ସ୍ଥାନରେ ବସିଚନ୍ତି ଶଙ୍କର ଓ ବିକାଶ। ଦୁହେଁ ଆଲୋଚନାରତ ]

ବିକାଶ : ଦେଖୁଚୁତ ଶଙ୍କର ? ଆମ ଆଖି ଆଗରେ ଏଇ ସମୁଦ୍ର। ସମୁଦ୍ରକୁ ପୂର୍ଣ୍ଣ କରିବାକୁ ଅଂସଖ୍ୟ ନଦୀ ସମୁଦ୍ର ଦେହରେ ଆସି ମିଶିଚନ୍ତି। କିନ୍ତୁ କାହିଁ ? ସୃଷ୍ଟିର ଆରମ୍ଭରୁ ସମୁଦ୍ର ଏମିତି ଅବସ୍ଥାରେ ପଡ଼ିରହିଚି।

ଶଙ୍କର : ସମୁଦ୍ର ପୂର୍ଣ୍ଣ ରହିଚୁ କି ଅପୂର୍ଣ୍ଣ ରହିଚି ତାହାର ହିସାବ ଏ ଦୁନିଆରେ କେହି ଦେଇ ପାରିବେ ନାହିଁ। ଆଉ ଯଦି ତୋର କଥା ଅନୁସାରେ ସମୁଦ୍ରଟା ଅପୂର୍ଣ୍ଣ, ତେବେ ଏଥିରେ କାହାରବା କ'ଣ କ୍ଷତି ହେଇ ଯାଉଚି।

ବିକାଶ : ଲାଭ କ୍ଷତି କଥା ମୁଁ କହୁନି। କିନ୍ତୁ ଏଇଥିରୁ କ'ଣ ପ୍ରମାଣିତ ହେଉନି ଯେ ଏ ସୃଷ୍ଟିରେ ନୂଆ କିଛି ନାହିଁ ! ସବୁ ସେଇ ପୁରୁଣା-ଅଚଳ।

ଶଙ୍କର : ଥାଉ ସେ କଥା। କାଲିକାର ଘଟଣା ନେଇ କ'ଣ ତୁ କହିବାକୁ ଚାହୁଁ କହ।

ବିକାଶ : କିଛି ନା।

ଶଙ୍କର : ମୁଁ ତୋତେ କ୍ଲବ୍‌କୁ ନେଇ ଯାଇଥିଲି ବୋଲି ତୁ ତା'ହେଲେ ମୋ ଉପରେ ରାଗ କରିଚୁ।

ବିକାଶ : ନା। ମୁଁ ଖାଲି ଭାବୁଚି କେତେ ସହଜରେ ମଣିଷ-ଜୀବନ ଧ୍ୱଂସ ପଥକୁ ଟାଣି ହୋଇଯାଏ। ମଣିଷ କେମିତି ଅତି ସୁନ୍ଦର ଭାବେ ନର୍କ ପଥରେ ନେଇ ତା' ପାଦ ଥୁଏ।

ଶଙ୍କର : ତୋର କାଲିକାର ଅଭିଜ୍ଞତାରୁ ତୁ ଏ କଥା କହୁଚୁ ?

ବିକାଶ : ହଁ ଏତ ସେଇଆ।

ଶଙ୍କର : ସେଥିପାଇଁ କିନ୍ତୁ ଦାୟୀ କିଏ ?

ବିକାଶ : (ହସି) ମୋର ଏ ଦୁଷ୍କର୍ମ ପାଇଁ ମୁଁ ତ କାହା ପାଖରୁ କୈଫିୟତ ଦାବି କରୁନି ଯେ, ଏଥିପାଇଁ କାହାକୁ ମୁଁ ଦାୟୀ କରିବି।

ଶଙ୍କର : ଦୁଷ୍କର୍ମ !! ତା' ହେଲେ ତୁ ଧରି ନେଇଚୁ ଯେ କାଲି ସଂଧ୍ୟାର ଘଟଣା ତୋର ଏକ ଦୁଷ୍କର୍ମର କାହାଣୀ।

ବିକାଶ : ହଁ ।

ଶଙ୍କର : ଆଉ ସେଥିପାଇଁ ତୁ ଅନୁତାପ କରୁଚୁ ?

ବିକାଶ : ଲଜ୍ଜାରେ ମୁହଁ ଢାଙ୍କି ରହିବା ଅପେକ୍ଷା ଅନୁତାପ କରିବା ମୁଁ ଉଚିତ ମନେକରେ ।

ଶଙ୍କର : ଆଉ ଏଇଟାହିଁ ବୋଧହୁଏ ତୋର କାମ୍ୟ—ତୋର ବିଳାସ ?

ବିକାଶ : ମାନେ ? (ବିକାଶ ମନରେ ତୀବ୍ର ପ୍ରତିକ୍ରିୟା)

ଶଙ୍କର : ମୋ ଅନୁମାନ···ନା, ମୋର ଆଶଙ୍କା ଠିକ୍ ।

ବିକାଶ : ଆଶଙ୍କା ?

ଶଙ୍କର : ମୁଁ ତୋତେ ପରୀକ୍ଷା କରିବ ବୋଲି କାଲି କ୍ଲବ୍‌କୁ ଡାକି ନେଇଥିଲି ।

ବିକାଶ : କ'ଣ ତୁ କହୁଚୁ ମୁଁ କିଛି ବୁଝି ପାରୁନି ଶଙ୍କର ।

ଶଙ୍କର : ତୋ'ର ବନ୍ଧୁବାନ୍ଧବ ଆତ୍ମୀୟ ପରିବାରଙ୍କଠୁଁ ମୁଁ ଶୁଣିଚି ଆଉ ମୁଁ ନିଜେ ମଧ୍ୟ ଅତି ନିଭୃତ ଭାବରେ ଲକ୍ଷ୍ୟ କରି ଆସିଚି ଯେ ତୋ ମନ ଭିତରେ ଗୋଟାଏ ବିଷାକ୍ତ କୀଟ ସ୍ଥାନ ପାଇଚି । ସେଇଥି ପାଇଁ କାଲି ତୋତେ ମୁଁ ଯାହା କହୁଥିଲି—ତୁ ଯେମିତି ଗୋଟାଏ ଭୁଲର ଦୁନିଆ ଭିତରେ ଗଢ଼ିକରି ରହୁଚୁ । ତୋ'ର ଆଚରବ୍ୟବହାର, ଦୈନନ୍ଦିନ ଜୀବନଯାତ୍ରା ସବୁଥିରେ ଯେମିତି ଗୋଟାଏ ଅବସ୍ଥମତାର ପ୍ରଭାବ···ଗୋଟାଏ ଅବାଞ୍ଛିତ ରେଖାପାତ । ଯେଉଁ ସବୁ ଆଶା ଉତ୍ସାହ ଭରସା ନେଇ ଲୋକ ସୁଖୀ ଜୀବନର ସନ୍ଧାନ କରେ ତୁ ଯେମିତି ସେ ସବୁକୁ ଜାଣିଶୁଣି ମୂଳରୁ ଭାଙ୍ଗି ନଷ୍ଟ କରି ଦେଉଚୁ ।

ବିକାଶ : ବାଜେ କଥା । ତୋର ସମସ୍ତ ଅଭିଯୋଗ ମୋର ଅନୁଭୂତିର ବାହାରେ ।

ଶଙ୍କର : ହଁ, ଅନୁଭୂତିର ବାହାରେ, କାରଣ ତୋର ଏଇ ଯେ ହତାଶଭାବ—ଏଇ ଯେ ନଷ୍ଟ, ପ୍ରତିହତ ଦୃଷ୍ଟି କୋଣ—ଏଇ ଯେ Cynicism, Melancholy —ଏସବୁକୁ ନେଇ ତ ତୁ ଦୁଃଖ ପାଉନା ! ତୁ ପାଉ ବିଳାସ, ତୁ କରୁ ଉପଭୋଗ ।

ବିକାଶ : ତୋ'ର ଏ ବିଶ୍ଳେଷଣ ବନ୍ଦ କରି ତୁ ମତେ ଦୟା କରି କହି ପାରିବୁକି କାଲି ତୁ ମୋ ଉପରେ କି ପରୀକ୍ଷା—କି Experiment କରିଥିଲୁ ?

ଶଙ୍କର : ସେଇ କଥା ମୁଁ କହୁଚି । ଏଇ ମୋତେ ଦେଖ୍ । ଆଧୁନିକ ଶିକ୍ଷା ଦୀକ୍ଷା ଅଛି । ବ୍ୟବସାୟ କରି ବେଶ୍ ଦି ପଇସା ରୋଜଗାର କରୁଚି । ବାହାରୁ ମତେ ଦେଖି ଲୋକ ଭାବନ୍ତି ଯେ, ଲୋକଟା ଖୁବ୍ ଫୁର୍ତ୍ତି, ଖୁବ୍ ଖୁସି

ମିଷ୍ଟାସରେ ଧନ କାଟୁଚ । ଆଉ ଏ ଫୁର୍ତ୍ତି—ଏ ହସଖୁସିର ଉପାଦାନ ନାଷ୍ଟି ଆଉ ନଶା ବୋଲି ଲୋକେ ସିଦ୍ଧାନ୍ତ କରି ନେଇଛନ୍ତି । କାଲି ସେଇ ଶଙ୍କର ଦାସ ସାଥିରେ ତୁ ଗଲୁ କ୍ଲବକୁ । ଆଉ ତୋ ନିଜ ଆଖିରେ ତ ତୁ ଦେଖିଲୁ—କକ୍‌ଟେଲ୍‌ର ସ୍ୱାଦ ମୁଁ ଗ୍ରୁଖିନ । ଫ୍ଲାସ୍ ଟେବୁଲର ପାଖ ପୁଢା ମୁଁ ମାଡ଼ିନ । ତୁ ଆଶ୍ଚର୍ଯ୍ୟ ହେଉଛୁ ?? କାଲି ନୁହେଁ କି କେବେ ନୁହେଁ । ହଁ ବିକାଶ, ମୋ ଜୀବନରେ କେବେ ମୁଁ ନଶା ଖାଇନି । ଜୁଆ ଖେଳିନ । ଅଥଚ ଏ ସବୁର ପ୍ରଖର ସୁଅ ଯେଉଁଠି ଛୁଟିଚି, ସେଠିକି ମୁଁ ପ୍ରାୟ ପ୍ରତିଦିନ ଯାଏ । ହସେ, ବସେ, ଗପ କରେ, ନିର୍ଦ୍ଦୋଷ ଆମୋଦ ପ୍ରମୋଦରେ ମାତି ଘରକୁ ଫେରେ । ଅବଶ୍ୟ ଏ କଥା କହି ମୋ ବାହାଦୁରି ମୁଁ ତୋ ଆଗରେ ଘୋଷଣା କରୁନି । ମୁଁ ତୋର କଥା କହୁଚ; ଜୀବନ ଦର୍ଶନ ଦିଗରୁ ବିଚାର କଲେ ତୁ ମୋର ସମ୍ପୂର୍ଣ୍ଣ ବିପରୀତ । Cynicism—ଖାଉଟ୍ଟ୍ରୁହିତାର ଏକ ଜୀବନ୍ତ ଅବତାର । ଅଥଚ ତୁ କାଲି ଜୀବନରେ ପ୍ରଥମ ଥର ପାଇଁ ଏପରି ଏକ ସ୍ଥାନରେ ପାଦ-ଦେଇ, ଜଣେ ଅପରିଚିତ ବନ୍ଧୁଙ୍କ ଅନୁରୋଧରେ ଜିନ୍, ରମ୍, ହୁଇସ୍କି କିଛି ବାଦ୍ ଦେଇନୁ । ଏଠାକାର ସବୁଠୁ Dangerous gambler ବିଶ୍ୱନାଥଜୀଙ୍କ ଟେବୁଲରେ Flash ଖେଳିଚୁ ! କାହିଁକି ?

ବିକାଶ—ସେଇକଥା ମୁଁ ତୋ ପାଖରେ ଦାବୀ କରୁଚ ଶଙ୍କର, କାହିଁକି ତୁ ମତେ ବାଧା ଦେଲୁନି ? ସେ ନର୍କ ଭିତରେ ପାଦ ଥୋଇବା ପୂର୍ବରୁ କାହିଁକି ତୁ ମତେ ସେଠୁ ଟାଣି ଆଣିଲୁ ନାହିଁ ?

ଶଙ୍କର : ଟାଣି ଆଣିଥିଲେ ଆଜି ତୋର ଏ ବିଳାପ ଏ ଅନୁତାପ ଏ ଅନୁଶୋଚନାର ସ୍ୱର ଶୁଣିବାକୁ ମିଳିଥାନ୍ତା କୋଉଠୁ ?

ବିକାଶ : ଛି, ଛି, ଛି, ! ଘୃଣାରେ କ୍ଷୋଭରେ ମୋର ସାରା ଦେହଟା ଯେମିତି ଜଳିଯାଉଚି । ଏଇ କଣ ସଭ୍ୟତା ? ଏଇ କଣ ମଣିଷର ଜୀବନ ଧାରା ? ବଞ୍ଚି ରହିବାର ପାଥେୟ ? ଏମିତି କଳୁଷିତ ବିଭତ୍ସ ଜୀବନ ନେଇ ବଞ୍ଚି ରହିବା ଅପେକ୍ଷା ମରିଯିବା ଭଲ ।

ଶଙ୍କର : କିନ୍ତୁ କାହିଁକି ? ତୋ ସ୍ତରର ଜଣେ ଲୋକ—ଉଚ୍ଚ ଶିକ୍ଷିତ, ବିଦ୍ୱାନ, ସୁବକ୍ତା, ସୁଲେଖକ—ଦେଶପାଇଁ ନିସ୍ୱାର୍ଥପର ସେବା କରି ଆସିଚୁ । ଆଜି ଜାଣି କରି ହେଉ ବା ଅଜଣାରେ ହେଉ, ତୁ ଗୋଟାଏ ପେଗ୍ ମଦ ଖାଇଲୁ ବୋଲି, ବା ଗୋଟାଏ ବାଜି Flash ଖେଳିଲୁ ବୋଲି ଜୀବନଟା ତୋର ଏମିତି ଦୁର୍ବିସହ ହୋଇ ଉଠୁଚି କାହିଁକି ? ସ୍ୱାକୁ ଯଦି ତୁ ଦୁଷ୍କର୍ମ ବୋଲି

କହୁ, ତା' ହେଲେ ତୋ'ର ସମସ୍ତ ଜୀବନ ଧରି ସବୁ ସୁକର୍ମର କଣ କିଛି ମୂଲ୍ୟ ନାହିଁ ? ତୋର କାଲିର୍ପଠର ଇତିହାସ ମତେ ଦୁଃଖ ଦେଇନ ପ୍ରକାଶ ଦୁଃଖ ଦେଉଚି ତୋର ଆଜିର ଏଇ 'ବ୍ୟବହାର । ଆଉ ସେଇଥିପାଇଁ ମୁଁ କହୁଚି ତୋ ମନ ଭିତରେ କାଇଁ ରହିଛି ଗୋଟାଏ ବିଷାକ୍ତ କୀଟ ।

ପ୍ରକାଶ : ଅଲେ କହୁଚି ତୋର ଏ ସବୁ ଭୁଲ ବିଗ୍ଚର, ଭୁଲ ବିଶ୍ଳେଷଣ । ମୁଁ ଠିକ୍ ବାଟରେ ହିଁ ଚାଲିଚି ।

ଶଙ୍କର : ଆଚ୍ଛା, ମୋର ଆଉ ଗୋଟାଏ ପ୍ରଶ୍ନ ମୁଁ ତୋତେ ଏପର୍ଯ୍ୟନ୍ତ ପଚାରିନ । କାଲି କ୍ଲବ୍‌ରୁ ବାହାରିଯାଇ ତୁ ରେଖା ଘରକୁ ଯାଇଥିଲୁ କାହିଁକି ? କ'ଣ ତା' କବିତା ପାଠ ଶୁଣି, ନା— (ପ୍ରକାଶ ମୁହଁର ଭାବରେ ସ୍ପଷ୍ଟ ପରିବର୍ତ୍ତନ) କଣ ହେଲା ପ୍ରକାଶ ? ତଳକୁ ମୁହଁ ପୋତି ବସିଲୁ କାହିଁକି ? ପ୍ରକାଶ ?

ପ୍ରକାଶ : ତୁ ଠିକ୍ ଜାଣୁ ଶଙ୍କର ସେ ଝିଅଟି କିଏ ? ରେଖା ?

ଶଙ୍କର : ଠିକ୍ ଜାଣେ କଣ ? ସେ ମୋର ଆତ୍ମୀୟା ନ ହେଲେ ମଧ୍ୟ ଆତ୍ମୀୟାଠୁ ବଳି । ତାଙ୍କ ଘର ସହିତ ମୋର ଅତି ନିକଟ ସମ୍ପର୍କ ।

ପ୍ରକାଶ : ଶଙ୍କର !

ଶଙ୍କର : କ'ଣ ହେଲା ? ଏମିତି ଚମକି ଉଠିଲୁ କାହିଁକି ?

ପ୍ରକାଶ : ନା, କଣ କହୁଥିଲୁ କହ ।

ଶଙ୍କର ! ରେଖା କଥା ଶୁଣିବାକୁ ଚାହୁଁ ?

ପ୍ରକାଶ : ହଁ ।

ଶଙ୍କର : କାହିଁକି ?

ପ୍ରକାଶ : ଆଗେ କହ, ତା'ପରେ ମୋ କଥା ମୁଁ କହିବି ।

ଶଙ୍କର : ଆଚ୍ଛା ଶୁଣ । ଅନେକ ଦିନ ତଳେ ସେମାନେ ପୁରୀରେ ରହୁଥିଲେ । ସେତେବେଳେ ଆମ କୁଟୁମ୍ବ ସହିତ ସେମାନଙ୍କର ଅତି ଭଲ ସମ୍ପର୍କ ଥିଲା ।

ପ୍ରକାଶ : ରେଖାର ବାପା ?

ଶଙ୍କର : ସରକାରୀ ଚାକିରିଆ-ଅନ୍ୟ ଜାଗାକୁ ବଦଳି ହୋଇଗଲେ । ବାଲେଶ୍ୱରରେ ଥିଲାବେଳେ, ଏଇ ପାଞ୍ଚ ଛଅ ବର୍ଷ ତଳର କଥା—ରେଖାର ବାପା ମରିଗଲେ ।

ପ୍ରକାଶ : ତା'ପରେ ?

ଶଙ୍କର : ଭାଗ୍ୟକୁ ପୁରୀରେ ଏ ଘର ଖଣ୍ଡିକ ସେତେବେଳକୁ ସେ କିଣି ସାରିଥିଲେ । ରେଖା ସେଇ ବର୍ଷ ବି. ଏ. ପାଶ୍ କଲା । ମୋର ଚେଷ୍ଟାରେ ଏଠାକାର

ଗାର୍ଲସ୍କୁଲରେ ସେ ଶିକ୍ଷୟିତ୍ରୀ ହୋଇ ପାରିଚି । ଘରେ ତାର ବିଧବା ରୋଗିଣୀ ମା, ଆଉ ସାନ ଭଉଣୀ । ବର୍ତ୍ତମାନ ମୁଁ ସେମାନଙ୍କର ଅଭିଭାବକ କହିଲେ ଚଳେ ।

ବିକାଶ : କାଲି ତା ମୁହଁରୁ କବିତା ପାଠ ଶୁଣି ଗୋଟାଏ ଆବେଗରେ ହୁଏତ ମୁଁ ଘର ଭିତରକୁ ପଶିଗଲି । ସେତେବେଳକୁ ମୁଁ ଯେମିତି ସ୍ପଷ୍ଟ କିଛି ଦେଖିପାରୁ ନ ଥାଏ । ଝାପ୍‌ସା ଦୃଷ୍ଟି ଭିତରେ ଦେଖି ପାରିଲି, ଦଶ ବର୍ଷ ତଳର ସେଇ ମୁହଁ !

ଶଙ୍କର : ରେଖାକୁ ତୁ ତା ହେଲେ ଜାଣିଥିଲୁ ?

ବିକାଶ : ହଁ, ତୁ ମୋର ବନ୍ଧୁ ଆଉ ରେଖାର ଶୁଭାକାଂକ୍ଷୀ । କାଲି ଗୋଟାଏ ଅତି ଅସ୍ୱାଭାବିକ ପରିସ୍ଥିତିରେ ତୁ ମତେ ସେଠୁ ଉଦ୍ଧାର କରି ଆଣିଚୁ । ଅତଏବ ତୋ ପାଖରୁ କୌଣସି କଥା ଲୁଚାଇ ଲାଭ ନାହିଁ । ଶୁଣ୍ ! ଦଶ ବର୍ଷ ତଳର କଥା—ମୁଁ M. A. କ୍ଲାସର ଛାତ୍ର । ଗ୍ରୀଷ୍ମ ଛୁଟିରେ ପୁରୀ ବୁଲି ଆସିଥାଏ । ସେଦିନ ପ୍ରାୟ ସନ୍ଧ୍ୟା ହୋଇ ଆସୁଚି । ସମୁଦ୍ରକୂଳରେ ଠିକ୍ ଏଇ ଯାଗାରେ ଠିଆ ହୋଇ ରହିଚି । ହଠାତ୍ ବୁଲି ଦେଖିଲି, ମୋ ପଛରୁ ଗୋଟିଏ ଚଉଦ ପନ୍ଦର ବର୍ଷର ଝିଅ ଜୋର୍‌ରେ ଦଉଡ଼ି ଦଉଡ଼ି ଆସୁଛି । ଘୁଞ୍ଚିବାର ଅବସର ମୁଁ ପାଇଲି ନାହିଁ । ମୋ ଦେହରେ ଧକ୍କା ଖାଇ ଝିଅଟି ପଡ଼ିଗଲା ।

ଶଙ୍କର : କିଏ ସେ ଝିଅ ? ଏଇ ରେଖା ?

ବିକାଶ : ହଁ । ସମୁଦ୍ର କଙ୍କଡ଼ା ପଛରେ ଦଉଡ଼ି ଦଉଡ଼ି ତା'ର ଏ ଦୁର୍ଦ୍ଦଶା । ତାର ସେ ଅବସ୍ଥା ଦେଖି ମୋର ଦୁଃଖ ହେଉଥିଲା କି ନାହିଁ ମୁଁ କହି ପାରିବି ନାହିଁ, ତେବେ ଆଜି ମୋର ସ୍ପଷ୍ଟ ମନେ ପଡ଼ୁଚି—ଯେମିତି ଭାବରେ ରେଖା ଝୁଣ୍ଟି ପଡ଼ିଲା ଆଉ ଯେମିତି ଭାବରେ ସେ ଝାଡ଼ିଝୁଡ଼ି ହୋଇ ଉଠି ଠିଆ ହେଲା, ସେ ସବୁ ଦେଖି ମୁଁ ଆନନ୍ଦ ଅନୁଭବ କରୁଥାଏ ।

(ଜଣାଗଲା, ବିକାଶର ଏ କାହାଣୀ ଶୁଣି ଶଙ୍କର ମଧ୍ୟ ମନେ ମନେ ଆମୋଦ ଅନୁଭବ କରୁଚି)

ଶଙ୍କର : ତା'ପରେ ?

ବିକାଶ : ମୁଁ ନୁହେଁ, ଦୋଷ ସେଇ କଙ୍କଡ଼ାର—ଆଉ ସେଥିପାଇଁ ସେ ମୋଠାରୁ କ୍ଷମା ଚାହେଁ—ତା ଆଖି ମୁହଁରେ ଏଇ ଭାବ ଖେଳାଇ ସେ ଚାଲି ଯାଉଥିଲା । ହଠାତ୍ ତା ଆଖି ପଡ଼ିଲା ତା ହାତ ଉପରେ । ଗୋଟାଏ ହାତର ସବୁତକ ଚୁଡ଼ି ଭାଙ୍ଗି ଚୂନା ହୋଇ ଯାଇଚି ।

ଶଙ୍କର : ଦୁର୍ଯୋଗ । (ଶଙ୍କର ଓଠରେ ସ୍ମିତ ହସ)

ବିକାଶ : ଫଙ୍ଗଲା ହାତ ଦେଖିଲେ ମା' ବିରକ୍ତ ହେବେ—ଅଥଚ ପାଖରେ କୋଉଠି ଚୁଡ଼ି ଦୋକାନ ନାହିଁ । ନିଜେ ଏ ହାତରୁ ଦୁଇପଟ ଚୁଡ଼ି ନେଇ ଆର ହାତରେ ପିନ୍ଧିବି, ସେ କୌଶଳ ମଧ ତାକୁ ଜଣା ନାହିଁ···ଛଳ ଛଳ ଆଖିରେ ମୋ ଆଡ଼କୁ ଚାହିଁଲା ।

ଶଙ୍କର : ତୁ ପିନ୍ଧାଇ ଦେଲୁ ?

ବିକାଶ : ଏଁ ? ହଁ, ପିନ୍ଧାଇ ଦେଲି । ଲୁହଭରା ଆଖିରେ ତାର ଅସୀମ କୃତଜ୍ଞତା । ମୋର ପରିଚୟ ସେ ନେଇ ଆଉ ତା' ପରିଚୟ ମତେ ଦେଇ ମୋଠୁଁ ବିଦାୟ ନେଲାବେଳେ ତା'ର କିଶୋରୀସୁଲଭ ଚପଳତାରୁ କିଛିଟା ବାଦ୍ ଦେଇ ଧୀର ମଧୁର ସ୍ୱରରେ ମତେ ଅନୁରୋଧ ଜଣାଇ ଗଲା—

ଶଙ୍କର : କି ଅନୁରୋଧ ?

ବିକାଶ : ତା' ପରଦିନ ସେଇ ମୁହଁ ସଞ୍ଜବେଳେ ସମୁଦ୍ରକୂଳକୁ ନିଶ୍ଚୟ ଯେପରି ମୁଁ ଆସିବି, ଏଇ ଅନୁରୋଧ ।

ଶଙ୍କର : ଯାଇଥିଲୁ ତୁ ?

ବିକାଶ : ନା, ମୋ ବାହୁ ବନ୍ଧନରୁ ମୁକ୍ତ ହୋଇ ଗୋଟାଏ କିଶୋରୀ ଝିଅ ରେଖା ଚାଲିଗଲା । ମୁଁ ହୋଷ୍ଟେଲକୁ ଫେରିଲି । ରାତି ପାହି ସକାଳ ହେଲା । କିନ୍ତୁ ତା' ପରଦିନ ସମଗ୍ର ପୁରୀ ସହରଟା ମୋତେ ଯେମିତି ଗୋଟାଏ ଭୂତକୋଠିପରି ବୋଧ ହେଲା । ଅନ୍ତର ବାହାର ସବୁଠି ଯେମିତି କି ଗୋଟାଏ ଜ୍ୱାଳା—ଗୋଟାଏ ଦଂଶନ । ପୁରୀରେ ଆଉ ମୁହୂର୍ତ୍ତେ ରହି ପାରିଲି ନି । କଟକ ଫେରି ଗଲି । ମଝିରେ ମଝିରେ ସେଇ ସ୍ମୃତି ମତେ ବିଚଳିତ କରି ଦଉଥାଏ । ପ୍ରାୟ ଦୁଇମାସ ପରେ ରେଖାଠୁ ଖଣ୍ଡେ ଚିଠି ପାଇଲି । ଲଫାପା ଉପରେ ରେଖା ନାଁ ଦେଖି ଚିଠିଟାକୁ ଆଉ ଖୋଲିବାର ସାହସ କରିନି । ସେମିତି ପୋଡ଼ି ଦେଇଛି । ତା ପରେ ଦିନ ପରେ ଦିନ ଏ ଦଶ ବର୍ଷ ବିତି ଯାଇଛି, ଆଉ ଧୀରେ ଧୀରେ ରେଖାକୁ ମୁଁ ସମ୍ପୂର୍ଣ୍ଣ ଭୁଲି ଯାଇଚି ।

ଶଙ୍କର : ଖାଲି ରେଖାକୁ ତୁ ଭୁଲିନୁ—ତୋ ନିଜକୁ ଭୁଲିନୁ ଏ ସଂସାରକୁ ଭୁଲିଚୁ । ଗୋଟାଏ ପୋଡ଼ା ମନ ନେଇ କେବଳ ଗୋଟାଏ ବ୍ୟର୍ଥ ଜୀବନର ଅଧିକାରୀ ହୋଇ ବସିଚୁ । ଯଦି ଦଶବର୍ଷ ତଳର ସେଇ ଗୋଟାଏ ଘଟଣାରୁ ଆଜି ତୋର ଏ ଅବସ୍ଥା ହୋଇଥାଏ—ଆଉ ସେଇ କାରଣରୁ ରେଖା ଏପର୍ଯ୍ୟନ୍ତ ଅବିବାହିତ ରହିଥାଏ, ତା ହେଲେ ବିକାଶ, ମୋର ବିଶ୍ୱାସ—ତୋର ଆଉ ରେଖାର ବିବାହ—

ବିକାଶ : ଶଙ୍କର !!

ଶଙ୍କର : ହଁ ବିକାଶ, ମୋ ଚେଷ୍ଟାରେ ଯଦି ଏତିକ ହୋଇ ପାରେ, ତାହେଲେ ଅନ୍ତତଃ ମୋର ଦୁଇଜଣ ଅତି ପ୍ରିୟ ଲୋକଙ୍କର କିଛି ହେଲେ ଉପକାର ମୁଁ କରି ପାରିବି । ମୋର ବିଶ୍ୱାସ ମୋର ଏ ପ୍ରସ୍ତାବରେ ତୁମେ ଦୁହେଁ କେହି ଅରାଜି ହବନାହିଁ । ଆ ଯିବା ।

ବିକାଶ : କୁଆଡ଼େ ?

ଶଙ୍କର : ଯିବା···ରେଖା ଘରକୁହିଁ ଯିବା । ଆ ।

ବିକାଶ : ମତେ କ୍ଷମା କର ଶଙ୍କର । ମୁଁ ବର୍ତ୍ତମାନ କୁଆଡ଼େ ଯାଇ ପାରିବି ନାହିଁ । ମତେ ବରଂ ତୁ ଏଠି ଏକୁଟିଆ ରହିବାକୁ ଦେ ।

ଶଙ୍କର : ଆଚ୍ଛା, ମୁଁ ଯାଉଚି । କାଲି ସକାଳେ ତୁ କିନ୍ତୁ ମତେ ତୋ ହୋଟେଲରେ ଅପେକ୍ଷା କରିଥିବୁ । ମୁଁ ଆସି ସେଇଠି ଚା ଖାଇବି ।

(ଶଙ୍କର ଚାଲିଗଲା । କ୍ରମେ ଅନ୍ଧାର ହୋଇ ଆସୁଥାଏ । ଅଦୂରରେ ରେଖା ଓ ଶାମର କଥା ଶୁଣାଗଲା)

ଶାମ : କଣ ଚନ୍ଦ୍ରତୀର୍ଥଯାଏ ଯିବ ଦେଈ ?

ରେଖା : ହି, ତୁ ଘରକୁ ଫେରି ଯା ଶାମ ।

ଶାମ : ତମକୁ ଏକା ଛାଡ଼ି ଦେଇ ଯିବି ?

ରେଖା : ତୁ ଯା'ନା । ହଁ, ଡାକ୍ତରବାବୁଙ୍କ ଦୋକାନ ବାଟେ ଯିବୁ, କହିବୁ, ବୋଉ ଦେହ ଆଜି ବେଶ ଭଲ ଅଛି । ଯଦି ଆଉ କିଛି ଔଷଧ ଦିଅନ୍ତି ନେଇଯିବୁ, ଯା ।

ଶାମ : ମୁଁ ଯାଉଚି ଯେ ଏଣେ ସଞ୍ଜ ଗଡ଼ି ଗଲଣି, ତମକୁ ଏଠି ଏକା ଛାଡ଼ି ଦେଇ—

ରେଖା : ମୁଁ ପିଲା ଛୁଆ ହୋଇଛି ଯେ, ମତେ ଜଗି ବସିବୁ ? ତୁ ଯା ।

ଶାମ : ହେଲେ ତମେ ସଅଳ ସଅଳ ଘରକୁ ଫେରିବ ଦେଈ, ମା ନ ହେଲେ ବ୍ୟସ୍ତ ହେବେ ।

( ଶାମ ଚାଲିଗଲା । ବିକାଶକୁ ଏଇ ସ୍ଥାନରେ ଭେଟିବ ଏଇ ବିଶ୍ୱାସ ନେଇ ରେଖା ଯେପରି ଏଠିକି ଆସିଛି । ଟିକିଏ ପରେ ଅନ୍ଧକାର ଭିତରୁ ବିକାଶ ଧୀର ପଦକ୍ଷେପରେ ଆସି ରେଖା ସାମନାରେ ଠିଆ ହେଲା । ବିକାଶକୁ ଦେଖି ରେଖା ଚମକି ଉଠିଲା ସତ—କିନ୍ତୁ ତା'ର ଅଭିସାର ଯେ ବ୍ୟର୍ଥ ହୋଇନି ଏଇଥି ପାଇଁ ତା ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା । ତା ପାଟିରୁ ଅସ୍ପଷ୍ଟ କେଇପଦ କଥା ବାହାରି ଆସିଲା, ହୁଏତ ସେ କହିଚି "ଆପଣ—

ଆପଣ ଆସିଚନ୍ତି ! ମୁଁ ଜାଣିଥିଲି ଆପଣ ଏଠିକି ଆସିଥିବେ ।"
ତା ପରେ ହଠାତ୍ ସେ କହିଁ କହିଁ ହୋଇ କାନ୍ଦି ଉଠିଲା । ବିକାଶ କିନ୍ତୁ ସ୍ଥିର—ଅବିଚଳିତ । ସେଇପରି କାନ୍ଦି କାନ୍ଦି ରେଖା କଥା ଆରମ୍ଭ କଲା )

ରେଖା : (କାନ୍ଦି) ଦଶବର୍ଷ ତଳେ ଏଇଠି ସାମାନ୍ୟ କେଇଟା ମୁହୂର୍ତ୍ତିପାଇଁ ଆପଣଙ୍କ ସହିତ ଦେଖା । ତଥାପି ସେଦିନ ସେ ସନ୍ଧ୍ୟା ଅନ୍ଧାରରେ ଦେଖା ଏ ମୁହଁର ପ୍ରତ୍ୟେକଟି ରେଖା ମୋ ସ୍ମୃତି ଭିତରେ ଏ ଦଶ ବର୍ଷ କାଳ ମୁଁ ବଞ୍ଚେଇ ରଖିଚି । କିନ୍ତୁ କାଲି କ'ଣ ଯେ ଘଟିଗଲା !! ଆପଣଙ୍କୁ ଦେଖି ମୁଁ ଚିହ୍ନିଲି କି ନ ଚିହ୍ନିଲି, ମୁଁ ନିଜେ କହି ପାରୁନି । (ଟିକିଏ ରହି) ଆପଣତ କାଲି ମୋ ପାଖକୁ ଯାଇ ନଥିଲେ । ସେ କବିତାର ସ୍ୱର ଆପଣଙ୍କୁ ସେଠିକି ଟାଣି ନେଇ ଥିଲା । କିନ୍ତୁ କାହିଁକି ? ଯେଉଁ କବିତା ମଣିଷର ଜାତି—ତାର ସ୍ଥିତି—ତାର ଜୀବନକୁ ଅସ୍ୱୀକାର କରୁଚି, ସେ କବିତା ଆପଣଙ୍କ ମନକୁ ସ୍ପର୍ଶ କଲା କାହିଁକି ? ଶଙ୍କର ବାବୁଙ୍କୁ ଆପଣଙ୍କ କଥା କିଛି ଭିପରି ପଗ୍ଚାରି ପାରିନି । କିନ୍ତୁ ତାଙ୍କ ସ୍ତ୍ରୀଙ୍କଠୁଁ ଆପଣଙ୍କର ସବୁ ଇତିହାସ ମୁଁ ଆଜି ଶୁଣିଚି । ସ୍ତ୍ରୀ ଆପଣଙ୍କର କ'ଣ ହେଲା ? ଆପଣଙ୍କ ଆଖିରେ ଆଜି ସବୁ ତୁଚ୍ଛ—ସବୁ ଅସତ୍ୟ ! ମଣିଷ ଜୀବନର ଅନ୍ଧାର ଦିଗଟା କେବଳ ଆପଣଙ୍କୁ ବାନ୍ଧି ରଖିଚି ! କାହିଁକି ? ସ୍ତ୍ରୀ ମୂଳରେ ଅଛି କିଏ ? କୁହନ୍ତୁ ।···ଏତେ କଥା ମୁଁ ପଗ୍ଚାରି ଯାଉଚି, ଆପଣ ପଦେ କଥା ବି କହିବେ ନାହିଁ ? ମୋ ମୁହଁକୁ ଗ୍ଚାହିଁ କଣ ଏମିତି ଭାବୁଚନ୍ତି ? କୁହନ୍ତୁ ।

( ରେଖା ଆଉ ପାରିଲା ନାହିଁ । ବିକାଶ ଗ୍ଚାତିରେ ମୁହଁ ରଖି କାନ୍ଦିବାରେ ଲାଗିଲା । ତା କଥାର ସ୍ରୋତ କିନ୍ତୁ ବନ୍ଦ ହୋଇ ନ ଥାଏ )

ମୁଁ ଜାଣେ ନା ଆପଣ ମୋ କଥା ବିଶ୍ୱାସ କରିବେ କି ନାହିଁ, କିନ୍ତୁ ଏ ଦଶବର୍ଷ—ହେଇଗଲା, ମୁଁ ଆପଣଙ୍କୁହିଁ···(ରେଖାର କଣ୍ଠ ରୁଦ୍ଧି ହୋଇ ଆସିଲା) ମୁଁ ଆଉ କିଛି କହି ପାରୁନି ବିକାଶ ବାବୁ ଯେଉଁ ଯୁଗରେ ସତୀତ୍ୱ ହୁଏତ ଗୋଟାଏ ଉପହାସର କଥା, ସେ ଯୁଗରେ ଗୋଟାଏ ମୁହୂର୍ତ୍ତିର ସ୍ମୃତିକୁ ଅବଲମ୍ବନ କରି ବା କାହିଁକି ବିଶ୍ୱାସ କରିବ ? (ଟିକିଏ ରହି) କାଲି ଆପଣଙ୍କୁ ଭେଟିବି । ମୋର ଏଠିକି ଆସିବା ସାର୍ଥକ ହେଇଚି । କିନ୍ତୁ ଆପଣଙ୍କ ମୁହଁରୁ ପଦଟିଏ କଥା ଶୁଣିବାର ସୌଭାଗ୍ୟ କ'ଣ ମୋର ନାହିଁ ?

ବିକାଶ : ତୁମେ—ତୁମେ ଯାଇ ପାରିବ ରେଖା, ମୋ ସାଥିରେ ?

(ରେଖାର କାନ୍ଦ ବନ୍ଦ ହୋଇଗଲା । ମନ ଭିତରେ ଉତ୍ତ୍ରାହ)

ରେଖା : କୁଆଡ଼େ ?

ବିକାଶ : ମୁଁ ଯୋଉଠିକି କହିବି, ଯିବ ?

ରେଖା : (ରହି ରହି) ହଁ !! ମୁଁ ଯିବି । ଚାଲନ୍ତୁ ଆପଣଙ୍କ ଘରକୁ—ଆପଣଙ୍କ ବୋଉ ବାପାଙ୍କ ପାଖକୁ ଆପଣ ଫେରି ଚାଲନ୍ତୁ । ମୁଁ ଆପଣଙ୍କ ସାଥିରେ ଯିବି । କହିବେତ ଆଜି···ଆଜି ଏଇ ଧଳା ଶାଢ଼ିରେ ମୁଁ ଯିବାକୁ ପ୍ରସ୍ତୁତ । ଚାଲନ୍ତୁ ।

ବିକାଶ : ମୁଁ ଘରକୁ ଯିବା କଥା କହୁନି ରେଖା ।

ରେଖା : ତେବେ ?

ବିକାଶ : ମୋ ହୋଷ୍ଟେଲ୍‌କୁ ।

ରେଖା : ହୋଷ୍ଟେଲ୍ ! ! (ରେଖାର କଣ୍ଠ ଥରି ଉଠିଚି)

ବିକାଶ : ହଁ । ହୋଷ୍ଟେଲ୍ । ମୋ' ରୁମ୍‌କୁ । ଆଉ କେହି ନାହାନ୍ତି ସେଠି । ଏକା ତମେ ଆଉ ମୁଁ । ଯିବ ରେଖା ? ଯିବ ତମେ ମୋ ସାଥିରେ ? (ରେଖା କିଛି କହିପାରୁ ନ ଥାଏ) ଚୁପ ରହିଲ କାହିଁକି ? କୁହ ଯାଇ ପାରିବ ?

ରେଖା : (ସ୍ଥିର କଣ୍ଠରେ) ଯିବ ।

(ଅନ୍ଧକାର ଘନୀଭୂତ ହୋଇ ଆସିଥିଲା । ରେଖା ଓ ବିକାଶ ଦୁହେଁ ଅନ୍ତର୍ହିତ ହୋଇଗଲେ । ସମୟ ଅତିବାହିତ ହେଇ ଯାଉଚି । କ୍ରମେ ରାତି ପାହି ପୂର୍ବ ଗଗନ ଉଷାର ଆଲୋକରେ ଉଦ୍‌ଭାସିତ ହୋଇ ଉଠିଲା । ସମୁଦ୍ରକୂଳକୁ ଆସିଲା ଶଙ୍କର । ଉପକୂଳ ବାଲିରେ ସେ ଧୀରେ ପଦଚାରଣ କରୁଥାଏ । ଅସ୍ତ-ବ୍ୟସ୍ତ ହୋଇ ଆସି ପହଞ୍ଚିଲା—ରେଖା ଘରର ଚାକର—ଶାମ)

ଶାମ : ବାବୁ !

ଶଙ୍କର : କରେ ଶାମ ? ଏତେ ସକାଳୁ କୁଆଡ଼େ ଆସିଲୁ ?

ଶାମ : ଆପଣ କିଛି ଶୁଣି ନାହାନ୍ତି ବାବୁ ?

ଶଙ୍କର : କଣ ?

ଶାମ : ସେଇ ଯୋଉ ବିକାଶ ବାବୁ···

ଶଙ୍କର : ହଁ କ'ଣ ହେଲା ? ମୁଁ ତ ବର୍ତ୍ତମାନ ଯିବି ତା' ହୋଷ୍ଟେଲକୁ ।

ଶାମ : ରେଖା ଦେଈ କୁଆଡ଼େ କାଲି ରାତିରେ ତାଙ୍କ ହୋଷ୍ଟେଲକୁ ଯାଇଥିଲେ ।

(ଶଙ୍କରର ବିସ୍ମୟର ସୀମା ନାହିଁ)

ଶଙ୍କର : ରେଖା ଯାଇଥିଲା ବିକାଶ ପାଖକୁ ?

ଶାମ : ହଁ, କାଲି ରାତି ଦଶଟା ପରେ ସେ ଆଣି ଦେଇଛି ଆମ ଘରେ ଛାଡ଼ି ଦେଇ ଗଲେ ।

ଶଙ୍କର : ସେଉଠୁ ?

ଶାମ : ଆଜି ସକାଳୁ କୁଆଡ଼େ ତାଙ୍କ ମଲା ଦେହଟା ତାଙ୍କ ବିଛଣାରେ ପଡ଼ିଚି !

ଶଙ୍କର : (ଚମକି) ଏଁ ! !

ଶାମ : ସେ କୁଆଡ଼େ ବିଷଖାଇ···

ଶଙ୍କର : ବିକାଶ ଆତ୍ମହତ୍ୟା କରିଚି ? ବିକାଶ !! ଆଚ୍ଛା, ରେଖା କାହିଁ ?

ଶାମ : ସେଇ ଏକଥା ଶୁଣିଲା ବେଳୁ ବେହୋସ ହୋଇ ପଡ଼ିଲା ଭଳି ପଡ଼ିଚନ୍ତି । ହୋଟେଲ ଚାକର ସେଇଙ୍କ ନାଁରେ ଏ ଚିଠିଟା ଦେଇଗଲା ଯେ, ମା' ମତେ ଆପଣଙ୍କ ପାଖକୁ ପଠାଇଲେ । (ଚିଠିଟା ଦେଲା ।)

ଶଙ୍କର : ଚିଠି ! ମରିବା ପୂର୍ବରୁ ବିକାଶ ଏ ଚିଠି ଲେଖିଯାଇଚି ! (ପଢ଼ିଲା) "ରେଖା, ହୋଟେଲର ନିର୍ଜନ କୋଠରୀରେ କେତେ ଘଣ୍ଟା ରହି, ଆମେ ଆମ ଜୀବନର ପରମ ଆନନ୍ଦ ଉପଭୋଗ କରି ପାରିଚୁ ବୋଲି ଆମେ ଜାଣି-ଥିଲୁ । କିନ୍ତୁ କ'ଣ ଏ ଆନନ୍ଦ ?···କଣ ଏ ଉପଭୋଗ ! ତୁମକୁ ଛାଡ଼ି ଆସିବା ପରେ, ଏଇ ଗୋଟାଏ ଚିନ୍ତା ବାରମ୍ବାର ମତେ ଆଘାତ କଲା ଯେ, ଏ ଯେଉଁ ମହାସୁଖ—ଏଥିରୁ ଯଦି ପୃଥିବୀ ତୁମକୁ ଥରେ ବଞ୍ଚିତ କରେ, ତେବେ ଠିକ୍ ସେଇ ସୁଖ ତ ତୁମକୁ ସେ ଆଉ କେବେ ଦେଇ ପାରିବ ନାହିଁ ! ଏହି କଥାତ ମହାକବି ବାଇରନ୍ କହିଯାଇଚନ୍ତି :

"There is not a joy the world can give, like that it takes away'.

ଏ ପୃଥିବୀରେ ତେବେ ମଣିଷ ଜୀବନର ସାର୍ଥକତା କାହିଁ ? ଆବଶ୍ୟକତା ବା କାହିଁ ??"

□□

## ଚରିତ୍ର

ଡାକ୍ତର — ବୟସ ପ୍ରାୟ ଚାଳିଶ

ବଣ୍ଟୁ : ଡାକ୍ତରଙ୍କ ସହାୟକ, ବୟସ ପ୍ରାୟ ତିରିଶ

ପ୍ରଥମ ରୋଗୀ : ବୟସ ପ୍ରାୟ ପଚିଶ

ଦ୍ୱିତୀୟ ରୋଗୀ : ବୟସ ପ୍ରାୟ ପଚଶ

ତୃତୀୟ ରୋଗୀ : ବୟସ ପ୍ରାୟ ଚାଳିଶ

ଯଶୋଦା — ମଧ୍ୟବୟସ୍କା ମହିଳା

ରାଧା — ଯଶୋଦାଙ୍କ ବାଳିକା ପରିଚାରିକା,
ବୟସ ପ୍ରାୟ ସତର ।

[ ଏକ ଗ୍ରେଟ ସହରର ଏକ ଘରୋଇ ଡାକ୍ତରଖାନା । ସମୟ—ପୂର୍ବାହ୍ଣ । ଡାକ୍ତର ତାଙ୍କ ଚୌକି ଉପରେ ବସି ଖବରକାଗଜ ପଢୁଚନ୍ତି । ପଢୁ ପଢୁ ତାଙ୍କ ମୁହଁରେ ହର୍ଷ-ବିସ୍ମୟର ପ୍ରତିକ୍ରିୟା ଫୁଟିଉଠୁଚି···ଟିକିଏ ପରେ ପଢ଼ା ବନ୍ଦକରି ଡାକିଲେ— ]

ଡାକ୍ତର : ବଶୁବାବୁ···ବଶୁବାବୁ !

ବଶୁ : (ଭିତର ଘରୁ) ଗଲି ଆଜ୍ଞା, ଗଲି । ଏ ଟେବୁଲ୍‌ଟା ଟିକିଏ ସଫା କରୁଥିଲି । (ଗୁଣୁ ଗୁଣୁ ହୋଇ ଗାଉଥାନ୍ତି) ଯାନେଓ୍ୱାଲ୍ ଯାତା ହେ—ଆନେଓ୍ୱାଲ୍ ଆ ଯାଓ···

[ ଘର ଭିତରୁ ବାହାରି ସେମିତି ଗୁଣୁଗୁଣୁ ହୋଇ ସିଧା ବାହାରକୁ ଚାଲିଯାଉଥିଲେ । ]

ଡାକ୍ତର : ବଶୁବାବୁ !

ବଶୁ : ସାର୍ !

ଡାକ୍ତର : ଶୁଣ । ଏଠିକି ଆସ ।

ବଶୁ : (ପାଖକୁ ଆସି) ଆଜ୍ଞା ?

ବଶୁ : ଆନେଓ୍ୱାଲେ···ମାନେ ଯେଉଁମାନେ ଆସିଲେଣି—ମାନେ ଯେଉଁ ରୋଗୀମାନେ ଆସି ବାହାରେ ବସିଚନ୍ତି—ତାଙ୍କୁ ଡାକିବି—ଆପଣ ତ ଖବରକାଗଜ ପଢ଼ିସାରିଲେଣି ।

ଡାକ୍ତର : ଶୁଣ, ରୋଗୀ ଆସୁଚନ୍ତି—ରୋଗୀ ଆସିବେ ।

ବଶୁ : ନିଶ୍ଚୟ ଆସିବେ ସାର୍ ! ମଫସଲ ଅଞ୍ଚଳରେ ଏ ଗ୍ରେଟ ଟାଉନଟି—ହେଲେ ଏଠି ଗୁଣିଜଣ—ନାହିଁ ପାଞ୍ଚ ଜଣ—ନାହିଁ ଛ' ଜଣ—ଏଇ ଗଲାକାଲି ଜଣେ ଆସିଚନ୍ତି—ମୋ' କହିବା କଥା, ଏଡ଼େ ଟିକେ ଗ୍ରେଟ ଟାଉନ୍‌ରେ ଛ'-ଛ' ଜଣ ଡାକ୍ତର, ହେଲେ ଆମ ରୋଗୀ ଆମର—ଦିନକୁ ଦିନ ବଢ଼ୁଛନ୍ତି ପଛେ କମୁ ନାହାନ୍ତି ।

ଡାକ୍ତର : ଏ ଖବରକାଗଜର ଖବରଟା ଆଗେ ଶୁଣ ।

ବଶୁ : ଜଣ୍ଡିସ୍ ଖବର ତ ? ମୁଁ ଶୁଣିଚି । ଆମ ଏ ଅଞ୍ଚଳରେ ଟିକିଏ ବେଶି ବ୍ୟାପିଚି ।

ଡାକ୍ତର : ଜଣ୍ଡିସ୍ ନୁହେଁ । ଆଜି ଏ କାଗଜରେ ବାହାରିଚି—ଏଠିକା କଥା ନୁହେଁ—ଇଂଲଣ୍ଡର କଥା ।

ବଶୁ : ଇଂଲଣ୍ଡର କଥା !
ଡାକ୍ତର : ହଁ ।
ବଶୁ : ଶୁଣିବାକୁ ଖାଲି ଖଣ ଲୋଭ ହଉଚ । ହେଲେ ସାର୍, ପଞ୍ଚାଏ ରୋଗୀ ଅପେକ୍ଷା କର ବସିଚନ୍ତି ।
ଡାକ୍ତର : ଇଏ ସେଇ ରୋଗୀ, ରୋଗ ଆଉ ଡାକ୍ତରଙ୍କ କଥା—ଶୁଣ ! ଇଂଲଣ୍ଡର ଜଣେ ବୃଦ୍ଧା—ବୟସ୍କା ସ୍ତ୍ରୀ ଲୋକ—ବୟସ ପ୍ରାୟ ପଞ୍ଚାଅଶୀ—ଖୁବ୍—ଖୁବ୍ ଧନୀ—କିନ୍ତୁ ତାଙ୍କର ନିଜର ବୋଲି କେହି ନାହାନ୍ତି ।
ବଶୁ : ଆଉ ତେବେ କିଏ ଅଛନ୍ତି ସାର୍ ?
ଡାକ୍ତର : ରୋଗ । ତାଙ୍କର ନିତିଦିନର ସାଥୀ ହେଉଚନ୍ତି ଅସଂଖ୍ୟ ରୋଗ ବେମାର । ତାଙ୍କୁ ଯେତେବେଳେ ପ୍ରାୟ ପଚିଶ ବର୍ଷ ବୟସ, ଆର୍ଥାତ୍ ସେ ଯେତେ-ବେଳେ ମଧ୍ୟବୟସ୍କା—ସେଦିନୁ ତାଙ୍କର ରୋଗ ଆରମ୍ଭ ହେଲାଣି । ତାଙ୍କ ଦେହ ହେଉଚ ରୋଗର ଖଣି । କିଛି ନା କିଛି ରୋଗ ତାଙ୍କର ନିତିପ୍ରତି ଲାଗିରହୁଚ ।
ବଶୁ : ସେମିତି ଡାକ୍ତର, କମ୍ପାଉଣ୍ଡର, ନର୍ସ ନିତିପ୍ରତି ଲାଗିରହୁଥିବେ ।
ଡାକ୍ତର : ନିଶ୍ଚୟ ଲାଗିରହୁଥିଲେ !…କିନ୍ତୁ…କିନ୍ତୁ ଏଇ ଗଲା ସୋମବାର ଦିନ ଭଦ୍ରମହିଳା ମରିଗଲେ ।

[ ଏକଥା ଶୁଣି ବଶୁଙ୍କ ମୁହଁର ଭାବ ବଦଳିଗଲା । ସେ ଆଖି ବୁଜି ନୀରବରେ ଠିଆହୋଇ ରହିଲେ । ]

ବଶୁବାବୁ ! ବଶୁ ବାବୁ !
ବଶୁ : ସାର୍ !
ଡାକ୍ତର : ତମକୁ…ତମକୁ କାହିଁ ମାଡ଼ୁଚ ?
ବଶୁ : (ମଥା ହଲାଇ ଇଙ୍ଗିତରେ ମନାକଲେ)
ଡାକ୍ତର : ଆଖି ବୁଜି ତୁନି ହୋଇ ଠିଆହୋଇ ରହିଚ ଯେ ? ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଚ ?
ବଶୁ : ଯିଏ ମରିଗଲେ ତାଙ୍କ ପାଇଁ ପ୍ରାର୍ଥନା କରି ଲାଭ କଣ ? ଖବରଟା ଶୁଣିଲାକ୍ଷଣି ମୋ ଆଖି ଆପେ ଆପେ ବନ୍ଦ୍ ହୋଇଗଲା । ଭାବୁଥିଲି, ଏତେଗୁଡ଼ାଏ ସମ୍ପତ୍ତି—ଆତ୍ମୀୟସ୍ୱଜନ କେହି ନାହାନ୍ତି—ସବୁ ଅବ୍ୟବସ୍ଥା ହେଇଯିବ ।
ଡାକ୍ତର : ସେଥିପାଇଁ ତମକୁ ଏଠି ଆଖି ବୁଜି ଚିନ୍ତା କରିବାକୁ ପଡ଼ିବନାହିଁ । ସେ ବ୍ୟବସ୍ଥା ସେ କରିଯାଇଚନ୍ତି । ପ୍ରଥମେ କାହା କଥା ଲେଖିଚନ୍ତି ଜାଣ ?
ବଶୁ : କିଏ ଜଣେ ଦୂରସମ୍ପର୍କର ପୁତୁରା କି ଝିଆରୀ ହୋଇଥିବ ।

ଡାକ୍ତର : ନା—ଡାକ୍ତରଙ୍କ କଥା ।

ବଶୁ : କୋଉ ଡାକ୍ତର ?

ଡାକ୍ତର : ଯୋଉ ଡାକ୍ତର ତାଙ୍କର ବର୍ଷ ବର୍ଷ ଧରି ଚିକିତ୍ସା କରିଆସୁଥିଲେ—ତାଙ୍କ ପର୍ଶନାଲ୍ ଫିଜିସିୟାନ୍ ।

ବଶୁ : କିନ୍ତୁ ସାର୍ ସିଏ ତ ମରିଗଲେ !!

ଡାକ୍ତର : କିଏ ମରିଗଲେ ? ଡାକ୍ତର କାହିଁକି ମରିବେ ? ମରିଚନ୍ତି ସେଇ 'ବିଧବା ବୟସ୍କା ମହୁଲା ।

ବଶୁ : ମୁଁ କଣ ସାର୍ ଏଇ ସହଜ କଥାଟା ବୁଝିପାରୁନାହିଁ ? ମୋର କହିବାର କଥା, ରୋଗୀ ତ ମଲା—ଉଇଲ୍‌ରେ ପ୍ରଥମେ ଡାକ୍ତରଙ୍କ କଥା ଲେଖାହେଲା କାହିଁକି ?

ଡାକ୍ତର : ଶୁଣ···ଉଇଲ୍‌ରେ କଣ ଲେଖାହୋଇଚି ମୁଁ ପଢ଼ୁଚି ଶୁଣ ! ଭଦ୍ରମହିଳା ଲେଖିଚନ୍ତି—"ମୋର ଏ ଉଇଲ୍‌ରେ ମୁଁ ପ୍ରଥମେ ମୋର ଡାକ୍ତର ବନ୍ଧୁଙ୍କ କଥା ଉଲ୍ଲେଖ କରୁଚି । ପ୍ରକୃତରେ ସେ ମୋର କେବଳ ଜଣେ ଚିକିତ୍ସକ ନ ଥିଲେ—ଥିଲେ ଶୁଭକାଂକ୍ଷୀ ବନ୍ଧୁ ।"

ବଶୁ : ଆଜ୍ଞା ହଁ, ରୋଗୀ ହବ ତ ଏମିତି—ଆଉ ଡାକ୍ତର ହବ ତ ଏମିତି ।··· ସେଇଠୁ କଣ ଲେଖିଚନ୍ତି ଆଜ୍ଞା ?

ଡାକ୍ତର : ଲେଖିଚନ୍ତି—"ମୁଁ ଦୀର୍ଘ ଦିନ ଧରି ରୋଗ ଭୋଗିଆସୁଚି; କିନ୍ତୁ ଏଇ ଡାକ୍ତରଙ୍କ ପାଇଁ ରୋଗର ଯନ୍ତ୍ରଣା କଣ ମୁଁ ଜାଣିନାହିଁ । ସାଧାରଣ ଇନଫ୍ଲୁଏନ୍‌ଜା ଭୋଗିଲେ ସେ ଯେପରି ନିଷ୍ଠାର ସହିତ ଚିକିତ୍ସା କରନ୍ତି, ସାମାନ୍ୟ ମୁଣ୍ଡ ବିନ୍ଧିଲେ ମଧ୍ୟ ସେ ସେଇପରି ନିଷ୍ଠା ଆଉ ସାବଧାନତା ସହ ଚିକିତ୍ସା କରନ୍ତି । କାଳେ ଔଷଧ ଗୋଲମାଲ ହୋଇଯିବ, ସେଥିପାଇଁ ସେ ନିଜେ ବଜାରରୁ ଔଷଧ କିଣି ଆଣି ମତେ ଦିଅନ୍ତି । ରୋଗଗ୍ରସ୍ତ ଶରୀର ନେଇ ମୁଁ କେବଳ ତାଙ୍କର ଦୟାରୁ ଦୀର୍ଘକାଳ ବଞ୍ଚି ରହିଲି । ତାଙ୍କ ପ୍ରତି ମୋର କୃତଜ୍ଞତାର ସୀମା ନାହିଁ । ସେଇ କୃତଜ୍ଞତାର ଚିହ୍ନ ସ୍ୱରୂପ ମୁଁ ଘୋଷଣା କରୁଚି ଯେ ମୋର ମୃତ୍ୟୁ ପରେ ମୋର ସଞ୍ଚିତ ଭଣ୍ଡାରରୁ ସେ କିୟଦଂଶ ପାଇବେ । ମୋର ଏକ ନମ୍ବର ଟ୍ରେଜେରୀ ବାକ୍‌ସଟି ମୁଁ ତାଙ୍କ ପାଇଁ ରଖିଗଲି । ଏଥିରେ ଯାହା ରହିଚି, ସେ ତାହା ପୁତ୍ର-ପୌତ୍ରାଦିକ୍ରମେ ଭୋଗକରିପାରିବେ ।" (ଡାକ୍ତର ପଢ଼ା ବନ୍ଦକଲେ)

ବଶୁ : ପଢ଼ନ୍ତୁ ସାର୍—ପଢ଼ିଯାନ୍ତୁ—ମୁଁ ମନ ପ୍ରାଣ ଦେଇ ଶୁଣୁଚି । ପଢ଼ନ୍ତୁ ।

ଡାକ୍ତର : ମୋର ଆଉ ପଢ଼ିବାର କିଛି ନାହିଁ—ଏଥର ତମ ପାଳି ।

ବଶୁ : ନାଇଁ ଆଜ୍ଞା, ମୁଁ ପାରିବିନାହିଁ । ମୁଁ ଆପଣଙ୍କ ପରି ଏମିତି ପଢ଼ିପାରିବିନାହିଁ ।

ଡାକ୍ତର : ମୁଁ ତମକୁ ପଚାରିବାକୁ କହୁ ନାହିଁ । ଶୁଣିଲ ତ, ଭଦ୍ରମହିଳା ତାଙ୍କର ଏକ ନମ୍ବର ଟ୍ରେଜେରୀଟିକୁ ଡାକ୍ତରଙ୍କୁ ଦେଇଯାଇଚନ୍ତି !

ବଣୁ : ସେଇଆ ପରା ମୁଁ କହୁଥିଲି ସାର୍ । ରୋଗୀ ହବ ତ ଏମିତ !

ଡାକ୍ତର : ଏବେ କୁହ ଦେଖି, ତାଙ୍କର ସେ ଏକ ନମ୍ବର ଟ୍ରେଜେରୀରେ ଡାକ୍ତରଙ୍କ ପାଇଁ ସେ କଣ ରଖିଯାଇଥିବେ ?

ବଣୁ : ମୁଁ କହିବ ?

ଡାକ୍ତର : ହଁ, କୁହ ।

ବଣୁ : କାହିଁକି ସାର୍—କାଗଜରେ କଣ ଲେଖା ହୋଇନ ? ଟ୍ରେଜେରୀ କଣ ଖୋଲି ହେଇନ ?

ଡାକ୍ତର : କାଗଜରେ ଲେଖା ହୋଇଚି—ଟ୍ରେଜେରୀ ଖୋଲିହୋଇଚି···ତେବେ ବି ତୁମେ କୁହ ।

ବଣୁ : ବୁଝିପାରୁନାହିଁ ସାର୍—ସତ କହୁଚି ମୁଁ ବୁଝିପାରୁନାହିଁ ।

ଡାକ୍ତର : ଅନୁମାନ କରି କୁହ ।

ବଣୁ : ଅନୁମାନ କରି···କିବା ଲୋକ ମୁଁ—ଏଭଳି ଗୋଟାଏ ବିଶ୍ୱବିଖ୍ୟାତ ଘଟଣା ଅନୁମାନ କରି କହିପାରିବ !! ଟ୍ରେଜେରୀରେ କଣ ଥିବ···ସୁନା ମୋହର ? ହୀରା ଜହରତ ??···ନାଇଁ ସାର୍, ପାରିବ ନାଇଁ । ମୁଁ କିଛି ଅନୁମାନ କରିପାରୁନି ।

ଡାକ୍ତର : ଆଉ ଟିକଏ ଚେଷ୍ଟା କରି ଦେଖ—ଅନୁମାନ କର—ବୁଦ୍ଧି ଖଟାଅ ।··· ଜଣେ ରୋଗୀ—ଡାକ୍ତର ପାଖରେ ସେ ଗଭୀର କୃତଜ୍ଞ । ଦବାକୁ ଗୃହିଁଲେ ସେ ଅନେକ କିଛି ଦେଇଯାଇପାରିବ—ତେବେ ସେ କଣ ରଖିଯାଇଥିବ ?

ବଣୁ : ଇଏ ସାର ବୈଜ୍ଞାନିକ ଅଙ୍କ କଷିଲା ଭଳି କଥା ହଉଚି—ଏତେକୁ ଏତେ ହେଲେ ଏତେକୁ କେତେ ? ମୁଁ ଅଙ୍କରେ ଟିକେ ଦୁର୍ବଳ ଥିଲି—ପାରୁ ନାହିଁ କି ମୋର ଧୈର୍ଯ୍ୟ ରହୁ ନାହିଁ । ରୋଗୀ-ଡାକ୍ତର ଉପାଖ୍ୟାନ କୋଉଠି ଯାଇ ପହଞ୍ଚିଲା, ଦୟାକରି ଚଞ୍ଚଳ କୁହନ୍ତୁ ।

ଡାକ୍ତର : ପାରିଲ ନାହିଁ ତେବେ ? ହଉ ଶୁଣ । ଉଇଲ୍ ପଢ଼ା ହେଲା—ଟ୍ରେଜେରୀ ଖୋଲି ହେଲା—

ବଣୁ : ଇହ୍···କଣ ଯେ ଥିବ !!

ଡାକ୍ତର : ସରକାରୀ ଅଫିସର, ବନ୍ଧୁ ବିଶିଷ୍ଟ ଭଦ୍ରବ୍ୟକ୍ତି ଭଦ୍ରମହିଳା ଉପସ୍ଥିତ ଥା'ନ୍ତି । ସମସ୍ତଙ୍କର ଗୋଟାଏ ଆଖି ଡାକ୍ତରଙ୍କ ଉପରେ—ଆଉ ଗୋଟାଏ ଆଖି ଟ୍ରେଜେରୀ ଭିତରେ ।

ବଶୁ : ମେଜିକ୍ ! ମେଜିକ୍ ବାକ୍ସ । ମେଜିକ ବାକ୍ସରୁ କ'ଣ ଯେ ବାହାରିବ !! ସମସ୍ତଙ୍କ ମନ ପ୍ରାଣ ଅଥୟ । ମୋ ମନ ତ ଏଠି ଅଥୟ ହୋଇଉଠୁଛି ।

ଡାକ୍ତର : ହେବା ସ୍ୱାଭାବିକ । ଟ୍ରେଜେଷ୍ଟ ପ୍ରକୃତରେ ମେଜିକ୍ ବାକ୍ସର କାମ ଦେଖାଇଲା ।—ବାକ୍ସ ଭର୍ତ୍ତି

ବଶୁ : ଭର୍ତ୍ତି !!

ଡାକ୍ତର : ଭର୍ତ୍ତି···Full to the brim ! ତିଳ ଧାରଣର ସ୍ଥାନ ନାହିଁ ।

ବଶୁ : ଡାକ୍ତରଙ୍କ ଭାଗ୍ୟ !

ଡାକ୍ତର : ନା—ଦୁର୍ଭାଗ୍ୟ ।

ବଶୁ : ଦୁର୍ଭାଗ୍ୟ ? ଟ୍ରେଜେଷ୍ଟ ଭର୍ତ୍ତି—ଦୁର୍ଭାଗ୍ୟ କାହିଁକି ? ଟ୍ରେଜେଷ୍ଟରୁ କଣ··· ମାନେ—ମାନେ—ଖାଲି ପଥର ବାହାରିଲା ।

ଡାକ୍ତର : ପଥର ତ କିଛି କାମରେ ଲାଗିପାରିଥାନ୍ତା ! ଦୀର୍ଘ ତିରିଶ ପଇଁତିରିଶ ବର୍ଷ ଧରି ଡାକ୍ତର ଯେଉଁସବୁ ଆଉ ଯେତେସବୁ ଔଷଧ ପତ୍ର ଆଣି ଦେଇଥିଲେ, ସେ ସବୁ ସେମିତି ଅକ୍ଷତ ଅବସ୍ଥାରେ ଅତି ସୁନ୍ଦର ଭାବେ ସଜା ହୋଇ ରହିଛି । ଗୋଟିଏ ବି ବୋତଲ ଖୋଲା ହୋଇନି କି ସିଲ୍ ଭଙ୍ଗା ହୋଇନି ।

ବଶୁ : ତା' ଅର୍ଥ ରୋଗୀ ଔଷଧ ଖାଇନି ?

ଡାକ୍ତର : ନା ଖାଇନି ।

ବଶୁ : ଅଥଚ ତାର ପଚିଶ ବର୍ଷରୁ ପଞ୍ଚାଅଣୀ ବର୍ଷ ଯାଏ ରୋଗୀ ବଞ୍ଚିଛି !

ଡାକ୍ତର . ବଞ୍ଚିଛି—ଆଉ ମଲାବେଳକୁ ରୋଗୀର ପରମ ହିତୈଷୀ ଡାକ୍ତରକୁ ସେଇ ସବୁ ଔଷଧ ପ୍ରୀତି ଉପହାର ଦେଇଯାଇଛି ।···ଟ୍ରେଜେଷ୍ଟ ଭିତରେ ଗ୍ରେଟ ଖଣ୍ଡିଏ କାଗଜ । ସେଥିରେ ଲେଖାଅଛି—ଯେଉଁ ଡାକ୍ତର ବନ୍ଧୁଙ୍କ ଦୟାରୁ ମୁଁ ଏତେ କାଳ ବଞ୍ଚିରହିଲି, ତାଙ୍କୁ ଏତକ ମୋର ପ୍ରୀତି ଉପହାର ।

ବଶୁ : ଇଏ କଣ ହେଲା ସାର୍ !

ଡାକ୍ତର : ସେଇ କଥା ବଶୁବାବୁ ! ଯଦି ସବୁ ଡାକ୍ତରଙ୍କ ଭାଗ୍ୟରେ ଏମିତି ଜଣେ ଜଣେ ମଧ୍ୟବୟସ୍କା ମହିଳା ରୋଗୀ ଜୁଟନ୍ତି—

ଯଶୋଦା : (ବାହାରୁ ଖୁବ୍ ନରମ ଗଳାରେ) ଡାକ୍ତରବାବୁ ଅଛନ୍ତି ?

[ ଜଣେ ସ୍ତ୍ରୀଲୋକର ଗଳା ଶୁଣି ଡାକ୍ତରଙ୍କ ମନରେ ଯେମିତି ଟିକିଏ ଚମକ ଲାଗିଛି । ]

ଡାକ୍ତର : (ବଶୁକୁ) କିଏ ?

ବଶୁ : ଜଣେ ମହିଳା ।

ଡାକ୍ତର : ରୋଗୀ ?

ବିଶୁ : ହୋଇଥିବେ—ଗଳା କେତେ ନରମ ଦେଖୁନାହାନ୍ତି !
ଡାକ୍ତର : ମହିଳା ଯେ···(ଡରି ଡରି) କଣ ମଧ୍ୟବୟସ୍କା ?
ବିଶୁ : ଦେଖୁଚି । (ପର୍ଦ୍ଦା ସାମାନ୍ୟ ଆଡ଼େଇ ଦେଖିଲେ)
ବିଶୁ : ହଁ ସାର୍, ମଧ୍ୟବୟସ୍କା ।
ଡାକ୍ତର : ଥାଙ୍କ୍ସ···ଥାଙ୍କ୍ସ···
ବିଶୁ : କଣ ଫେରାଇଦେବି ?
ଡାକ୍ତର : (ହତାଶ ଭାବେ) କିଛି ବୁଝିପାରୁନି । ସେ ସେ ଇଂରେଜ ଭଦ୍ରମହିଳା ଯଦି ପୁନର୍ଜନ୍ମ ନେଇ ଏଠିକି ଆସିଥା'ନ୍ତି !!
ଯଶୋଦା : (ପୂର୍ବପରି) ଡାକ୍ତରବାବୁ ଅଛନ୍ତି ?
ଡାକ୍ତର : (ଛେପ ଢୋକି) ଅଛି—ଆସନ୍ତୁ—ପର୍ଦ୍ଦା ଆଡ଼େଇ ଆସନ୍ତୁ ।

[ ସ୍ୱଚ୍ଛଳ ମଧ୍ୟବିତ୍ତ ପରିବାରର ମଧ୍ୟବୟସ୍କା ମହିଳା ଯଶୋଦା ହସ ହସ ମୁହଁରେ ଆସିଲେ । ତାଙ୍କର ବିଶେଷତ୍ୱ ହେଲି ଯେ, ସେ ଏଇ ଡାକ୍ତରଖାନାର ଦୁଇ କର୍ମକର୍ତ୍ତା ଡାକ୍ତର ବାବୁ ଓ ବିଶୁ ସହିତ ଖୁବ୍ ନରମ ମଧୁର ଗଳାରେ କଥା କହିବେ ଓ ଅନ୍ୟମାନଙ୍କ ସହିତ ଖୁବ୍ କଡ଼ା ଓ ତୀବ୍ର ଗଳାରେ କଥା କହିବେ । ]

ଯଶୋଦା : ନମସ୍କାର ।
ଡାକ୍ତର : ନମସ୍କାର···ଆପଣ···
ଯଶୋଦା : ଆପଣ ଏଠିକି ନୂଆ ଆସିଚନ୍ତି ତ, ମତେ ଜାଣିନାହାନ୍ତି ।
ଡାକ୍ତର : ନୂଆ ? ନାହିଁ ତ । ମୋର ଏଠିକି ଆସିବା···ବିଶୁବାବୁ, ମୋର ଏଠିକି ଆସିବା କେତେ ଦିନ ହେଲା ?
ବିଶୁ : ବର୍ଷେ । ଦୋଳପୂର୍ଣ୍ଣିମାକୁ ଦୋଳପୂର୍ଣ୍ଣିମା ବର୍ଷେ ହେଲା ।
ଡାକ୍ତର : ହଁ, ବର୍ଷେ ହେଲା ।
ଯଶୋଦା : ବର୍ଷେ ଆଉ କେତେ ଯେ ! ଏଇ ପରା କମ୍ପାଉଣ୍ଡର ବାବୁ କହିଲେ, ଏ ଦୋଳକୁ ସେ ଦୋଳ ବର୍ଷେ । ଲୁଗାପଟାରୁ ଅବିର ଦାଗ ଲିଭି ନ ଥିବ, ବର୍ଷେ ପୂରିଯିବ । (କଡ଼ା ଗଳାରେ ଡାକିଲେ) ରାଧା···ରାଧା ।
ରାଧା : (ବାହାରୁ) ମା !
ଯଶୋଦା : ଭିତରକୁ ଆ । (ଡାକ୍ତରଙ୍କୁ) ସେଠି ସେ ଟବ୍‌ରେ ପାଣି ଅଛି ନା ? ମୁଁ ଟିକିଏ ମୁହଁ ହାତ ଧୋଇବି···ଯାଉଚି ! (ଭିତରକୁ ଗଲେ)
ଡାକ୍ତର : ବିଶୁବାବୁ !

ବଶୁ : ସାର୍ !
ଡାକ୍ତର : କଥା କଣ ? ଏ ନରମ ଆଉ କଡ଼ା ?
ବଶୁ : ସେଇଥା ତ...
ଡାକ୍ତର : ଏ ରାଧା କଏ ଦେଖିଲ !
ବଶୁ : (ପର୍ଦ୍ଦା ଆଡ଼େଇ ଦେଖି) ଦେଖିଲି ।
ଡାକ୍ତର : ରୋଗୀ ?
ବଶୁ : ଜଣାପଡ଼ୁନାହିଁ ।
ଡାକ୍ତର : ମଧ୍ୟବୟସ୍କା ?
ବଶୁ : ନା, ଅଳ୍ପବୟସ୍କା । [ ଯଶୋଦା ଅସିଲେ ]
ଯଶୋଦା : ବେଶ ଥଣ୍ଡା—ବେଶ୍ ମିଠା । ଖାସ୍ ଭଲ ପାଣି ଏଠି ଆପଣଙ୍କର ।
ଡାକ୍ତର : ପାଣି ଭଲ—କିନ୍ତୁ କୂଅଟା ଆମର ନୁହେଁ ।
ବଶୁ : କୂଅ ସୁରବାବୁଙ୍କର ।
ଯଶୋଦା : ଓଃ ଆରେ, ରାଧା କାହିଁ ଗଲା ? (ଡାକଲେ) ରାଧା—ରାଧା !
ରାଧା : (ବାହାରୁ) ମା' !
ଯଶୋଦା : କହିଲି ଭିତରକୁ ଆ—ସେଠି ମା' ମା' କଣ ହେଉଚୁ ?
[ ରାଧା ଆସିଲା । ବେଶଭୂଷା ସାଧାରଣ ]
କଣ କରୁଥିଲୁ ସେଠି ?
ରାଧା : ଇଏ...ଇଏ ପରା ମତେ ମନାକଲେ ଆସିବାକୁ ।
ଯଶୋଦା : କିଏ ?

[ ଏକାବେଳକେ ତିନିଜଣ ପୁରୁଷ ରୋଗୀ ଭିତରକୁ ପଶି ଆସିଲେ । ]

ପ୍ରଥମ
ଦ୍ୱିତୀୟ } (ଡାକ୍ତରଙ୍କୁ) ନମସ୍କାର ଆଜ୍ଞା !
ତୃତୀୟ
ଡାକ୍ତର : ନମସ୍କାର ।
ଯଶୋଦା : କିଏ ତତେ ମନାକଲେ ଆସିବାକୁ ?
ରାଧା : ଇଏ ।
ପ୍ରଥମ
ଦ୍ୱିତୀୟ } ( ବଶୁକୁ ) ନମସ୍କାର କମ୍ପାଉଣ୍ଡର ବାବୁ !
ତୃତୀୟ
ବଶୁ : ନମସ୍କାର, ନମସ୍କାର ।

ଯଶୋଦା : ଆଲୋ କିଏ ?

ରାଧା : (ଦ୍ୱିତୀୟ ରୋଗୀକୁ ଲକ୍ଷ୍ୟକରି) ଏଇ ସେଇ ପରା !

ଦ୍ୱିତୀୟ : (ହଠାତ୍ ଜରରେ କମ୍ପି) ଓହୋ ହୋ ! ଦେହରେ ମେଲେରିଆ ଥିଲା, ଭଲ ହୋଇଥିଲି । ମେଲେରିଆ ଉପରେ ଆଉ କୋଉ ଜର ପାଖ ପଶୁ ନ ଥିଲେ । ମେଲେରିଆ କମିଗଲା—ତା' ଜାଗାରେ ଦଶ କି ପଚିଶ ଜର ଆସି ବସାବାନ୍ଧିଲେଣି । ଓହୋ ହୋ···

ଡାକ୍ତର : ଆପଣଙ୍କୁ ଜର ?

ଦ୍ୱିତୀୟ : ଆଜ୍ଞା, ମତେ ଟିକିଏ ଚଞ୍ଚଳ ବିଦାକରନ୍ତୁ ।

ଡାକ୍ତର : ଆପଣମାନେ ସମସ୍ତେ ଭିତରକୁ ଚାଲିଆସିଲେ—ବସିବାର ସୁବିଧା ନାହିଁ ।

ବିଶୁ : ବାହାରେ ବି ବସିବାରେ ସୁବିଧା ନାହିଁ ସାର୍ ! ଆଉ ପାଞ୍ଚ ଜଣ ଆସି ଜାଗା ଦଖଲ କରିଗଲେଣି ।

ଡାକ୍ତର : ଆଚ୍ଛା, ଆଚ୍ଛା, ଆପଣମାନେ···ଇଏ ବିଶୁବାବୁ !

ବିଶୁ : ହଁ ବସନ୍ତୁ ଆପଣମାନେ ! ଏଇ ବେଞ୍ଚଟାରେ ଟିକିଏ ଜକାଜକି ହୋଇ ବସନ୍ତୁ । (ଯଶୋଦା ଠିଆହୋଇଥାନ୍ତି)

ଡାକ୍ତର : ଆପଣ ଆଜ୍ଞା ଠିଆ ହୋଇ ରହିଲେ କାହିଁକି···ଏଇ ଚୌକିରେ ଆପଣ ବସନ୍ତୁ ।

ଯଶୋଦା : ହଉ !···ରାଧା, ସିଏ ମନାକଲେ ବୋଲି ତୁ ତାଙ୍କ ମନା କାହିଁକି ମାନିଲୁ ? ଏଁ···ମାନିଲୁ କାହିଁକି ?

ଦ୍ୱିତୀୟ : ଓହୋ ହୋ—କି କମ୍ପରେ ବାବା !

ପ୍ରଥମ : ଆପଣଙ୍କ କମ୍ପରେ ଆମେ ବି ଏଠି କମ୍ପିଗଲୁଣି ।

ଦ୍ୱିତୀୟ : ଟିକିଏ···ଟିକିଏ ଆଜ୍ଞା ଜର ମାରି ବସନ୍ତୁ, ନଇଲେ ମୁଁ ଏପାଖରେ ଖସିପଡ଼ିବି ।

ତୃତୀୟ : ଆପଣ ତୁହେଁ ଟି'ପାଖରୁ ମତେ ଜାକ ଆଣନ୍ତୁ ଯେ···

ଯଶୋଦା : (ରାଧାକୁ) କାଲେ ମୁଁ ତୋତେ କଣ ପଚାରୁଚି ପରା ?

ଦ୍ୱିତୀୟ : ବାବାରେ ।

ରାଧା : ମୁଁ କେମିତି ଜାଣିବି, କାହା କଥା ମାନିବ ନମାନିବ ?

ଦ୍ୱିତୀୟ : (ସୁର୍ ଧରି) "ମାନେ ନା—ମାନେନା ମନା ସେ—ମାନେ ନା···" ହାୟ ହାୟ, ଜର ହେଲେ ପୁଣି ଏମିତି ଗୀତ ଗାଇବାକୁ ମନ ହୁଏ !

ଡାକ୍ତର : ବିଶୁବାବୁ !

ବଣ୍ଟୁ : ଏମିତି ହୋଇଥାଏ ଆଜ୍ଞା ! ସେଦିନ ମତେ ଦେଖିଲେ ନାଇଁ, ଜର ଗହେ ଦୁଇ ଯେମିତି ଡେଇଁଚ, ଆପଣଙ୍କ ସାମନାରେ ସବୁ ଲାଜ ସରମ ଗ୍ରାଣ୍ଡ ସେଇ ଫିଲ୍ମ ଗୀତଟା ପୁରା ସୁରଧରି ଗାଇବା ଆରମ୍ଭ କରଦେଲ ।

ଯଶୋଦା : ଆପଣ ରାଧାଙ୍କୁ କାହିଁକି ମନାକଲେ ଭିତରକୁ ଆସିବାକୁ ?

ବଣ୍ଟୁ : ମୁଁ—ମୁଁ—ମନାକଲ !!

ଯଶୋଦା : ନା—ନା—ଆପଣ ନୁହନ୍ତି । ମୁଁ ପୁଣି ଆପଣଙ୍କୁ କହିବ ? ଏଇ ସିଏ···

ପ୍ରଥମ : ମୁଁ ! ମୁଁ କାଇଁକି କାହାକୁ କଣ କହିବ ? କି କଥା ଇଏ ! (ତୃତୀୟଙ୍କୁ) ଆପଣ ମନା କରିଥିଲେ କି ?

ତୃତୀୟ : ମୁଁ ? ମୋ ସ୍ତ୍ରୀକୁ ତ ମୁଁ ଆଜି ଯାଏ କୋଉ କଥାରେ କିଛି ମନାକରିନାହିଁ— ଏଠି କାହିଁକି ସେ କାମ କରିବାକୁ ଯିବ ? (ଦ୍ୱିତୀୟଙ୍କୁ) କେଜାଣି ସେ ହୋଇଥିବେ ।

ଦ୍ୱିତୀୟ : ଏଁ ! ହଁ ହଁ । ସିଏ ମତେ କହୁଚନ୍ତି ।

ଯଶୋଦା : ( ଦ୍ୱିତୀୟଙ୍କୁ ) ଆପଣ ତ ସେଠି ବାହାରେ ବସିଥିଲାବେଳେ କର୍ମ ଆସି ନ ଥିଲ ?

ଦ୍ୱିତୀୟ : ସେ କଥା ଡାକ୍ତରବାବୁ କହିବେ । ଭିତର କର୍ମ ଇଏ—କେତେବେଳେ ଆସେ—କାହିଁକି ଆସେ···

ଯଶୋଦା : କାହିଁକି ଆପଣ ମନାକଲେ ତାକୁ ଆସିବାକୁ ?

ଦ୍ୱିତୀୟ : ଓହୋ ହୋ—

ଡାକ୍ତର : (ଅସହାୟ ହୋଇ) ବଣ୍ଟୁବାବୁ !

ବଣ୍ଟୁ : (ଦ୍ୱିତୀୟଙ୍କୁ) ଆପଣ କହୁନାହାନ୍ତି କାହିଁକି ତାଙ୍କୁ ମନାକଲେ !

ଦ୍ୱିତୀୟ : କଥା କଣ କି ଆଜ୍ଞା—ମୁଁ ତାଙ୍କୁ କହିଲି, ତୁମେ ତ ରୋଗୀ ନୁହଁ— ଭିତରକୁ ଯାଇ କାହିଁକି ମିଛଟାରେ ଭିଡ଼ କରିବ—ଡାକ୍ତର ବାବୁ ବିରକ୍ତ ହେବେ ।

ଯଶୋଦା : ଆପଣ କେମିତି ଜାଣିଲେ ସେ ରୋଗୀ ନୁହଁ ? କେମିତି ଜାଣିଲେ ?

ଦ୍ୱିତୀୟ : ସେ କଥା ଡାକ୍ତରବାବୁ କୁହନ୍ତୁ । (କର୍ମ) ମେଲେରିଆ ତ ଆମ ଏ ଅଞ୍ଚଳରେ ନାହିଁ—କୁଆଡ଼ୁ ଆସିଲା ଏ କର୍ମ ?

ଡାକ୍ତର : (ଯଶୋଦାଙ୍କୁ) ତାଙ୍କର କଣ ହୋଇଚ ଆଜ୍ଞା ?

ଯଶୋଦା : ରାଧାର ?

ଡାକ୍ତର : ଆଜ୍ଞା ।

ଯଶୋଦା : ନାଇଁ, ତାର କିଛି ହୋଇନ ଯେ, ସେ ମୋ' ସାଙ୍ଗରେ ଆସିଚ । ମା' ଛେଉଣ୍ଡ ଝିଅଟି—ପିଲାଦିନୁ ଆସି ଏତେଟିଏ ହେଲାଣି, ମୋର ପାଖରେ ଅଛି । ସବୁ କଥାରେ ଧୂରନ୍ଧର । ରାଧା—

ରାଧା : ମା' !

ଯଶୋଦା : ଡାକ୍ତରବାବୁ କମ୍ପାଉଣ୍ଡରବାବୁ ସମସ୍ତଙ୍କୁ ନମସ୍କାର କର ।

[ ରାଧା ମଥା ନୁଆଁଇ ନମସ୍କାର କଲା ]

ବଶୁ : ହଁ—ହଁ—ନମସ୍କାର ନମସ୍କାର ।

ଡାକ୍ତର : ରାଧା ତ ରୋଗୀ ନୁହଁ—ଏଠି ବସିବାର ସୁବିଧା ନାହିଁ—

ଦ୍ୱିତୀୟ : ଦେଖିଲେ ତ, ମୁଁ ଯାହା କହୁଥିଲି ଡାକ୍ତରବାବୁ ଠିକ୍ ସେଇଆ କହିଲେ ।

ବଶୁ : ଆପଣଙ୍କ କର୍ମ ଗୁଣ୍ଡିଗଲା ପରା ?

ଯଶୋଦା : ଡାକ୍ତରବାବୁ—

ଡାକ୍ତର : କୁହନ୍ତୁ ।

ଯଶୋଦା : ରାଧା ଏଇଠି ରହୁ । ସେ ଏଇଠି ମୋ ପଛରେ ଠିଆହେବ—କଣ କହୁଚନ୍ତି ?

ଡାକ୍ତର : ରହୁ...ହଁ, ଏଥର କହନ୍ତୁ ଆପଣମାନେ –

ପ୍ରଥମ : ମୁଁ କହୁଥିଲି କଣ କି ଆଜ୍ଞା...
ଦ୍ୱିତୀୟ : ମୁଁ କହୁଥିଲି କଣ କି ଆଜ୍ଞା...
ତୃତୀୟ : ମୁଁ କହୁଥିଲି କଣ କି ଆଜ୍ଞା...
( ପ୍ରାୟ ଏକସଙ୍ଗରେ )

ଯଶୋଦା : ମୁଁ ଆସିଥିଲି ଡାକ୍ତରବାବୁ...

ପ୍ରଥମ : ବର୍ଷେରୁ ଉପର ହେଲାଣି...

ଦ୍ୱିତୀୟ : ଜର ତ ଯାହା ହବାର ହେଇଗଲା...

ତୃତୀୟ : ଇଏ ଛଅମାସ ପୂର ଗ୍ରହମାସ ଗ୍ଲଲା...

ଡାକ୍ତର : (ହସି) ମୁଁ ବୁଝିପାରୁନ ଆଜ୍ଞା କଣ ହେଇଛି...

ସମସ୍ତେ : କଣ ହେଇଚି ଆଜ୍ଞା ?

ଡାକ୍ତର : ଶୁଣନ୍ତୁ, କିଛି ହେଇନ । କିନ୍ତୁ ଆପଣମାନେ ଯଦି ସମସ୍ତେ ଏକା-ବେଳେକେ ସବୁ କଥା କହି ବସିବେ...

ଯଶୋଦା : ଡାକ୍ତର ସିଏ, ସିଏ ସବୁ କଥା ଭଲ ଭାବେ ବୁଝିଶୁଝି ଚିକିତ୍ସା କରିବେ । ତାଙ୍କୁ ବିରକ୍ତକଲେ ସେ ହଇରାଣ ହେବେ—ଏଣେ ରୋଗୀର କ୍ଷତି ।...ନା କଣ ଡାକ୍ତର ବାବୁ, ମୁଁ ଠିକ କହୁଚି ତ ?

ବଶୁ : ଇଏତ ହାତ କଙ୍କଣ ଦର୍ପଣ । ଏଥିରେ ଆଉ ସନ୍ଦେହ କଣ ଅଛି ?

ପ୍ରଥମ : ହଁ, ହଁ ଠିକ କଥା । ଡାକ୍ତର ବାବୁ ଆଜ୍ଞା—ଆପଣ ଜଣ ଜଣକ କଥା ବୁଝନ୍ତୁ ।

ଯଶୋଦା : ଏଇ ଆଜ୍ଞା, ଟିକଏ ଏଣେ ଶୁଣନ୍ତୁ ।
ଡାକ୍ତର : ରୁହନ୍ତୁ । ଆଗେ ଆପଣଙ୍କ କାମ ଶେଷ କରେ । ରୁହନ୍ତୁ କଣ ହେଉଚ ?
ଯଶୋଦା : ଆପଣ କେଜାଣି ତାଙ୍କ ନାଁ ଜାଣିଥିବେ—
ଡାକ୍ତର : ଆପଣ ରୁହନ୍ତୁ ।
ଯଶୋଦା : ରାଧା, କହିଦେ ନାଁଟା ।
ରାଧା : (ବୁଝିନପାରି) ମା ?
ଯଶୋଦା : ଆଲୋ ବୋକୀ—ବାବୁଙ୍କ ନାଁ କହ ।
ଡାକ୍ତର : ଆପଣ, ଆପଣଙ୍କ ସ୍ୱାମୀଙ୍କ କଥା କହୁଛନ୍ତି !
ଯଶୋଦା : ହଁ ।
ଡାକ୍ତର : ତାଙ୍କର ଦେହ ଖରାପ ଅଛି ?
ଯଶୋଦା : ହଁ, ଖୁବ ଭୋଗିଲେଣି, ଖୁବ କଷ୍ଟ ପାଇଲେଣି । ରାଧା, ବାବୁଙ୍କ ନାଁ କହ ।
ରାଧା : ଶ୍ରୀ ନରହରି ଦାସ ।
ଯଶୋଦା : ହଁ, ସେଇଆ ।
ପ୍ରଥମ : ଆଜ୍ଞା ଆଜ୍ଞା—ସବୁ ଗୋଳମାଳ ହୋଇଗଲା ।
ଡାକ୍ତର : ଆପଣଙ୍କର ପୁଣି କ'ଣ ହେଲା ?
ଯଶୋଦା : ଡାକ୍ତରବାବୁ କହୁଚନ୍ତି ଜଣଜଣଙ୍କ କଥା ବୁଝିବେ ।
ପ୍ରଥମ : ଏଠି ପରା ଦୁ'ଜଣ ଜଣେ ହେଇଯାଉଚନ୍ତି ।
ଡାକ୍ତର : ମାନେ ?
ପ୍ରଥମ : ମୋ ନାଁଟା ଆଉ ଖଣ୍ଡେ କାଗଜରେ ଟିପି ରଖନ୍ତୁ ଆଜ୍ଞା !
ଡାକ୍ତର : କାହିଁକି ?
ପ୍ରଥମ : ହାତ ଯୋଡୁଚି ଆଜ୍ଞା, ଟିପି ରଖନ୍ତୁ, ନଇଲେ ସବୁ ଗୋଳମାଳ ହେଇଯିବ ।
ଡାକ୍ତର : କଣ ଆପଣଙ୍କ ନାଁ ?
ପ୍ରଥମ : ନରହରି ଦାଶ—ତାଳବ୍ୟ ଶ—ଦନ୍ତ୍ୟ ସ ନୁହେଁ—ଅଲଗା ଟିପି ରଖନ୍ତୁ । ତାଙ୍କର କ ରୋଗ—ମୋର କ ରୋଗ—ଟିପି ରଖନ୍ତୁ—ତାଳବ୍ୟ ଶ ।
ଦ୍ୱିତୀୟ : ଡାକ୍ତର ବାବୁ ଇଂରେଜୀରେ ଲେଖିଚନ୍ତି— ଏଠି ଦନ୍ତ୍ୟ ସ ତାଳବ୍ୟ ଶ ସବୁ ସମାନ ।
ଯଶୋଦା : କଣ ସବୁ ସମାନ ? ଆପଣ କଏ ସବୁ ସମାନ କରିଦବାକୁ ? ଦେଖୁଚନ୍ତି ତ ଡାକ୍ତର ବାବୁ ?
ଡାକ୍ତର : ବଣୁ ବାବୁ !!

ବଣ୍ଟୁ : ବୁଝିପାରୁନାହାନ୍ତି ସାର୍ ? ତାଙ୍କର ତାଙ୍କଙ୍କ ନାଁ ନରହର ଦାସ । ଆଉ ସ୍ତ୍ରୀଙ୍କର ସ୍ତ୍ରୀଙ୍କ ନିଜ ନାଁ ନରହର ଦାସ ।

ଡାକ୍ତର : ଆରେ ବାବୁ, ମୁଁ ସବୁ ବୁଝୁଚି ସବୁ ଜାଣୁଚି । କିନ୍ତୁ···

ଯଶୋଦା : ଡାକ୍ତର ବାବୁ···

ଡାକ୍ତର : କୁହନ୍ତୁ ।

ଯଶୋଦା : ଆପଣ ଆଙ୍କ ନାଁ ଆଉ ତାଙ୍କ ନାଁ ସବୁ ସମାନ କରଦେବେ ?

ଡାକ୍ତର : ନାଁ ସିନା ସମାନ—ହେଲେ ରୋଗ ସମାନ ନୁହେଁ କି ରୋଗୀ ସମାନ ନୁହେଁ । ଆପଣ ଭୟ କରନ୍ତୁ ନାହିଁ, କୁହନ୍ତୁ କ'ଣ ହୋଇଚି ?

ଯଶୋଦା : ପହିଲେ ଜର ହେଲା ।

ଡାକ୍ତର : ହଁ, ଜର ହେଲା ।

ଯଶୋଦା : ସେଇଠୁ ଜର ଛାଡ଼ିଲା ।

ଡାକ୍ତର : ଭଲ କଥା ।

ଯଶୋଦା : ପୁଣି ଜର ହେଲା ।

ଡାକ୍ତର : ବେଶ୍ ।

ଯଶୋଦା : ପୁଣି ଜର ଛାଡ଼ିଲା ।

ଡାକ୍ତର : ଇଏତ ଅତି ଉତ୍ତମ କଥା । ଆପଣ ଆଉ ଆସିଚନ୍ତି କାହିଁକି ?

ବଣ୍ଟୁ : ପୁଣି କାଲେ ଜର ହବ ।

ଯଶୋଦା : ହେଲା ତ, ହେଇଚି, ପୁଣି ଜର ହେଲା ।

ଡାକ୍ତର : କେବେ ?

ଯଶୋଦା : କାଲି ରାତିରେ ।

ଡାକ୍ତର : କାଲି ରାତିରୁ ଏ ଯୋଉ ଜର ହେଇଚି, ସେ ଜର ଆଉ ଛାଡ଼ି ନାହିଁ ?

ଯଶୋଦା : ଛାଡ଼ିଚି ।

ଡାକ୍ତର : କେତେବେଳେ ଛାଡ଼ିଲା ?

ଯଶୋଦା : ଏଇ···ଆଜି ସକାଳେ ।

ବଣ୍ଟୁ : ମୁଁ ତ ସେଇ କଥା କହୁଥିଲି—ପୁଣି କାଲେ ଆଜି ରାତିରେ ଜର ହେବ ।

ଦ୍ୱିତୀୟ : ଆଜି ରାତିରେ ଜର ହେଲେ କାଲି ସକାଳେ ପୁଣି ଛାଡ଼ିଯିବ ।

ଡାକ୍ତର : ଆପଣ ଟିକିଏ ଚୁପ୍ ହୋଇ ବସନ୍ତୁ । ମୁଁ ସ୍ତ୍ରୀ'ଙ୍କ କାମଟା ଶେଷ କରିଦିଏଁ ।

ଦ୍ୱିତୀୟ : ହଉ ଆଜ୍ଞା !

ଡାକ୍ତର : ଆଚ୍ଛା କୁହନ୍ତୁ ତ, କାଲି ରାତିରେ କେତେ ଜର ହୋଇଥିଲା ?

ଯଶୋଦା : ବହୁତ ଜର ।

ଡାକ୍ତର : ମପା ହୋଇଥିଲା ?

ଯଶୋଦା : ହଁ ।

ଡାକ୍ତର : ଥର୍ମୋମିଟର୍‌ରେ ଜର ମପାହୋଇଥିଲା ?

ଯଶୋଦା : ହଁ, ସିଏ ନିଜେ ମାପିଥିଲେ ।

ଡାକ୍ତର : ଜର କେତେ ଥିଲା ?

ଯଶୋଦା : ସବୁ ଟିପା ହୋଇଚି । ମୁଁ ନିଜେ ଟିପିଚି ।···ରାଧା, ଟିପା କାଗଜଟା ଦେ···ଦେ' ଚଞ୍ଚଳ । (ରାଧା କାଗଜ ଦେଲା)
ହଁ, ଏଇ ଟିପା ନଥିଲୁ ।

ଡାକ୍ତର : ( କାଗଜ ଦେଖି ) ହୁଁ । ତିନଥର ଟେମ୍ପରେଚର୍ ନଆହେଇଚି ?

ଯଶୋଦା : ଆଜ୍ଞା !

ଡାକ୍ତର : ଥରେ ଶଏଏକ, ଥରେ ଶଏ ପଏଣ୍ଟ ପାଞ୍ଚ, ଆଉ ଥରେ···ଏଁ !! ଏ କ'ଣ ?

ଯଶୋଦା : ସେଇଟା ରାତି ଅଧ ବେଳକୁ ମପା ହୋଇଥିଲା । ସେତେବେଳକୁ ବେଶି ଜର ।

ଡାକ୍ତର : ବେଶି ଜର ଯେ, କିନ୍ତୁ ଏଠି ଏ ଯାହା ଟିପା ହୋଇଚି···! ଏ କେଉଁ ଥର୍ମୋମିଟର୍‌ରେ ମପା ହୋଇଥିଲା ?

ଶାଶୁ : କେତେ ଉଠିଚି ଆଜ୍ଞା ?

ଡାକ୍ତର : ଶହେ କୋଡ଼ିଏ ।

ଶାଶୁ : ଏଁ !!

ଯଶୋଦା : ନାହିଁ ଆଜ୍ଞା, ହେଇଥିବ । ରାତି ଅଧକୁ ଜର ବଢ଼ିଲା । ମୁଁ ଡାକ୍ତର ଡାକିବାକୁ କହିଲି—ସିଏ ମନାକଲେ ।

ଡାକ୍ତର : ଶଏ କୋଡ଼ିଏ ଜରରେ ଡାକ୍ତର ଯାଇ କ'ଣ କରିବ । ସେଥିରେ ତ ଘରଦ୍ୱାର ଜଳିବା କଥା ।

ଶାଶୁ : ହଁ, ସେତେବେଳେ ତ ଲୋକବାକ ଡାକ କୂଅ ପୋଖରୀରୁ ପାଣି ବୁହାଇ ଘରଦ୍ୱାରରେ ଢାଳିବା କଥା ।

ଡାକ୍ତର : ଏ ଟିପା ନିଶ୍ଚୟ ଆପଣଙ୍କର ଭୁଲ ।

ଯଶୋଦା : ଭୁଲ ! ରାଧା, ଅଧରାତିରେ ବାବୁଙ୍କର ଏ ଜର କେତେ ମପାହୋଇଥିଲା ?

ରାଧା : ଶହେ ଦୁଇ ।

ଯଶୋଦା : ତୁ କେମିତି ଜାଣିଲୁ ଶହେ ଦୁଇ ?

ରାଧା : ବାବୁ ନିଜେ କହିଲେ—ତମେ ଲେଖିଲ । ଆଉ ତ ରାତିରେ ମପା ହୋଇନାହିଁ ।

ଡାକ୍ତର : ତା'ହେଲେ ଜର ଶହେ ଦୁଇ ?

ଯଶୋଦା : ହଁ ଆଜ୍ଞା, ଶହେ ଦୁଇ । ମୁଁ ଭୁଲରେ ଶହେ କୋଡ଼ିଏ ଲେଖିଦେଇଥିଲି ।

ପ୍ରଥମ : ଟିକିଏ ନଜର ରଖନ୍ତୁ ଆଜ୍ଞା ! ଭୁଲରେ କାଲେ ମୋ ଆଡ଼େ ଗଡ଼ି କୋଡ଼ିଏ ଉଠିଯିବ !···ମୋ ନାଁ ଟା···

ଡାକ୍ତର : ଜାଣେ ।

ପ୍ରଥମ : ହଁ ଆଜ୍ଞା, ଭାଲବେ ଶ' ।

ଡାକ୍ତର : ଆପଣ ଟିକିଏ ସ୍ଥିର ହୋଇ ବସନ୍ତୁ । ମୁଁ ଯ୍ବାଙ୍କ କାମଟା ସାରିଦିଏଁ— ଆପଣଙ୍କ ଭାଲବେ ଶ' କଥା ବୁଝିବି ।

ପ୍ରଥମ : ଆଜ୍ଞା !

ଡାକ୍ତର : (ଯଶୋଦାଙ୍କୁ) ଆଚ୍ଛା କୁହନ୍ତୁ ତ, ଏ ଯେଉଁ ଜର ହେଲା, ପ୍ରଥମେ କେବେ ହେଲା ?

ଯଶୋଦା : କେଉଁ ଜର ?

ଡାକ୍ତର : ଏଇ ଯେଉଁ ଜର କଥା ଏଠି ଆପଣ କହୁଥିଲେ ?

ଯଶୋଦା : (ରହି ରହି) ଜ···ର···

ଡାକ୍ତର : ବୁଝିପାରୁ ନାହାନ୍ତି···ଏଇ ଯେଉଁ ଜର ହେଲା ଛାଡ଼ିଲା—ହେଲା ଛାଡ଼ିଲା ?

ଯଶୋଦା : ସିଏ ତ କେବେଠୁଁ ହେଲାଣି ।

ଡାକ୍ତର : କୁହନ୍ତୁ କେବେଠୁଁ ? ସାତ ଆଠ ଦିନ ?

ଯଶୋଦା : ନା—ସାତ ଆଠଦିନ କଣ କହୁଚନ୍ତି—ସାତ ଆଠ ବରଷ ହେବ ।

ଡାକ୍ତର : ଆପଣ ବୋଧହୁଏ ଠିକ୍ ବୁଝିପାରୁ ନାହାନ୍ତି । ଏଇ ଯେଉଁ ଜର କଥା ମତେ ବର୍ତ୍ତମାନ ଆପଣ କହିଲେ···

ଯଶୋଦା : ସେଇ ଜର ତ ! ସାତ ଆଠ ବରଷ ତଳେ ହୋଇଥିଲା ?···ରାଧା, ବାବୁ ଘରକୁ ଛାଡ଼ି ଘରେ ବସି ରହିବା କେତେ ବର୍ଷ ହେଲାଣି ?

ରାଧା : ସାତ ଆଠ ବର୍ଷ ହେବ ।

ଯଶୋଦା : ଠିକ୍ । ବୁଝିଲେନା ଡାକ୍ତର ବାବୁ, ସେଇଦିନଠୁ ତାଙ୍କୁ ଜର ଦି'ଥର ହେଇ ଦି'ଥର ଛାଡ଼ିଥିଲା ।

ଡାକ୍ତର : ଆଉ ମଝିରେ ଜର ହେଇନଥିଲା ?

ଯଶୋଦା : ନା—ଯାହା କାଲି ହେଇ ଆଜି ସକାଳୁ ଛାଡ଼ିଲା ।

ଡାକ୍ତର : ଆଜି ତା'ହେଲେ ଆସିଲେ କାହିଁକି ? ଆଉ ଦିନେ ଦି'ଦିନ ଅପେକ୍ଷା କରି ଅବସ୍ଥା ଦେଖି ଆସିପାରିଥା'ନ୍ତେ ।

ଯଶୋଦା : ଖାଲି କଣ ସେଇକି ?

ଡାକ୍ତର : ଆଉ ପୁଣି କଣ ?

ଯଶୋଦା : କାହିଁରେ କଣ ଅଛି ?

ଡାକ୍ତର : କୁହନ୍ତୁ ।

ଯଶୋଦା : ଗୋଡ଼ ଗଣ୍ଠି ଟା ଫୁଲିଚ ।
ଡାକ୍ତର : କେବେ ଫୁଲିଲା ?
ଯଶୋଦା : ତାଙ୍କ ପିଲାଦିନୁ ।
ଡାକ୍ତର : ତାଙ୍କ ପିଲାଦିନ କଥା ବର୍ତ୍ତମାନ କହିଲେ ମୁଁ କ ଚିକିତ୍ସା କରିବି ? ବର୍ତ୍ତମାନ ରୋଗ କଣ ହୋଇଚି ଦୟାକରି କୁହନ୍ତୁ ।
ଯଶୋଦା : ଆପଣ ବିରକ୍ତ ହଉଚନ୍ତି କି ?
ଡାକ୍ତର : ନା । ଆଉ କଣ ହୋଇଚି କହନ୍ତୁ ।
ଯଶୋଦା : ଅଣ୍ଟା ଦରଜ ହଉଚି ।
ଡାକ୍ତର : ତା'ପରେ ?
ଯଶୋଦା : ଅଧାକପାଳ ବିନ୍ଧୁଚି ।
ଡାକ୍ତର : ବେଶ୍... ବିଶୁ ବାବୁ...
ବିଶୁ : ସାର୍ ।
ଡାକ୍ତର : ଏଇ ନିଅ... ହଁ, ବୟସ କେତେ ?
ଯଶୋଦା : ବୟସ ?
ବିଶୁ : ଡାକ୍ତରବାବୁ ବାବୁଙ୍କ ବୟସ କଥା ପଚାରୁଚନ୍ତି ।
ଯଶୋଦା : ମୁଁ କଣ ସେ କଥା ବୁଝିପାରୁନାହିଁ ? ଟିକିଏ ଭାବିଲେ ତ କହିବି । ...ରାଧା—
ଡାକ୍ତର : ରାଧାକୁ କଣ ପଚାରୁଚନ୍ତି... ଆପଣ ଅନୁମାନ କରି କୁହନ୍ତୁ ।
ଯଶୋଦା : ମୁଁ ରାଧାକୁ ସେ କଥା ପଚାରୁନଥିଲି ।...ତାଙ୍କ ବୟସ...
ଡାକ୍ତର : କେତେ କୁହନ୍ତୁ ।
ଯଶୋଦା : ବୟସ ତାଙ୍କୁ ବେଶି ହବନାହିଁ ।
ଡାକ୍ତର : ପଚାଶ ପାଖାପାଖି ?
ଯଶୋଦା : ହୋଇଥିବ । ହେଲେ ପଚାଶ ଏ ପାଖରେ ସେ ପାଖରେ, ନୁହେଁ ।
(ଡାକ୍ତର ବ୍ୟବସ୍ଥାପତ୍ର ଲେଖିବା ଆରମ୍ଭକଲେ )
ଡାକ୍ତର : ଆଚ୍ଛା... ବିଶୁବାବୁ, ନିଅ—ଆଉ ତୁମେ ଟିକେ ହାତ ଚଞ୍ଚଳ କର । ଦେଖୁଚ ତ ଅବସ୍ଥା ।
ଯଶୋଦା : ତାଙ୍କ ପାଇଁ ଔଷଧ ଲେଖୁଚନ୍ତି ?
ଡାକ୍ତର : ହଁ, ଔଷଧ ନେବେ ନାହିଁ ?
ଯଶୋଦା : ଆଉ ଟିକିଏ ଥିଲି । (ଡାକ୍ତର ବ୍ୟତିବ୍ୟସ୍ତ ହୋଇଉଠିଲେଣି)
ଡାକ୍ତର : କଣ, ଝାଡ଼ା ସଫା ହେଉନି ?
ଯଶୋଦା : ନାହିଁ, ଝାଡ଼ା ମୋଟେ ସଫା ହଉନି ।...ରାଧା—

ରାଧା : ମା !
ଯଶୋଦା : ବାବୁ କାଲି କେତେ ଥର ବାହାରକୁ ଯାଇଚନ୍ତି ବୋଲି କହୁଥିଲେ ?
ରାଧା : ଛଅଥର ।
ଯଶୋଦା : ଛଅଥର ଯାଇଚନ୍ତି ସିନା, ହେଲେ···
ଡାକ୍ତର : ବୁଝିଲି ଆଜ୍ଞା, ମୁଁ ଠିକ୍ ବ୍ୟବସ୍ଥା କରୁଚି ।···ବିଶୁବାବୁ, ନିଅ ।
(ବ୍ୟବସ୍ଥାପତ୍ର ଦେଲେ)
ବିଶୁ : ସାଙ୍ଗେ ସାଙ୍ଗେ ଔଷଧ ବାହାର କଲି ଆଜ୍ଞା !
ଯଶୋଦା : ମୋର ଆଉ ଟିକିଏ କହିବାର ଥିଲା ।
ଡାକ୍ତର : ମୁଁ ସବୁ ବ୍ୟବସ୍ଥା କରୁଚି ।
ଯଶୋଦା : ପଦେ କଥା ।
ଡାକ୍ତର : (ଉପାୟହୀନ) କୁହନ୍ତୁ ।
ଯଶୋଦା : କହୁଚନ୍ତି, ସବୁବେଳେ ଦୁ' କାନ···
ଡାକ୍ତର : ଭିଁ ଭିଁ ହେଉଚି ?
ଯଶୋଦା : ଆଜ୍ଞା ! ଆଉ ଆଖିପତା—
ଡାକ୍ତର : ପୋଡ଼ୁଚି ?
ଯଶୋଦା : ଆଜ୍ଞା । ଆଉ ନାକପୁଡ଼ା ଭିତରଟା···
ଡାକ୍ତର : ରଗରଗ ହେଉଚି ?
ଯଶୋଦା : ଆଜ୍ଞା···ଆପଣ ତ ସବୁ ଜାଣିପାରୁଚନ୍ତି ।
ଡାକ୍ତର : ସବୁ ବ୍ୟବସ୍ଥା ବି କରୁଚି ।···(ହାତଯୋଡ଼ି) ଏଥର ଆପଣ ଆସନ୍ତୁ । (ମୁହଁ ବୁଲାଇ) ହଁ, ନରହରି ଦାସ ।
ପ୍ରଥମ : ଭାଲବେ ଣ ଆଜ୍ଞା !
ଡାକ୍ତର : ଜାଣିଚି ବାବୁ, ବୟସ କେତେ କୁହନ୍ତୁ ।
ପ୍ରଥମ : ଇଏ ଆଜ୍ଞା ସବୁ ଗୋଳମାଳ ଧରିଲାଣି ।
ଡାକ୍ତର : ଆପଣଙ୍କ ବୟସ ଆପଣ କହିବେ, ଏଥିରେ ଗୋଳମାଳ କଣ ଧରିଲା ?
ପ୍ରଥମ : ନଧରିବ କେମିତି ? ନାଁ ସମାନ, ବୟସ ସମାନ···
ଡାକ୍ତର : ଓ ! ଆପଣଙ୍କ ବୟସ ତେବେ ପଚାଶ ପାଖାପାଖି ?
ପ୍ରଥମ : ହଁ ଯେ, ସିଏ ତ ପଚାଶ ଏ ପାଖରେ ରହିଲେଣି—ମୋର ନ ହେଲା ପଚାଶ ସେପାଖରେ ବସେଇ ଦେଇନ୍ତୁ—ଅଡ଼ୁଆ ତୁଟିଯିବ ।
ଡାକ୍ତର : ହଉ ହେଲା, କଣ ହେଇଚି ଆପଣଙ୍କର କୁହନ୍ତୁ ?
ପ୍ରଥମ : ଆଜ୍ଞା କଣ ଯେ ମୋର ନ ହେଉଚି···
ଡାକ୍ତର : ବା···ହ୍ !

ରାଧା : ଆମ କାମ ସରିଲା ମା' ?
ଯଶୋଦା : ନାଇଁ, ସରନାଇଁ । ଡାକ୍ତର ବାବୁ ସେ ଆଡ଼କୁ ଅନେଇଚନ୍ତି—ଏଣିକି ଆଖି ଫେରାଇଲେ ମୋ କଥା ପୁଣି କହିବ ।
ଡାକ୍ତର : (ଶୁଣି ନଶୁଣିଲା ପରି) ଶୁଣନ୍ତୁ ନରହରି ବାବୁ···
ପ୍ରଥମ : ମତେ କହୁଚନ୍ତି ତ ?
ଡାକ୍ତର : ହଁ, ଆପଣଙ୍କୁ ।
ପ୍ରଥମ : ମୁଁ ପରା ଟିକିଏ ଗୋଳମାଳିଆରେ ପଡ଼ିଯାଉଚି ।
ଡାକ୍ତର : ଆପଣ ଶୁଣନ୍ତୁ ମୋ' କଥା । ଆପଣଙ୍କର କଣ କଣ ହଉଚି ଯଦି ଆପଣ ଠିକ୍ କରି କହି ପାରୁ ନାହାନ୍ତି, ତେବେ କଣ କଣ ନହଉଚି ସେ କଥା ମତେ କୁହନ୍ତୁ । ସେଇଥିରୁ ମୁଁ ସବୁ ବୁଝିପାରିବି—ବୁଝିଲେ ? ଏ କ'ଣ ···ରାଗଢଟା କାଇଁକି ରୂପିଧରି ବସିଲେଣି ?
ଯଶୋଦା : (ବୁଝିପଡ଼ି) ସେଇ ରାଗ !
ଡାକ୍ତର : ନରହରି ବାବୁ !
ଯଶୋଦା : ମୋର ଆଉ ପଦେ କଥା !
ଡାକ୍ତର : ମୁଁ ଏଠି ହାତ ବନ୍ଧକରି ବସିରହିଲି ଯେ ନରହରି ବାବୁ !
ଯଶୋଦା : ଟିକିଏ ଏଣେ ରହିବେ କି ?
ଡାକ୍ତର : (ନରହରିଙ୍କୁ) ଆପଣଙ୍କର ତେବେ ରୋଗ ବେମାରି କିଛି ନାହିଁ ?
ପ୍ରଥମ : ଜଣେ ନରହରି ଅଡ଼ୁଆ ତ ଏ ଯାଏ ତୁଟିଲା ନାହିଁ—ମୁଁ ଏଥିରେ ଆଉ କଣ କରିବ ?
ଯଶୋଦା : କେମିତି ଅଡ଼ୁଆ ତୁଟିବ ? ଆପଣ କିଏ ଅଡ଼ୁଆ ତୁଟେଇବାକୁ ! ଇଏ ଜୀବନମରଣ କଥାଟି !! (ଡାକ୍ତରଙ୍କୁ) ଆଜ୍ଞା ଡାକ୍ତର ବାବୁ, ଟିକିଏ ଏଣିକି ରହିବେ କି ?
ଡାକ୍ତର : ରହିଲି···କୁହନ୍ତୁ ।
ଯଶୋଦା : କହୁଚନ୍ତି, ଖାଇସାରିଲା ପରେ ରାଗ ଭିତରୁ ଖାଲି···
ଡାକ୍ତର : ଆମ୍ବିଳା ହାକୁଟି ଉଠିଆସୁଚି, ଏଇଆ ତ ?
ଯଶୋଦା : ଆଜ୍ଞା, ଆଉ ବେଳେବେଳେ ପାଦ ତଳଟା···
ଡାକ୍ତର : ପୋଡୁଚି ।
ଯଶୋଦା : (ଖୁସିହୋଇ) ଆପଣ ତ ସବୁ ଜାଣିଚନ୍ତି !
ଡାକ୍ତର : ନଜାଣିଲେ ଏ ବ୍ୟବସାୟ ଏଠି ଚଳେଇ ହବନାଇଁ । ସବୁ ଜାଣିଚି—ସବୁ ବ୍ୟବସ୍ଥା ବି କରିଚି ।···ବିଶୁବାବୁ !
ବିଶୁ : ହେଲା ଆଜ୍ଞା, ହେଇଗଲା ।

ଡାକ୍ତର : ହଁ ନରହରି ବାବୁ, ଏଥର କୁହନ୍ତୁ ।
ପ୍ରଥମ : କଥା କ'ଣ କି ଆଜ୍ଞା—ମୋର କେତେବେଳେ କଣ ହଉଚି ତାର ଠିକ୍ ଠିକଣା ରହୁନାହିଁ । କେତେବେଳେ ଏଇଟା ହେଲଣି ତ, କେତେବେଳେ ସେଇଟା ହେଲଣି—ଆଜି ଅମୁକଟା ହେଲଣି ତ କାଲି ସମୁକଟା ହେଲଣି ।
ଡାକ୍ତର : ବୁଝିଲି, ଆପଣଙ୍କର ନିର୍ଦ୍ଦିଷ୍ଟ ରୋଗ କିଛି ନାହିଁ ?
ପ୍ରଥମ : ନାହିଁ ପୁଣି, ଅଛି ।
ଡାକ୍ତର : ନାହିଁ ଯଦି ତେବେ ଦୟାକରି ଯା'ନ୍ତୁ, ଅଛି ଯେବେ ଦୟାକରି କୁହନ୍ତୁ ।
[ ବିଶୁ ହାତରେ ଔଷଧ ଶିଶି ଧରି ଆସିଲେ ]
ବିଶୁ : ହୁଁ, ନରହରି ଦାସ—ଏ ଦ'ଟା ଔଷଧ ।
ପ୍ରଥମ : କୋଉ ଦାସ ? ତାଲବେ ଶ ନା ଦନ୍ତ୍ୟ ସ ?
ବିଶୁ : ଏଇଟା ମୂର୍ଦ୍ଧନ ଷ'—ମାନେ ଯୋଉ ଷ' ଏଠି ନାହିଁ—ମାନେ ଯୋଉ ନରହରି ଦାସ ଏଠି ନାହାନ୍ତି ।
ରାଧା : ଇଏ ଆମ ବାବୁଙ୍କ ଔଷଧ ?
ବିଶୁ : ହଁ, ତମରି ବାବୁଙ୍କ ଔଷଧ ।···ଏ ବଡ଼ ବଟିକା ଖାଇ ପେଟରେ ଥରକୁ ଗୋଟାଏ କରି ଦିନକୁ ତିନିଥର—ଆଉ ଏ ସାନ ବଟିକା···
ଯଶୋଦା : ଟିକିଏ ବୁଝିକରି କୁହନ୍ତୁ ଆଜ୍ଞା !
ବିଶୁ : ରହିଲି ।
ଯଶୋଦା : ରାଧା, ଭଲକରି ମନେରଖ—ଟିକିଏ ଯେମିତି ଏପାଖ ସେପାଖ ହବନାହିଁ ।
ରାଧା : ମନେରଖିଚି ମା'—ବଡ଼ ବଟିକା ଖାଲି ପେଟରେ ଥରକୁ ଗୋଟାଏ କରି ଦିନକୁ ତିନିଥର ।
ବିଶୁ : ଗୁଡ୍ ! ଆଉ ଏ ସାନ ବଟିକା ଖାଇସାରି ଥରକୁ ଦ'ଟା କରି ଦିନକୁ ତିନିଥର ।
ଯଶୋଦା : ଏତିକି ଆଜ୍ଞା ?
ବିଶୁ : ବାସ୍ ! ଏତିକି !
ଡାକ୍ତର : ଖଟା ଖାଇବେ ନାହିଁ । ଆଉ ଏ ବୋତଲ ଉପରେ ଯାହା ଲେଖାହେଇଚି···
ଯଶୋଦା : ରାଧା, ବୋତଲ ଉପରେ ଯାହା ଲେଖାହୋଇଚି···(ଡାକ୍ତରଙ୍କୁ) କଣ ଲେଖା ହୋଇଚି ଆଜ୍ଞା ?
ଡାକ୍ତର : ଭଲ କରି ଠିପି ବନ୍ଦକରି ଅନ୍ଧାରୁଆ ଜାଗାରେ ରଖିବେ । ବାସ୍—ଆପଣଙ୍କ କାମ ସରିଲା ।
ବିଶୁ : ଆଉ ଟିକିଏ ଅଛି । ଔଷଧ ଦାମ୍‌ଟା—ସାତଟଙ୍କା ପଇଁତିରିଶ ପଇସା । ଆଉ···
ଯଶୋଦା : ଜାଣେ । ନିଅନ୍ତୁ । (ଟଙ୍କା ଦେଲେ)
ଡାକ୍ତର : ଚଞ୍ଚଳ ଯାଇ ଔଷଧ ଆଜିଠୁଁ ଆରମ୍ଭ କରିଦିଅନ୍ତୁ ।···ହଁ, ନରହରି ବାବୁ !

ପ୍ରଥମ : ଆଜ୍ଞା, ଆପଣଙ୍କୁ ମିଛ ମତେ ସତ—ବେଳେବେଳେ ମୋର ଏମିତ ମନ-ହଉଚି, ଜୀବନ ହାରିଦଅନ୍ତି—ବିଷ ଜହର ଖାଇଦଅନ୍ତି—ଆଉ ଏମିତ ହଇରାଣ ହ'ନ୍ତି ନାହିଁ ।

ଡାକ୍ତର : ନହ'ନ୍ତେ କେମିତ ? ବିଷ ଜହର ଖାଇଲେ ଆପଣଙ୍କୁ ଆମ ପାଖକୁ ଆସିବାକୁ ପଡ଼ନ୍ତା—ଆପଣ ପୁଣି ବଞ୍ଚନ୍ତେ—ପୁଣି ଏମିତ ହଇରାଣ ହ'ନ୍ତେ ।

ପ୍ରଥମ : ଯାହା କହୁଚନ୍ତି ଆଜ୍ଞା !

ବନ୍ଧୁ : ବୁଝିଲେ ନରହରି ବାବୁ, ମଣିଷ ବଞ୍ଚିବ କି ମରିବ ସେ କଥାରେ ଆପଣ ମୁଣ୍ଡ ନ ଖେଳାଇ ସେ କାମଟି ଡାକ୍ତରଙ୍କ ଉପରକୁ ଛାଡ଼ିଦଅନ୍ତୁ । ସେ କଥା ସିଏ ବୁଝିବେ ।

ପ୍ରଥମ : ତା' ଅର୍ଥ ଡାକ୍ତର ମାରିଲେ ମାରିବେ, ନ ହେଲେ ବଞ୍ଚେଇଲେ ବଞ୍ଚେଇବେ ।

ଡାକ୍ତର : (ହସି) ବାଃ ! ଭଲ କଥାଟିଏ ଆପଣ କହୁଚନ୍ତି । ଆପଣଙ୍କ ନାଡ଼ିଟା ଦେଖି (ନାଡ଼ି ଦେଖି) ହୁଁ, ନାଡ଼ି ଠିକ୍ ଅଛି ।

ପ୍ରଥମ : ସତ କହୁଚନ୍ତି, ଠିକ୍ ଅଛି ?

ଡାକ୍ତର : ହଁ ବାବୁ, ଠିକ୍ ଅଛି । ନାଡ଼ିକୁ ତ ଆପଣ ଚଳଉନାହାନ୍ତି—ନାଡ଼ି ତା ମନକୁ ଚାଲିଚି—ଠିକ୍ ନ ରହିବ କାହିଁକି ?

ପ୍ରଥମ : ଭୁଲ୍ ତା'ହେଲେ ରହିଲା କୋଉଠି ?

ଡାକ୍ତର : ଆପଣଙ୍କ ମନ । ମନ ବୋଧହୁଏ ଆପଣଙ୍କର ଠିକ୍ ନାହିଁ···କଣ କହୁଚନ୍ତି ?

( ଏ ପର୍ଯ୍ୟନ୍ତ ଯଶୋଦା ଏକଲୟରେ ଡାକ୍ତରଙ୍କ ଗତିବିଧି ଲକ୍ଷ୍ୟ କରୁଥିଲେ )

ଯଶୋଦା : (ସଙ୍ଗେ ସଙ୍ଗେ) ପଦେ କଥା—ମୋର ଆଉ ପଦେ କଥା କହିବାର ଅଛି ।

ପ୍ରଥମ : (ଯଶୋଦାଙ୍କ କଥାପ୍ରତି ଇଙ୍ଗିତ ରଖି) ଦେଖୁଚନ୍ତି ତ ! ଏଥିରେ ମନ କେମିତ ଠିକ୍ ରହିବ କୁହନ୍ତୁ ।

ଡାକ୍ତର : ଆଚ୍ଛା, ଆପଣ ଟିକିଏ ସ୍ଥିର ହୋଇ ବସନ୍ତୁ—ମୁଁ ଏମାନଙ୍କୁ ଦେଖିସାରେ—ପଛରେ ଆପଣଙ୍କ କଥା ବୁଝାଯିବ ।

ପ୍ରଥମ . ହଉ ଆଜ୍ଞା, ମୁଁ ବସିଲି ।

ଯଶୋଦା : ଡାକ୍ତର ବାବୁ, ଟିକିଏ ଏଣିକି ଚାହିଁବେ କି ?

( ଡାକ୍ତର ଶୁଣି ମଧ୍ୟ ଶୁଣୁ ନ ଥାନ୍ତି । ଦେଖାଗଲା ଦ୍ୱିତୀୟ ରୋଗୀଟି ଶୋଇପଡ଼ିଲେଣି । )

ଡାକ୍ତର : ଆରେ, ଇଏ କଣ ଏଠି ହଠାତ୍ କାଦରେ ଶୋଇଲେଣି ! ହୋ' ବାବୁ !

ତୃତୀୟ : ଆଜ୍ଞା ସିଏ ତ ଶୋଇଚନ୍ତି, ଆଗେ ମୋ କଥାଟା ବୁଝନ୍ତୁ—ମୋର ଦୂର ବାଟ ।

ଡାକ୍ତର : ଆପଣଙ୍କ ନାଁ ?

ବୃଦ୍ଧ : ଯମେଶ୍ୱର ପଣ୍ଡା । ବୟସ ଷାଠିଏ ।

ଡାକ୍ତର : କୁହନ୍ତୁ କଣ ହେଉଛି ।

ବୃଦ୍ଧ : (ମନେ ମନେ ହିସାବକରି) ଛଅମାସ...ହଁ, ଭଲ ତିନି ମାସ ପୂରି ଛଅମାସ ଚାଲିଲା ।

ଡାକ୍ତର : ଏ ଯାଏଁ କଣ ଶୋଇଥିଲେ ? ଘରେ ବସି ବସି ରୋଗ ବଢ଼େଇବେ—ଶେଷକୁ ଡାକ୍ତରକୁ ଦୋଷ ଦେବେ ।

ବୃଦ୍ଧ : ନାଇଁ ଆଜ୍ଞା, ଆଗରୁ ସେମିତି କିଛି ଅସୁବିଧା ଦୃଶ୍ୟ ହଉ ନ ଥିଲା—ସବୁ ଭଲରେ ଭଲରେ ଯାଉଥିଲା...ଏଇ ଦିନ ଆଠ ପନ୍ଦର ହବ...

ଡାକ୍ତର : ସେଇଆ ତ କହିବେ, ଆଉ ତିନି ଚାରି ମାସ କଣ କହୁଚନ୍ତି ? କୁହନ୍ତୁ କଣ ହେଉଚି ?

ବୃଦ୍ଧ : ଯାହା ସବୁ ହେଇଥାଏ...ଟିକିଏ ଯାହା ବଢ଼ିକିପଡ଼ୁଚି । ବାନ୍ତି ଖୁବ୍ ହଉଥିଲା—ଏବେ ଟିକିଏ କମ୍ ହଉଚି । ମୁଣ୍ଡ ବୁଲଉଚି ! ମୁହଁ ଶୋଥ ପଡ଼ୁଚି—ପାଦଟା ଟିକିଏ ଫୁଲିଲା ଫୁଲିଲା ଦିଶୁଚି ।

ଡାକ୍ତର : କାଇଁ, ମୁହଁ ତ ଶୋଥ ପଡ଼ିଲା ପରି ଜଣାପଡ଼ୁନି । ପାଦଟା ଦେଖି ।

ବୃଦ୍ଧ : ପାଦ ?

ଡାକ୍ତର : ହଁ, ଉପରକୁ ଟେକନ୍ତୁ ତ ।

ବୃଦ୍ଧ : ଆଜ୍ଞା, ମୋ' ପାଦ ଦେଖି କଣ ବୁଝିବେ ?

ଡାକ୍ତର : ଆଉ କାହା ପାଦ ଦେଖିବି ?

ବୃଦ୍ଧ : ମୋ' ସ୍ତ୍ରୀ...ଏଇଟା ତାଙ୍କର ପ୍ରଥମ ଗର୍ଭ ।

ଡାକ୍ତର : କଣ ଯେ ଆପଣଙ୍କୁ କହିବି !! ନିଜ ନାଁ ଲେଖେଇଲେ...ବୟସ କହିଲେ...

ବୃଦ୍ଧ : ମୋର କଣ ଆଉ ଏତେ ଶରୀରକୁ ଖିଆଲ ଅଛି ! ମୁଁ କହିଲି, ମୁଁ ତ ଭଲ ମଣିଷଟାଏ—ଡାକ୍ତର ବାବୁ ମତେ ଦେଖିଲେ ସବୁ ବୁଝିପାରିବେ ।

ଡାକ୍ତର : ହଁ ହଁ, ମୁଁ ସବୁ ବୁଝିଲିଣି । ଏଇଟା ତା'ହେଲେ ତାଙ୍କର ପ୍ରଥମ ଗର୍ଭ ?

(ବଶୁ ଏକଦୃଷ୍ଟିରେ ଯମେଶ୍ୱରଙ୍କୁ ଚାହିଁରହିଥାନ୍ତି)

ବୃଦ୍ଧ : ଆଜ୍ଞା, ପ୍ରଥମ ଗର୍ଭ...ଟିକିଏ ଦୁର୍ବଳିଆ ଲୋକ ତ ..

ବଶୁ : (ଯମେଶ୍ୱରଙ୍କୁ) ଟିକିଏ ଚିହ୍ନନ୍ତୁ ତ !

ବୃଦ୍ଧ : କଣ ଆଜ୍ଞା ?

ବଶୁ : ପ୍ରାୟ ଦୁଇ ବର୍ଷ ତଳେ ଆପଣ କଟକ ବଡ଼ଡାକ୍ତରଖାନାକୁ ଯାଇଥିଲେ ନା ?

ବୃଦ୍ଧ : ଆପଣ କେମିତି ଜାଣିଲେ ?

ବଶୁ : ମୁଁ ସେତେବେଳେ ସେଠି ଚାକିରି କରୁଥିଲି ।

ଦ୍ୱିତୀୟ : ହଁ ଆଜ୍ଞା, ଯାଇଥିଲି ।
ବଶୁ : ଆପଣଙ୍କ ସ୍ତ୍ରୀଙ୍କୁ ନେଇ ଯାଇଥିଲେ ।
ଦ୍ୱିତୀୟ : ହଁ, ସ୍ତ୍ରୀଙ୍କୁ ନେଇ ଯାଇଥିଲି ।
ବଶୁ : ଡାକ୍ତରଖାନାରେ ତାଙ୍କ ପେଟ ଅପରେସନ୍ ହୋଇ ଯାଉଁଲା ପିଲା ଜନ୍ମ ହୋଇଥିଲେ—ପୁଅଟିଏ, ଝିଅଟିଏ ।
ଦ୍ୱିତୀୟ : ହଁ ଆଜ୍ଞା, ଆପଣ ଯାହା କହୁଚନ୍ତି ସବୁ ଠିକ୍ ।
ବଶୁ : ଆଉ କହୁଚନ୍ତି କେମିତି ଇଏ ଆପଣଙ୍କ ସ୍ତ୍ରୀର ପ୍ରଥମ ଗର୍ଭ ?
ଦ୍ୱିତୀୟ : ହଁ ଆଜ୍ଞା, ପ୍ରଥମ ଗର୍ଭ ।
ଡାକ୍ତର : ଆପଣଙ୍କ ମୁଣ୍ଡ ଠିକ୍ ଅଛି ତ ?
ଦ୍ୱିତୀୟ : ଆଜ୍ଞା, ସିଏ ମୋ ପ୍ରଥମ ସ୍ତ୍ରୀ ତାଙ୍କର କାଳ ହୋଇଗଲାଣି । ଇଏ ଦ୍ୱିତୀୟ ସ୍ତ୍ରୀ ।
ଡାକ୍ତର : ଓ···(କିଛିକ୍ଷଣ ପାଇଁ ନୀରବତା)
ଦ୍ୱିତୀୟ : (ରହି ରହି) ଦ୍ୱିତୀୟ ସ୍ତ୍ରୀ ହେଲା ବୋଲି ତାକୁ ସ୍ତ୍ରୀ ନ କହି ଆଉ କଣ କହିବି···
ଡାକ୍ତର : ନା-ନା-ଆପଣ ଠିକ୍ କହୁଚନ୍ତି ।···ହଁ, ଆଉ ଥରେ ବୁଝନ୍ତୁ ତ—କଣ ସବୁ ଲକ୍ଷଣ !

(ଏଇଠି ଡାକ୍ତର ଅତର୍କିତ ଅବସ୍ଥାରେ ମୁହଁ ଫେରାଇ ଆଣିବା ସଙ୍ଗେ ସଙ୍ଗେ ଯଶୋଦା କଥା ଆରମ୍ଭ କରିଦେଲେ)

ଯଶୋଦା : ଆଜ୍ଞା, ଖଟା ଖାଇବାକୁ ଯେ ମନାକଲେ···
ଡାକ୍ତର : ମନାକରିଚି ଖଟା ଖାଇବେ ନାହିଁ । (ଯମେଶ୍ୱରଙ୍କୁ) ହଁ, କଣ ହେଲା ? ମୁଣ୍ଡ ବୁଲୁଚି ?
ଦ୍ୱିତୀୟ : ଆଜ୍ଞା !
ଯଶୋଦା : ଯଦି ଖଟାରେ ଖୁବ୍ ମିଠା ଦିଆଯାଏ—ଦୁ' ଗୁଣା କି ତିନିଗୁଣା···
ଡାକ୍ତର : ସେଇଟା ମିଠା ହୋଇଗଲା । ମୁଁ ଖଟା ଖାଇବାକୁ ମନାକରିଚି । (ଯମେଶ୍ୱରଙ୍କୁ) ଆଚ୍ଛା, ଯମେଶ୍ୱରବାବୁ···
ଯଶୋଦା : ରାଧା, ମନେରଖ ଖଟା ସାଙ୍ଗରେ ତିନିଗୁଣ ମିଠା ।
ଡାକ୍ତର : ଭୋକ ହଉଚି ?
ଯଶୋଦା : ଭୋକ କଥା ପଚାରିଲେ ଯେ···
ଡାକ୍ତର : ମୁଁ ଯମେଶ୍ୱରବାବୁଙ୍କୁ ପଚାରୁଚି ଆଜ୍ଞା !
ଯଶୋଦା : ପଚାରନ୍ତୁ—ପଚାରନ୍ତୁ । ମୋର ଖାଲି ପଦେ କଥା—
ଡାକ୍ତର : ପଦେ କଥା ?

ଯଶୋଦା : ହଁ ପଦେ କଥା । କହୁ ଜାଣିଲେ ତ ପଦେ ପଦେ କଥାରେ କାମ ସରିଯିବ— ଦଶ ପଚଶ କଥା କହିବ କାହିଁକି ?

( ଡାକ୍ତର ତୀକ୍ଷ୍ଣ ଦୃଷ୍ଟିରେ ତାଙ୍କୁ ଚାହିଁଲେ )

ପଦେ କଥା ।

ଡାକ୍ତର : କୁହନ୍ତୁ ।

ଯଶୋଦା : ଆଗେ ଖାଲିପେଟରେ ବଡ଼ ବଟିକା ଖାଇ···(ରାଧାକୁ) ବଡ଼ ବଟିକାଟି ରାଧା ?

ରାଧା : ହଁ, ବଡ଼ ବଟିକା ।

ଯଶୋଦା : ଖାଲିପେଟରେ ବଡ଼ ବଟିକା ଖାଇ—ତା'ପରେ ଖାଇବା ଜିନଷ ଖାଇ ପେଟ ଭର୍ତ୍ତିକରି ସାନ ବଟିକା ଖାଇ ପୁଣି ପେଟ ଖାଲିକରି ବଡ଼ ବଟିକା ଖାଇବେ, ନା ?

ଡାକ୍ତର : ଓଲଟେଇ ଦେବେ । ଆପଣ ଯାହା ଯାହା କହିଚାଲେ ସବୁ ଓଲଟେଇ ଦେବେ—କିଛି ଯାଏଆସେ ନା । ହଁ, ଯମେଶ୍ବରବାବୁ, ଭୋକ ହଉଚି ତ ?

ଚୂଡ଼ାମଣି : ହଁ, ଭୋକ ହଉଚି । ଦିନକୁ ତିନିଥର ଖାଉଚି ଯେତେବେଳେ ଭୋକ ନଷ୍ଟ ହଉଚି ।

ଡାକ୍ତର : ଦେହ ଜର-ଜର ଲାଗୁଚି କି ?

ଚୂଡ଼ାମଣି : କେବେ କେମିତି ।

ଡାକ୍ତର : ଟିକିଏ ଗାଧୋଇବାଟାକୁ ଜଗିବେ ।

ଯଶୋଦା : ଗରମ ପାଣିରେ ଗାଧୋଇବେ ?

ଡାକ୍ତର : ମୁଁ ଯମେଶ୍ବର ବାବୁଙ୍କୁ କହୁଚି ଆଜ୍ଞା !

ଯଶୋଦା : ଇଏ ଆମର କଣ ଗରମ ପାଣିରେ···

ଡାକ୍ତର : ହଁ, ଗରମ ପାଣିରେ ଗାଧୋଇବେ ।

ଯଶୋଦା : ଥଣ୍ଡାପାଣି ?

ଡାକ୍ତର : ପିଇବେ ।

ଯଶୋଦା : ଆଉ ଥଣ୍ଡା ଗରମ ପାଣି ?

ଡାକ୍ତର : ପିଇବେ ନାହିଁ କି ଗାଧୋଇବେ ନାହିଁ ।

ଯଶୋଦା : ରାଧା, କାହିଁଟା ମନେରଖ ।

ଡାକ୍ତର : ହଁ, ଯମେଶ୍ବରବାବୁ—ଆପଣଙ୍କ ସ୍ତ୍ରୀଙ୍କୁ ଯେ ଭୋକ ହଉଚି କହୁଚନ୍ତି— ଯାହା ପାଇ ତା' ତାଙ୍କୁ ଖାଇବାକୁ ଦେଇଦେବେ ନାହିଁ ।

ଯଶୋଦା : କଣ ଖାଇବେ ?

ଡାକ୍ତର : ମୁଁ ଯମେଶ୍ବର ବାବୁଙ୍କ ସ୍ତ୍ରୀଙ୍କ କଥା କହୁଚି ଆଜ୍ଞା !

ତୃଷାସ୍ତ : ଢଗଲ ଲୋକ ସେ । ତାଙ୍କ ସ୍ୱାମୀଙ୍କ କଥା ଆଗେ ବୁଝନ୍ତୁ—ପରେ ମୋ’ ସ୍ତ୍ରୀଙ୍କ କଥା ବୁଝିବେ ।

ଯଶୋଦା : ମୋର ପଦେ କଥା ।

ଡାକ୍ତର : କୁହନ୍ତୁ ।

ଯଶୋଦା : କଣ ସେ ଖାଇବେ ?

ଡାକ୍ତର : କଣ ଆପଣ ଦେବେ ?

( ଯଶୋଦା ହାଠାତ୍ ବୁଝିପାରିଲେ ନାହିଁ କଣ କହିବେ)

ଯଶୋଦା : ମୂଳା ?

ଡାକ୍ତର : ଖାଇବେ ।

ଯଶୋଦା : ସଜନା ଶାଗ ?

ଡାକ୍ତର : ଖାଇବେ ।

ଯଶୋଦା : ଚକୁଳି ପିଠା ?

ଡାକ୍ତର : ଖାଇବେ ।

(ଜଣାଯାଉଥାଏ ଡାକ୍ତରଙ୍କ ପାଟିରୁ ଆପେ ଆପେ ଉତ୍ତର ବାହାରି ଆସୁଚି)

ଯଶୋଦା : ଶେଉଳ ମାଛ ?

ଡାକ୍ତର : ଖାଇବେ ।

ଯଶୋଦା : ବାଳିଆ ମାଛ ?

ଡାକ୍ତର : ଖାଇବେ ।

ଯଶୋଦା : ଖାଇବେ ? ବାଳିଆ ମାଛ ଖାଇବେ ?

ଡାକ୍ତର : ନା—ନା—ଖାଇବେ ନାହିଁ ।

ଯଶୋଦା : ବୁଝିଲି, ବାଳିଆ ମାଛ ଖାଇବେ ନାହିଁ ।···ମୁଗଡାଲି ?

ଡାକ୍ତର : ଖାଇବେ ।

ଯଶୋଦା : ବିରିଡାଲି ?

ଡାକ୍ତର : ଖାଇବେ ନାହିଁ ।

ଯଶୋଦା : ଉଷୁନା ଭାତ ?

ଡାକ୍ତର : ଖାଇବେ ।

ଯଶୋଦା : ଅରୁଆ ଭାତ ?

ଡାକ୍ତର : ଖାଇବେ ନାହିଁ ।

ଯଶୋଦା : କଞ୍ଚା କଦଳୀ ?

ଡାକ୍ତର : ଖାଇବେ ।

ଯଶୋଦା : ପାଚିଲା କଦଳୀ ?

ଡାକ୍ତର : ଖାଇବେ ନାହିଁ ।

ଯଶୋଦା : ରାଧା, ଖାଇବେ ନାହିଁ ଯାହା ମନେରଖ ।...ଦୁଧ ?

ଡାକ୍ତର : ଖାଇବେ ।

ଯଶୋଦା : ଦହି ?

ଡାକ୍ତର : ଖାଇବେ ନାହିଁ ।

ଯଶୋଦା : ଛେନା ?

ଡାକ୍ତର : ଖାଇବେ ।

ଯଶୋଦା : ଆଉ...ଆଉ କଣ ତା' ନାଁ କି...

ଡାକ୍ତର : (ଆଖିବୁଜି) ଖାଇବେ ନାହିଁ...ଖାଇବେ...ଖାଇବେ ନାହିଁ...ଖାଇବେ... ଖାଇବେ ନାହିଁ...ଖାଇବେ...

ରାଧା : ମୁଁ ଏବେ କଣ ମନେରଖିବି ମା' ?

ଡାକ୍ତର : ଖାଇବେ ନାହିଁ...ଖାଇବେ...ଖାଇବେ ନାହିଁ...

ଯଶୋଦା : ଆଜ୍ଞା, ଆଜ୍ଞା ଡାକ୍ତର ବାବୁ !

ଡାକ୍ତର : ଖାଇବେ—ଖାଇବେ ନାହିଁ—(ଟିକିଏ ବଡ଼ପାଟିରେ) ଖାଇବେ...

ଦ୍ୱିତୀୟ : (ହାହାକାରକରି) ଖାଇଗଲା ଲେ ମା' !

ଡାକ୍ତର : କଣ ହେଲା ଆପଣଙ୍କର ? ଆପଣ ତ ନିଘୋଡ଼ ନିଦରେ ଶୋଇଥିଲେ ?

ଦ୍ୱିତୀୟ : ସେଇ ହେଲା ମୋର ରୋଗ । ଯେତେବେଳେ ପାଇ ସେତେବେଳେ— ଯୋଉଠି ପାଏ ସେଠି ଶୋଇପଡୁଚି, ଆଉ ସ୍ୱପ୍ନ ଦେଖୁଚି । ସ୍ୱପ୍ନରେ ଏଇନେ କିଏ ଗୋଟାଏ ମତେ ଖାଇବାକୁ ଗୋଡ଼ଉଥିଲା ।

ଡାକ୍ତର : ଆପଣଙ୍କ କର୍ମ ?

ଦ୍ୱିତୀୟ : କର୍ମ ଫର୍ମ କିଛି ନାହିଁ—ଖାଲି ନିଦ ଆଉ ସ୍ୱପ୍ନ—ସ୍ୱପ୍ନ ଆଉ ନିଦ ।

ଯଶୋଦା : ସେଇ କିନ୍ତୁ ।

ଡାକ୍ତର : ନିଦ ରୋଗଟା ତାଙ୍କର ଆଜ୍ଞା ।

ଯଶୋଦା : ମୋର ପଦେ କଥା...

ଡାକ୍ତର : ବେଶ୍ ।

ଯଶୋଦା : ଅସଲ କଥାଟା ମୋର ମନେପଡୁନଥିଲା । ତାଙ୍କୁ ମୋଟେ ନିଦ ହଉନାହିଁ ।

ଡାକ୍ତର : ଆପଣ କେମିତି ଜାଣିଲେ ତାଙ୍କୁ ନିଦ ହଉନାହିଁ ?

ଯଶୋଦା : ମୁଁ ଦିନ ରାତି ତାଙ୍କ ପାଖେ ପାଖେ ରହୁଚି—ମୁଁ ଜାଣିବିନାହିଁ ?

ଡ କ୍ତର : ଓ, ଆପଣ ବନ ଗ୍ରାଣ୍ଟ ତାଙ୍କ ପାଖେ ପାଖେ ରହୁଚନ୍ତି ! ବେଶ୍ ବଣ୍ଟୁବାବୁ, ସ୍ଲିପିଙ୍ଗ ପିଲ୍—ନିଦ ଔଷଧ ।

ଯଶୋଦା : (ଖୁସିହୋଇ) ହଁ ଆଜ୍ଞା, ମୁଁ ଶୁଣିଚି—ନିଦ ଔଷଧ ଦେଲେ ଭଲ ନିଦ ହୁଏ —ସେଇ ବଟିକା ଦିଅନ୍ତୁ । (ବଣ୍ଟୁ ଔଷଧ ଆଣିଲେ)

ବଣ୍ଟୁ : ଏଇ ନିଅନ୍ତୁ ।

ଯଶୋଦା : ନେ ରାଧା—ଔଷଧ ରଖ—ନିଦ ଔଷଧ ।

ରାଧା : କେମିତି କେତେ ଖାଇବେ ?

ଡାକ୍ତର : ଫାଲେ—ଗୋଟିଏ ବଟିକାରୁ ଫାଲେ ଖାଇ ଶୋଇପଡ଼ିବେ ।

ଯଶୋଦା : ଆଜ୍ଞା, ତାଙ୍କୁ ଫାଲେ ଔଷଧ କଣ କାମ ଦବ ?

ଡାକ୍ତର : ଏ ନିଦ ଔଷଧ ଆପଣଙ୍କ ସ୍ୱାମୀ ଖାଇବେ ନାହିଁ—ଆପଣ ଖାଇବେ— ଆପଣଙ୍କୁ ଠିକ୍ କାମ ଦେବ ।

ଯଶୋଦା : ମୁଁ କାହିଁକି ଖାଇବି ଡାକ୍ତରବାବୁ—ମୋର କଣ ହେଇଚି ?

ଡାକ୍ତର : ଆପଣଇ ଖାଇବେ । ଆପଣ ନିଦ ଔଷଧ ଖାଇ ଶୋଇପଡ଼ିଲେ ଆପଣଙ୍କର ସ୍ୱାମୀ ଆରାମରେ ଶୋଇବେ । ବୁଝିଲେ—ଏଥର ଉଠିବାହୁଅନ୍ତୁ ।

ଯଶୋଦା : ହଉ···ରାଧା···

ରାଧା : ହଁ ମା'—ଆଉ ତ କିଛି ବୁଝିବାର ନାହିଁ—ଯିବା ।

ଯଶୋଦା : ଆଜ୍ଞା, ଏ ଔଷଧ ଦାମ୍ କେତେ ?

ଡାକ୍ତର : ନାଇଁ ଆଜ୍ଞା, ଦାମ୍ କିଛି ନାହିଁ । ଏ ଔଷଧ ଆମେ ଆପଣଙ୍କୁ ସେମିତି ଦେଲୁ । ଆପଣ ଏଥିରୁ ଫାଳେ ଖାଇ ଶୋଇଗଲେ'ନ୍ତୁ, ଦେଖିବେ ସବୁ ଠିକ୍ ହୋଇଯିବ···ନମସ୍କାର ।

ଯଶୋଦା : ନମସ୍କାର । ଯାଉଚୁ ।

(ଯଶୋଦା ଓ ରାଧା ଚାଲିଗଲେ । ଡାକ୍ତର ଯେମିତି ଅବଶ ହୋଇ ଚୌକି ଉପରେ ଢଳିପଡ଼ିଲେ ।)

ଡାକ୍ତର : ବଣ୍ଟୁବାବୁ !

ବଣ୍ଟୁ : ସାର୍ ! ସେ ଇଂରାଜୀ ଭଦ୍ରମହିଳା ଯିଏ ତାଙ୍କ ଡାକ୍ତରଙ୍କ ପାଇଁ ବାକ୍ସ ଭର୍ତ୍ତି ଔଷଧ ରଖିଗଲେ—ଇଏ ଆପଣଙ୍କ ପାଇଁ କଣ ଛାଡ଼ିଗଲେ ?

ଡାକ୍ତର : ପଦେ କଥା ।

ସ୍ତ୍ରୀ-କଣ୍ଠ : (ବାହାରୁ) ଡାକ୍ତରବାବୁ ଅଛନ୍ତି ?

( ଡାକ୍ତର ସଜାଗ ହୋଇ ବସିଲେ । ବଣ୍ଟୁବାବୁ ପରଦା ଉଠାଇକରୁ ଦେଖିଲେ )

ଡାକ୍ତର : କିଏ ?

ବଣ୍ଟୁ : ଜଣେ ଭଦ୍ରମହିଳା ।

ଡାକ୍ତର : ମଧ୍ୟବୟସ୍କା ?

ବଣ୍ଟୁ : ହଁ ।

ଡାକ୍ତର : ବଣ୍ଟୁବାବୁ !

ବଣ୍ଟୁ : ସାର୍ ?

ଡାକ୍ତର : ସେ ବଡ଼ ଗ୍ଲାସରେ ଗ୍ଲାସେ ଥଣ୍ଡା ପାଣି···

